# ରାନୁଅପାଠାରୁ ପୁସି ପର୍ଯ୍ୟନ୍ତ

ଲେଖକ
**ଅଧ୍ୟାପକ ମହାପାତ୍ର ନୀଳମଣି ସାହୁ**

ପ୍ରକାଶକ
**ଜଗନ୍ନାଥ ରଥ**
ବିନୋଦବିହାରୀ, କଟକ-୨

ପ୍ରଥମ ପ୍ରକାଶ
୧୯୭୬

ମୂଲ୍ୟ
**ଛଅଟଙ୍କା**

ମୁଦ୍ରାକର
**ଶ୍ରୀ ମନ୍ମଥପ୍ରସାଦ ଦାସ**
ସ୍ନେହ ପ୍ରିଣ୍ଟିଂ ପ୍ରେସ
ଝାଞ୍ଜିରୀମଙ୍ଗଳା, କଟକ-୧

# ଉତ୍ସର୍ଗ

"ଝଙ୍କାର" ପତ୍ରିକାର ଏକଦା ପରିଚାଳନା-ସମ୍ପାଦକ ଦ୍ୱୟ
ସ୍ୱନାମଧନ୍ୟ

**ଶ୍ରୀଯୁକ୍ତ ଶଶିଭୂଷଣ ମିଶ୍ର**

ଓ

**ଶ୍ରୀଯୁକ୍ତ ସତ୍ୟାନନ୍ଦ ଚମ୍ପତିରାୟ**

ଅଶେଷ ପ୍ରୀତିଭାଜନେଷୁ—

**ମହାପାତ୍ର ନୀଳମଣି**
ଭୁବନେଶ୍ୱର ।
ଦୀପାବଳୀ ଅମାବାସ୍ୟା
୨୪-୧୦-୭୫

ଗାନୁଅପାଠାରୁ ପୁସି ପର୍ଯ୍ୟନ୍ତ

# ଭୂମିକା

ପ୍ରକାଶକ ଶ୍ରୀଯୁକ୍ତ ଜଗନ୍ନାଥ ରଥଙ୍କ ଦ୍ୱାରା ସମ୍ପାଦିତ କେତେକ ଗଳ୍ପକୁ ନେଇ "ଗାନୁଅପାଠାରୁ ପୁସି ପର୍ଯ୍ୟନ୍ତ" ସଂକଳନଟି ପ୍ରକାଶ ପାଇଛି । ପ୍ରାୟ ୧୯୫୨-୫୩ ଠାରୁ ୧୯୭୨-୭୫ ମଧ୍ୟରେ ମୋର ଗାଳ୍ପିକ-କ୍ଷମତାର ବିସ୍ତାରକୁ ଏ ସଂକଳନ କେତେକାଂଶରେ ସ୍ୱାକ୍ଷରିତ କରିଛି ବୋଲି ହୁଏ ତ ଏହାର ଏକ ସ୍ୱତନ୍ତ୍ର ମୂଲ୍ୟ ଥାଇପାରେ ।

ମୋର ଯୁଗାଶ୍ରୟୀ ସମାଜଚେତନା, ବ୍ୟକ୍ତିଚେତନା ଓ ଜୀବନଚେତନାର ବ୍ୟର୍ଥତା ଓ ବିଡ଼ମ୍ବନାରେ ମୋର କବି-ମାନସ କେତେବେଳେ ବା ବ୍ୟଙ୍ଗାତ୍ମକ ପ୍ରତିକ୍ରିୟାର ତୀର୍ଯ୍ୟକତାରେ ଅତି ନିର୍ଲଜ୍ଜ ଭାବେ ଚପଳ ହୋଇ ପଡ଼ିଛି; କେତେବେଳେ ବା କେବଳ ସେହି ବ୍ୟର୍ଥତା ଓ ବିଡ଼ମ୍ବନାର ଅସହାୟ ଅକାରଣତାରେ ଅତି ବିମୂଢ଼ ଗମ୍ଭୀରତାରେ ଅଶ୍ରୁମେଦୁର ହୋଇଉଠିଛି । ଦାନ୍ତୁଡ଼ୀର ହସ କାମ୍ବା କାନ୍ଦ ଭଳି ବେଳେବେଳେ କୌଣସି ଗଳ୍ପର ପ୍ରତିକ୍ରିୟାକୁ ପରିଛନ୍ନ ଭାବେ ବୁଝିପାରିବା ମଧ୍ୟ ସହଜ ହୋଇ ନାହିଁ ।

କେବଳ ଏଇଥିଲାଗି କେତେକ ଗଳ୍ପର ଆଙ୍ଗିକ ସୌଷ୍ଠବରେ ବା ଶୈଳ୍ପିକ କରଣୀୟତାରେ ମୋର ଲେଖନୀ ଯଥୋଚିତ ସଂଯମ ରକ୍ଷାକରି ପାରିନାହିଁ । ଯଦିଓ ଏହି ଅପାରଗତା ଯୋଗୁଁ, କୁତ୍ରାପି, ବିଷୟବସ୍ତୁ ପ୍ରତି ମୋର ଶିଳ୍ପୀ-ହୃଦୟର ଆନ୍ତରିକତା କ୍ଷୁଣ୍ଣ ହୋଇ ନାହିଁ !

ଆଉ, ଆଜ ଷୋଳ ସତର ବର୍ଷଧରି ବହୁ ଛୋଟ ବଡ଼ ଗଳ୍ପ ଲେଖିସାରିବା ପରେ, ଏହିସବୁ ସେଦିନର ଗଳ୍ପଗୁଡ଼ିକୁ ବିଚାରକ ଦୃଷ୍ଟିରୁ ଆଉ ଥରେ ପଢ଼ି ମୁଁ ଏହି ସିଦ୍ଧାନ୍ତକୁ ଆସି ପାରିଛି ଯେ ବୋଧହୁଏ ଲେଖାର ଶୃଙ୍ଖଳା, ସଂଯମ, କେବଳ ଆନ୍ତରିକତା ପ୍ରସାଦରୁ ଯେମିତି "ଆର୍ଟ" ଦୃଷ୍ଟିରୁ ମୂଲ୍ୟବାନ୍ ହୋଇଥାଏ, ଲେଖାର ଚପଳ ବିଶୃଙ୍ଖଳା ମଧ୍ୟ କେବଳ ସେଇ ଆନ୍ତରିକତାର ସ୍ପର୍ଶ ପାଇ ତା'ଠାରୁ କୌଣସି ଗୁଣରେ ମୂଲ୍ୟହୀନ ହୁଏ ନାହିଁ ।

ବିବେକୀ ଓ ରସିକ ପାଠକ, ତାର ଲେଖକଠାରୁ କେବଳ ଏହି ଆନ୍ତରିକତା ହିଁ ଚାହିଁଥାଏ ଓ ଚାହିଁବା ଉଚିତ । ପ୍ରେମିକାର ପ୍ରଗଲ୍‌ଭତା ଯଦି ତାର ଛଳଛଳ କଳକଳ ରସପୂର୍ଣ୍ଣ ଅନ୍ତରର ବାଣୀକୁ ବହନ କରି ଢେଉ ଭଳି ମାଡ଼ିଆସେ, କେଉଁ ବିଦଗ୍‌ଧ ପ୍ରେମିକ ତାର ପ୍ରଣୟର ଏହି ଅତି ପ୍ରକାଶିତ "ରସ-କଲ୍ଲୋଳ"କୁ ଉପେକ୍ଷା କରି ତା'ଠାରୁ ବାକ୍‌ସଂଯମ ଦାବୀ କରି ବସେ ?

ମୋର ପ୍ରିୟ ପାଠକପାଠିକାଙ୍କୁ ନିବେଦନ, ସେମାନେ ଏଇ ଗପଗୁଡ଼ିକରୁ ଯଥାସୀମିତ ପରିବେଶ ମଧ୍ୟରେ ସମାଜ, ବ୍ୟକ୍ତି ଓ ଜୀବନର ଆଶା-ନିରାଶାମୟ ଚପଳ-ଗମ୍ଭୀର ଅନୁଭୂତି ଛଡ଼ା ଆଉ ବେଶି କିଛି ଆଶା କରିବେ ନାହିଁ ।

ଏହି ସଂକଳନଟି ସହିତ ମୋର ବାଲ୍ୟବନ୍ଧୁ ସ୍ୱନାମଧନ୍ୟ ଗାଳ୍ପିକ ଶ୍ରୀ ରାଜକିଶୋର ମହାନ୍ତି, ଓଲାଭର ମିଃଇ: ସ୍କୁଲର ସୁଯୋଗ୍ୟ ଶିକ୍ଷକ, ମୋର ପ୍ରିୟ ଛାତ୍ର ଶ୍ରୀମାନ୍ ହୃଷୀକେଶ ରାଉତ, ସାହିତ୍ୟରସିକ ମୋର ଅନୁଜ ଶ୍ରୀମାନ୍ ଚିନ୍ତାମଣି ଓ କଲ୍ୟାଣୀୟା ଭ୍ରାତୃବଧୂ ଶ୍ରୀମତୀ ବିଷ୍ଣୁପ୍ରିୟା........ଙ୍କର ପ୍ରିୟନାମ ଯୋଗକରି ମୁଁ ନିଜକୁ ଧନ୍ୟ ଓ ଆହ୍ଲାଦିତ ମନେକରୁଅଛି । ଇତି ।

( ତିନି )

ମୋର ପାଠକପାଠିକାମାନଙ୍କର ମଙ୍ଗଳ ହେଉ !

ଜୟ ମା ଶ୍ରୀ ଦୁର୍ଗେ !

**ମହାପାତ୍ର ନୀଳମଣି ସାହୁ**

ଭୁବନେଶ୍ୱର

ତା ୨୪ । ୧୦ । ୬୫

କାଳୀପୂଜା

# ସୂଚୀ

ବିଷୟ — ପୃଷ୍ଠା



---



# ସାନୁ ଅପାଠାରୁ ପୁଷି ପର୍ଯ୍ୟନ୍ତ

ଆଜି ସକାଳପ୍ରହରୁ କୋଉ କାମରେ ମନ ଲଗୁ ନ ଥିଲା ମୀନାର । କେଜାଣି କାହିଁକି—ରାତି ପାହିବାବେଳଠୁଁ ଏତେବେଳଯାଏ ମୀନା ବଡ଼ ଛଟପଟ ଅନୁଭବ କରୁଥିଲା । ଆଜି କଲେଜ ଛୁଟି । ସାନୁ ଅପା ସକାଳୁ ଗାଧୋଇପାଧୋଇ, ଦୁ' ଜଳଖିଆ ଖାଇ, ବେଶ୍ ଫିଟ୍ ଫାଟ୍ ହୋଇ ତା'ର ସାଙ୍ଗମାନଙ୍କୁ ଧରି କୁଆଡ଼େ ବୁଲିଯାଇଛି । ତା'ର କ'ଣ ଅଛି ? ହେଲେ ନା ହେଲେ !! ବାପା କାଲିଠାରୁ ଘରେ ନାହାନ୍ତି । ଖୁବ୍ ଶୂନ୍‌ଶାନ ଲାଗୁଛି ଘରଟା ।

ଅବଶ୍ୟ ଶରତ ସକାଳର ଏଇ ସୁନେଲି ଖରାଟା ମନରେ ରଙ୍ଗ ଧରେଇ ଦେଇ ପାରନ୍ତା । ଆଉ ଶରତ ସକାଳର ଥଣ୍ଡା ଉଷୁମ୍ ଏଇ ଭିଜାମାଟି ଆଉ ରୌଦ୍ର ଝଲମଲ ଏଇ ସବୁ ଗଛ ଲଟାର ସଜୀବ ସତେଜ ବାସ୍ନାରେ ଏକ ଅପରିଚିତ ସବୁଜ ରୋମାଞ୍ଚ ମନକୁ ଆଚ୍ଛନ୍ନ କରି ଦିଅନ୍ତା । ମନ ସତେକି ଅପେକ୍ଷା କରି ରହନ୍ତା—ହୋଇରହନ୍ତା--ଏହି ସକାଳଟାର ସମସ୍ତ ରୂପ, ରସ, ଗନ୍ଧ, ଉତ୍କଣ୍ଠିତ ଶବ୍ଦ, ଓ ସ୍ପର୍ଶର ବିଭବକୁ ଲୁଣ୍ଠନ କରିବାଲାଗି କିଏ ଜଣେ ଆସିବ ବୋଲି ଛଦ ଆଗକୁ କଥା ଦେଇଥାନ୍ତା !!

କିଏ କ'ଣ ସତେ ଆସିବ ?

କିଏ ବା ଆଉ ଆସନ୍ତା ?

ବାଡ଼ପଟ୍ଟ ବଗିଚ୍ ଭିତରୁ କୋଉଠି ଗୋଟାଏ ନିଃସଙ୍ଗ କପୋତ କାହାପାଇଁ ଝୁରି ଝୁରି ରହି ରହି ଗୁମୁରି ଉଠୁଛି ।

ଇଞ୍ଜିନିଅର ଅଶୋକ ଦାସ ମାସେ ହେଲା ଏଠୁ ଅନ୍ୟ ଜାଗାକୁ ବଦଲି ହୋଇଗଲେଣି । ତାଙ୍କ ପାଖରୁ ଏ ଯାଏଁ ବି ଚିଠି ଖଣ୍ଡିଏ ଆସିଲା ନାହିଁ ।

ମୀନା ଘରଭିତରୁ ବାହାର ବାରେଣ୍ଡାକୁ ଚାଲି ଆସିଲା । ସତେ କି ତାକୁ କିଏ ଅପେକ୍ଷା କରି ରହିଛି ବାହାର ବାରେଣ୍ଡାରେ । କିନ୍ତୁ ବାହାରକୁ ସେ ଆସି ପ୍ରଥମେ ଯାହାକୁ ଦେଖିଲା—ସେ ହେଉଛି ତା'ର ଚିରଶତ୍ରୁ ମୀନା ଅପାର ପୋଷା ଆଉ ଗୀତ ଅପାର ଶିଷ୍ୟ ତାଙ୍କର ସେହି ରୁମାଲିଆ ମୋଟାସୋଟା କାବୁଲି ବିଲେଇଟା ! ଠିକ୍ ଡୁଆର ମୁହଁରେ ଜାକିଜୁକି ହୋଇ ବସିରହି ବାହାରକୁ ଚାହିଁରହିଛି ଗୋଟାଏ ଦାର୍ଶନିକ ଭଳି । ମୀନାକୁ ଦେଖି ମଧ୍ୟ ସେ ସେଠାରୁ ଟଳିଲା ନାହିଁ । ଏଇ ବିଲେଇଟା ମୀନାର ଚିରଶତ୍ରୁ । ଏଟାକୁ ସେ ଜମା ସହ୍ୟ କରିପାରେ ନା । ତା'ର ସଙ୍ଗୀତ-ସାଧନାର ଅନ୍ତରାୟ ଏଇ ଅଲକ୍ଷଣୀ ହତଲକ୍ଷ୍ମୀ ବିଲେଇଟା ! ତାନ୍‌ପୁରାର ଆବାଜ ଶୁଣିଲେ କୋଉଠି ଥିବ—ଗମ୍ଭୀର ଭାବେ ଆସି ଗୋଟାଏ ବିଦ୍ରୁପାତ୍ମକ ମନ୍ତବ୍ୟ କରି ଚାଲିଯିବ ! ମିଆଉଁ !!!!

ଚାଲିକି ଯାଉ ପୁସି !!

ମୀନା ପୁସିକୁ ଘୃଣାକ୍ଷରେ ନ ଚାହିଁ ଆକାଶ ଆଡ଼କୁ ମୁହଁ ଟେକିଲା । ଇସ୍—କେତେ ବଡ଼ ଆକାଶ ! ଆଉ କେଡ଼େ ଗଭୀର, କେଡ଼େ ସ୍ୱଚ୍ଛ ଏଇ ଆକାଶଟାର ଉଜ୍ଜ୍ୱଳ ନୀଳିମା ! ସେଇ ଗଭୀର, ନୀଳ ସ୍ୱଚ୍ଛତାକୁ ତେଣା ଆହୁଲାଇ ପହଁରି ଚାଲିଥିଲା ଏକୁଟିଆ

ବଳାକାଟିଏ ! ତା'ର ଶୁଭ୍ର ଡେଣା ଉପରେ ଅକାଢ଼ ହୋଇ ବହିଯାଉଥିଲ—ଶାରଦୀପ୍ତ ଆକାଶର ସମସ୍ତ ନୀଳମା ଆଉ ସ୍ୱର୍ଣ୍ଣାଭ ଆଲୁଅର ତେଜ ।

ମୀନା ଅହୃଠ ନିଃସଙ୍ଗ ବୋଧକଲ । ତାକୁ ଅହୃର ବେଶି ଅସ୍ଥିର ଲାଗିଲ । ଏଇ ଛଟପଟରୁ ମୁକ୍ତି ପାଇବାଲାଗି ସେ ପୁଣି ତା'ର ଶୋଇବା କୋଠରୀକୁ ଫେରିଆସିଲ । କାନ୍ଥରେ ଝୁଲା ହୋଇଥିବା ତାନପୁରାଟାକୁ ଆଣି ସେ ଖଟ ଉପରେ ଆସିବୁଜି ବସିଲ । ଏହି ନିଃସଙ୍ଗ ପଟଣୀବିହୀନ, କେବଳ ଅପେକ୍ଷମାନ ଛଟପଟ ମନଟାକୁ ସେ ଗୋଟିଏ ଧ୍ୟାନସ୍ଥ ସୁର୍‌ର ସୁଅ ଭିତରେ ଏକ ମୁହାଁ ବୁହାଇ ଦେବ । ତା' ହେଲେ-ଇ ସେ ପାଇବ ଶାନ୍ତି ।

ତାନପୁରାଟାକୁ କୋଳ ଭିତରେ ଯଥାସ୍ଥିତ ରଖି ଆଖି ଦୁଇଟିକୁ ଅର୍ଦ୍ଧନିମୀଳିତ କରି ସେ ତା'ର ତାରେ ପ୍ରଥମ ଝଙ୍କାର୍ ଦେଲ ।

ତାରଟା ବିକ୍ଷୋଭରେ ଆର୍ତ୍ତନାଦ କରିଉଠିଲ—

ଆ ଓଁ ଓ ଓଁ ଉଁ-ଉଁ-ଉଁ ।

ଠିକ୍ ସେହି ସ୍ୱରକୁ ବ୍ୟଙ୍ଗ କଲ ଭଳି ଆଉ ଗୋଟିଏ ସ୍ୱର ମଧ୍ୟ ତା ପଛେ ପଛେ ଅନୁରଣିତ ହୋଇ ଉଠିଲ ।

ମିଆଁଉଁ ଉଁ ଉଁ ଉଁ ଉଁ—

ମୀନା ଚମକିପଡ଼ି ଚାହିଁଲ ।

ସେହି ପୋଷା ବିଲେଇଟା !

ତା'ର ସଙ୍ଗୀତସାଧନାର ଚିରଶତ୍ରୁ ।

କଟମଟ କରି ମୀନା ତା'ର ମୁହଁକୁ ଚାହିଁ ରହିଲା । ପୁଷିଟା ମଧ୍ୟ ସେମିତି ଅର୍ଥପୂର୍ଣ୍ଣ ଆଖିରେ ତା' ମୁହଁକୁ ଚାହିଁ ରହିଥାଏ । ମୀନା କ୍ରୋଧରେ ଫାଟିପଡ଼ି କହିଲା—

କଣ ତୋର ଉଦ୍ଦେଶ୍ୟ ଶୁଣେ ? କାହିଁକି ତୋର୍ ଏତେ ଅବଜ୍ଞା ମୋ ଉପରେ ? ଅଲକ୍ଷଣୀ—ହତଲକ୍ଷ୍ମୀ !

ପୁଷି ସେହିଭଳି ମୀନା ମୁହଁକୁ ଚାହିଁ ପୁଣି ଥରେ ବୋବେଇ ଉଠିଲା—ମିଆଁଉ !

ତୋତେ ମରଣ ହେଉ, ଗେଟ୍‌ଆଉଟ୍ !

ଏଥର କିନ୍ତୁ ବିଲେଇଟା ଆଉ କିଛି ଶବଦ କଲନାହିଁ । କେବଳ ଦୁଇ ପାଟିର ଦାନ୍ତ ଖେଙ୍କାରି ଗଳା ଭିତରୁ ଏକ ପ୍ରକାର ସାଉଁ ସାଉଁ ଶବଦ ବାହାରକଲା । ତାକୁ ଦେଖି ମୀନାର ମଗଜ ଆହୁରି ବିଗିଡ଼ି ଗଲା । ସେ କାନ୍ଦୁଣୁ ମାନ୍ଦୁଣୁ ହୋଇ କହିଲା—

ତୋ ଯୋଗୁଁ ନଷ୍ଟେ ଦିନେ ଏ ଯନ୍ତ୍ର ସବୁ ମୁଁ ନାଳୀରେ ପକାଇଦେବି । ମରଣ ହେଉନାହିଁ ତୋତେ ? ବୁଢ଼ୀ, [illegible] ଡାହାଣୀ, ପିଶାଚୁଣୀ !! ଓହୋ !!!

ଏଥର ବିଲେଇଟି ତଳକୁ ମୁହଁ ପୋତି ଶାନ୍ତଶିଷ୍ଟ ବ[illegible] ଭଦ୍ରମହିଳାଟି ଭଳି ସେ ଘରୁ ଧୀରେ ସୁସ୍ଥେ ଆପଣା ଛ[illegible] ବାହାରିଗଲା । ଆଉ ଠିକ୍ ତା' ପଛେ ପଛେ ବାହାରକୁ ପା[illegible] ଶୁଭିଲା—ପୋଷ୍ଟମ୍ୟାନ୍‌ର ।

ଚଟି ନଥିଲୁ ଆଜ୍ଞା—ଚଟି !!

ଧଡ଼ପଡ଼ ହୋଇ ମୀନା ବାହାରକୁ ଉଠିଗଲା । ତା'ର ଛାତି ଥର ଥର ହେଉଥିଲା । ସେ ଜାଣି ନ—କାନୁ ତା' ପଛେ ପଛେ ଚାଲିଥିଲା ସେହି ପୁଷିଟା । ସତେ କି ଏ ଘରର ସମସ୍ତଙ୍କ ବିଷୟରେ ସବୁ କଥା ଜାଣିବାର ଓ ସବୁ କଥା ଉପରେ ଚିନ୍ତା କରି ମନ୍ତବ୍ୟ ଦେବାର ଅଧିକାର ତା'ର ରହିଛି । ଆଉ ମଧ୍ୟ ସତେ କି ଏ ଘରର ସମସ୍ତଙ୍କୁ ମଧ୍ୟ ସେ ଜାଣେ ଓ ସବୁ କଥା ମଧ୍ୟ ସେ ଜାଣେ ! ତାକୁ ପଛରେ ଆସୁଥିବାର ଜାଣିପାରି ମୀନା ପୂର୍ବବତ୍ ବିରକ୍ତ ହୋଇ କହିଲା—

ତୁ କୁଆଡ଼େ ପୁଣି ଆସିଲୁ ମୋ ପଛେ ପଛେ ? ଗଣ୍ଡୀ !!

ମାନ ବିଲେଇଟା ଏମିତି ଭାବରେ ମୀନାର ମୁହଁକୁ ଚାହିଁଲା, ଯେମିତି ସେ ଭାବୁଛି—"ମୀନାଟାର ପିଲାସ୍ୱଭାବ ଆଜିଯାଏ ଗଲା-ନାହିଁ ! ଛି !! କାହାକୁ କ'ଣ କହିଯାଉଛି ପାଗଲୀ !!!"

ମୀନା କହିଲା—

ମିନା ଅପା ତୋତେ ଏତେ ମୁହଁ ଦେଇଛି ଲୋ ଡାହାଣୀ ! ମିନା ଅପାର ଅଯଥା ଆଦର ପାଇ ଆଉ ଗୁରୁ ଅପାକୁ ତୋଷା-ମଦ କରି ତୁ ବସିଛୁ ମୋ ଉପରେ ହାକମି କରିବୁ ? ଗଣ୍ଡି ! ଯା ଘର ଭିତରକୁ । ଯା' କହୁଛି !

ମୀନା ହାତ ଉଠାଇବା ଦେଖି ବିଲେଇଟା ଟିକିଏ ଶଙ୍କିଯାଇ ପୁଣି ଟେବୁଲ୍ ତଳକୁ ଚାଲିଗଲା ।

ପୋଷ୍ଟମ୍ୟାନ୍ ହାତରୁ ଲଫାପାଟି ନେଇ ତରବରରେ ଫିଟାଇ ପକାଇଲା ମୀନା; ଫିଟେଇ ନ ଥା'ନ୍ତା ! ଚିଠିଟା ତା'

ପାଖକୁ ଆସିନାହିଁ ଆସିଛି ତା'ର ଉପର ହଉଣୀ ମୀନା ଅପା ପାଖକୁ । ମାତ୍ର ଚିଠିଟା ଯେ ଆସିଛି ଅଶୋକ ଦାସ ପାଖରୁ ! ଅଶୋକ ଦାସ—ମୀନା ଅପାର ପ୍ରେମିକ । ତାଙ୍କୁ ନେଇ ମୀନା ଅପା ଦୁଇ ବର୍ଷ ଧରି ମାତିଲାଣି । ଏବେ ଏଠାରୁ ବଦଳି ହୋଇ ଯାଇଛି ଅଶୋକ ଦାସ । ପ୍ରାୟ ମାସେ ହେବ; କିନ୍ତୁ ଏ ଯାଏ ବି ଖଣ୍ଡିଏ ଚିଠି ଦେଇ ନାହିଁ । ଇତିମଧ୍ୟରେ ଅଶୋକ ଦାସ ନାମରେ ଗୋଟାଏ ନୂଆ କଥା ଶୁଣିଛି ମୀନା । ଅଶୋକ ଦାସ ତା'ର ମନ ବଦଳାଇଛି କୁଆଡ଼େ !

ଅଥଚ ମୀନା ଅପା ମନେ ମନେ ଆକାଶରେ କେବଳ ସିଡ଼ି ତିଆରି କରୁନାହିଁ—ଘର ବି ତିଆରି କରିସାରିଛି । ସେ ପୂରା ବିଶ୍ୱାସ କରିନେଇଛି ଯେ ଅଶୋକ ଦାସ ତାଙ୍କୁ ବାହାହେବ । ତା'ଛଡ଼ା ସେ ଆଉ କାହାକୁ ବାହା ହୋଇ ପାରେ ନା ! ଆଉ କେହି ମଧ୍ୟ ତା'ର ପସନ୍ଦକୁ ଆସିବେ ନାହିଁ । ମୀନା ଅପା ଜାଣି ମଧ୍ୟ ଜାଣିବାକୁ ପ୍ରସ୍ତୁତ ନୁହେଁ ଯେ ଚିଫ୍-ଇଞ୍ଜିନିଅରର ଝିଅ ଅଞ୍ଜନା ଜାଲପାତି ବସିଛି ଅଶୋକ ଦାସକୁ ଧରିବ ବୋଲି । ଆଉ ଯେତେ ସେ ଜାଲରେ ପଡୁଛନ୍ତି, ଅଞ୍ଜନା ସମସ୍ତଙ୍କୁ ଜାଲରୁ ଖସେଇ ଦେଉଛି । ସେ ଠାକି ବସିଛି—ଅଶୋକ ଦାସ କେତେ-ବେଳେ ପଡ଼ିବ ତା' ଜାଲରେ । ଚିଫ୍-ଇଞ୍ଜିନିଅରର ଅଲଅଲି ଝିଅ ଅଞ୍ଜନା ତିନି ପୁଅରେ ଗୋଟିଏ ଝିଅ । ଯାହା ଅଳି କରିବ—

ଅଥଚ ମୀନା ଅପାଟା ଏଡ଼େ ମୂର୍ଖ ! ସହଜ ସତ୍ୟଟାକୁ ସେ ବୁଝିବ ନାହିଁ । ସେ ଭାବୁଛି, ତା'ର ପ୍ରେମପାଶରେ ସେ ଅଶୋକ ଦାସକୁ ଟାଣିଆଣିବ ତା' ପାଖକୁ । ସେ ଭାବିଛି—ତା'ର ସବୁ ବେକାରର ସୌନ୍ଦର୍ଯ୍ୟ ଦେଖାଇ ସେ ଅଶୋକ ଦାସକୁ ବାନ୍ଧି ଦେଇଛି ଆଜୀବନ ! ଏତେ ଭାବପ୍ରବଣ ଏଇ ମୀନା ଅପାଟା !

ଇସ୍— !

ମୀନା ମନେ ମନେ ବିରକ୍ତ ହୋଇ ଉଠିଲା । ପ୍ରେମ ନିଜେ ଅନ୍ଧ । ମାତ୍ର ପ୍ରେମ ଲାଗି ଲୀନା ଅପା ଏତେ ଚଞ୍ଚଳ ଅନ୍ଧ ହୋଇ-ଗଲା ତା'ର ଆଖି ଆଗରେ ? ଦେଖାଯାଉ— କ'ଣ ଲେଖିଛନ୍ତି ଅଶୋକ ଦାସ !

ଚିଠିଟା ପଢ଼ୁ ପଢ଼ୁ ମୀନାର ଦେହ ମନରେ ନିଆଁ ସଞ୍ଚରି-ଗଲା । ତା'ର ଆଖି ଦୁଇଟା ନିଆଁ ଭଳି ଜଳି ଉଠିଲା । ସେ ସେ କାନ୍ଦିବାକୁ ଇଚ୍ଛା କଲା ମାତ୍ର କାନ୍ଦିପାରିଲା ନାହିଁ । ରାଗିବାକୁ ଇଚ୍ଛା କଲା ମାତ୍ର ରାଗି ମଧ୍ୟ ପାରିଲା ନାହିଁ । କେବଳ ଏକ ଦୁଃସହ ନିଆଁର ଦହନ ଭିତରେ ସେ କ୍ଷଣକଲାଗି ଛଟପଟ ହୋଇ ଉଠିଲା ।

ଆଃ ! ସେ ଯାହା ଆଶଙ୍କା କରିଥିଲା, ସେଇ କଥା ହିଁ ଘଟିଗଲା; ଲୀନା ଅପାକୁ ସେ କେମିତି ବର୍ତ୍ତମାନ ଜଣେଇ ଦେଇ ପାରିବ ଏତେ ବଡ଼ ନିଦାରୁଣ ସତ କଥାଟା ? ଲୀନା ଅପା ଏ ଆଘାତ ସମ୍ଭାଳି ପାରିବ ? ଭୂଇଁ ଉପରେ କଚାଡ଼ି ହୋଇ ପଡ଼ିବ ନାହିଁ ? ସେ କଅଣ ଏ କଥା ଶୁଣି ସାରିବା ପରେ ଆଉ ଜୀବନ ରଖିବ ?

ନ ରଖୁ— ମରୁ ସେ । କାନ୍ଦି କାନ୍ଦି ଭୂଇଁରେ ମୁଣ୍ଡ କଚାଡ଼ି କଚାଡ଼ି ମରୁ । ପ୍ରେମ କରିବାର ଫଳ ପାଉ ବୋକୀ । ଏତେ ବିଶ୍ୱାସ, ଏତେ ଆଶା, ଏତେ କଳ୍ପନା ଏତେ ଭାବପ୍ରବଣତା— କିଏ ଭଲା ଏ ସଂସାରରେ ତା'ର ମୂଲ୍ୟ ଦେବ ? ଲୀନା ଅପା କ'ଣ ଏତେ କଥା ବୁଝେ ? ମନେ ମନେ ଆକାଶରୁ ଫୁଲ ତୋଳୁଛି । ମରୁ ଏବେ ।

ମରୁ ! ! !

ତା'ର କ'ଣ ଯାଏ ? ସେ କଅଣ ଅଶୋକ ଦାସର ପ୍ରେମରେ ପଡ଼ିଛି ଯେ ଭାଙ୍ଗିପଡ଼ିବ ? ସେ ଲୀନା ଅପା ଭଳି ଏତେ ବୋକୀ ନୁହଁ—ଏତେ ଭାବପ୍ରବଣ ବି ନୁହଁ । ଅଶୋକ ଦାସ ଚିଫ୍ ଇଞ୍ଜିନିଅର ଝିଅ ଅଞ୍ଜନାକୁ ବାହା ହେଲେ, ତା'ର ଏଥିରେ କ'ଣ ଯାଉଛି ?

ଇଃ ! ଅଶୋକ ଦାସଟା ଏଡ଼େ ହୃଦୟହୀନ ! ଏଡ଼େ ମିଥ୍ୟାବାଦୀ ! ଏତେ ଝୋଟଲୋକ !! ଲୀନା ଅପାକୁ ଭଲପାଏ ବୋଲି, ଲୀନା ଅପାକୁ ବାହା ହେବ ବୋଲି ସେ ନିଜେ ତାକୁ ସ୍ୱତଃପ୍ରବୃତ୍ତ ହୋଇ କମ୍ ଗୀତ ଶୁଣାଇଛି ? ଖିଆଲ; ଠୁମୁରି, ରବୀନ୍ଦ୍ର ସଙ୍ଗୀତ; କୀର୍ତ୍ତନ—ଯେତେବେଳେ ଯାହା ସେ ଗାଇବାକୁ ବରଦ୍ କରିଛି, ବିନା ଦ୍ୱିଧାରେ ସେ ତାନ୍‌ପୁରା ଧରି ତା' ଆଗରେ ଗାଇଛି । ମୁଗ୍ଧ ହୋଇ, ଆଖିରେ ସ୍ୱପ୍ନର ଆବେଶ ବୋଳି ସେ ଗୀତ ଶୁଣିଛି ଘଣ୍ଟା ଘଣ୍ଟା ଧରି । ଲୀନା ଅପା ବୋକୀ, ବରଂ ଈର୍ଷା କରିଛି । ତା'ର ଭୟ ହୋଇଛି—ଗୀତ ଶୁଣାଇ ସେ କାଳେ ଅଶୋକ ଦାସକୁ ନିଜ ଆଡ଼କୁ ତା'ର ଅଲକ୍ଷ୍ୟରେ ଟାଣିନେବ । ଲୀନା ଅପାର ଏଇ ଅହେତୁକୀ ଭୟଜନିତ ଈର୍ଷାର ଇଙ୍ଗିତ ପାଇଛି ମୀନା, ମାତ୍ର ଲୀନା ଅପା ଉପରେ ସେ ଅଭିମାନ କରି ମଧ୍ୟ କରି ନାହିଁ । ତା'ର ମନ କରୁଣ ହୋଇ ଉଠିଛି । ଆହା ! ଲୀନା ଅପାକୁ-ଇ ବାହା ହେଉ ଅଶୋକ ଦାସ । ତା'ର କିଛି 'ଦରକାର୍ ନାହିଁ । ତା'ର କେହି ଦରକାର ନାହିଁ । ସେ ସୁନ୍ଦରୀ ନୁହଁ । କାଳୀ—ମୋଟୀ । ତାକୁ କିଏ ପ୍ରେମ କରିବ, ଏ ଆଶା ତା' ପକ୍ଷରେ ଖୁବ୍ ମହାର୍ଘ । ଭଗବାନ୍

କଣ୍ଠିଏ ଦେଇଛନ୍ତି । ସେତିକିରେ ସେ କୁହୁ କୁହୁ ତାନରେ କୂଜନ କରି ଉଠେ । ତା'ର ମଧୁର ସ୍ୱରରେ ଅଶୋକ ଦାସ ସମ୍ମୋହିତ ହୋଇ ଆଉ କିଛି ସମୟ ବସି ରହେ—ତା'ର ସମସ୍ତ କର୍ମବ୍ୟସ୍ତତା ଓ ସମୟର ସ୍ୱଳ୍ପତା ସତ୍ତ୍ୱେ । ଆଉ ମୀନା ଅପା ସେତିକି ସମୟ ଅଧିକ ଅଶୋକ ଦାସଙ୍କୁ ପାଏ । ବାସ୍—ଏତିକି । ଏତିକି ତା'ର ଆନନ୍ଦ । ମୀନା ଅପାର ତ ସେ ପ୍ରତିଦ୍ୱନ୍ଦୀ ନୁହେଁ । କିବା ତା'ର ପ୍ରେମର ମଧ୍ୟ ପ୍ରତିବନ୍ଧକ ନୁହେଁ । ସେ ବରଂ ସବୁ ଦିନ ରହିଁଚି, ମୀନା ଅପାର ଆକାଶରେ ସବୁ ଦିନ ଚନ୍ଦ୍ର ଉଦିତ ହେଉ । ଆଉ ସେ ଚନ୍ଦ୍ର ହେଉ ପୂର୍ଣ୍ଣିମାର ।

ଅଥଚ ବେଳେବେଳେ ମୀନା ଅପା କେଡ଼େ କ୍ଷିପ୍ର ହୋଇ ନ ଉଠେ ! ଭାରି ଗପୁଡ଼ୀ ଆଉ ପ୍ରଗଲ୍‌ଭା ମୀନା ଅପା । ତା'ର ଇଚ୍ଛା—ସେ କେବଳ ଏକାନ୍ତରେ ଏକାକିନୀ ଅଶୋକ ଦାସଙ୍କୁ ପାଇ ତା' ସାଙ୍ଗରେ ବକ୍ ବକ୍ କରିବ—ଥଟ୍ଟା ପରିହାସ କରିବ—ମାନ-ଅଭିମାନ କରିବ—ଗେଲ-କଉତୁକ ହେବ । ମୀନାର ଗୀତ ଶୁଣି ମୁଗ୍ଧତାରେ ଅଶୋକ ଅଖି ବୁଜି ଧ୍ୟାନସ୍ଥ ହୋଇଗଲେ ମୀନା ଅପା ତାଙ୍କୁ କୁତୁ କୁତୁ କରି ଚଞ୍ଚଳ କରାଇ ଦିଏ । ହାଲୁକା କରାଇ ଦିଏ । ଆଉ ମୀନାର ଗୀତ ଗାଇବା ଉପରେ ହାଣି ଦିଏ ପଦେ ଦି'ପଦ ବିଦ୍ରୂପ ଆଉ ତାଚ୍ଛଲ୍ୟର ଆଘାତ ।

"ଗୀତ ତ ନୁହେଁ—ମଣିଷର ସ୍ନାୟୁମଣ୍ଡଳୀ ଉପରେ ଆ ଆ—ଯା ଯା'ର ଅକଥନୀୟ ଅତ୍ୟାଚାର ଯେମିତ ।।" ଅଶୋକ ବାବୁ ! ଚିକୁଳ ତାହାର ଖାଇଲେ ଆପଣଙ୍କ ଭଳି ଇଣ୍ଟିଲେକ୍‌ଚୁଆଲମାନଙ୍କୁ ନିଦ ଲାଗିଯାଏ କେମିତି ? ମୀନା ! ଦୟା କରି

ତୁ ତୋର ଏଇ କଣ୍ଠଧ୍ୱନିର ଅତ୍ୟାଚାରର ବନ୍ଦ କର । ନଚେତ୍—ତୋର ସେଇ ଅନ୍ଧାରିଆ ଘର ଭିତରକୁ ଯାଇ କବାଟ କିଳି ବାୟୁମଣ୍ଡଳକୁ ତୋର ପାରୁପର୍ଯ୍ୟନ୍ତ ଯେତେ ଚିଡ଼ାଇ ପାରୁଛୁ ଚିଡ଼ା । ଆମ୍ଭମାନଙ୍କୁ ତୋ କଣ୍ଠଦାଉରୁ ଦୟାକରି ରକ୍ଷା କର । ଯା ମୀନା—ଯା—ଯାଆ ନା !

ମୀନା ଉଠି ଚାଲିଯାଏ । ଆଘାତ ପାଇଲେ କଣ୍ଠର ତାର ସବୁ ଝଣଝଣେଇ ଉଠନ୍ତି ଅପୂର୍ବ ରାଗ-ରାଗିଣୀରେ, ମାତ୍ର ଅବହେଳା ପାଇଲେ ତାର ସବୁ ମୂକ ହୋଇଯାନ୍ତି । ଅଭିମାନରେ; ମୀନା ତାନପୁରାଟିକୁ ଧରି ତା'ର ଅନ୍ଧାରିଆ ଘର ଭିତରକୁ ଉଠିଯାଏ ।

ଆଉ ସଙ୍ଗେ ସଙ୍ଗେ ମଧ୍ୟ ଉଠିଯାଏ ଅଶୋକ ଦାସ । ସତେ କ-ଲିନା ଅପାପାଇଁ ନୁହେଁ—ମୀନାର ଗୀତ ଶୁଣିବାପାଇଁ କେବଳ ସେ ଏଠି ଏତେବେଳଯାଏ ବସି ରହିଥିଲା ।।

କିନ୍ତୁ ଯାଉ ନା ଅଶୋକ ଦାସ । ତା'ର ସେଥିରେ ଯାଏ ନା ଆସେ ? ଲିନା ଅପାର ଦୀର୍ଘଶ୍ୱାସରେ ସନ୍ଧ୍ୟାର ବାୟୁମଣ୍ଡଳ ଭରି ହୋଇଉଠେ । ଲିନା ଅପାର ଆଖିର ଲୁହରେ ଅଶୋକ ଦାସର ଚଲାପଥ କର୍ଦ୍ଦମାକ୍ତ ହେଉ । ହେଉ ନା ! କ'ଣ ଯାଏ ଆସେ ସେଥିରୁ ମୀନାର ?

କବାଟ ଆଉଜାଇ ଦେଇ ସେଇ ଅନ୍ଧାରିଆ ଘରେ ତାନପୁରା ଉପରେ ନିଜକୁ ଅଜାଡ଼ି ଦେଇ ମନଭିତରେ ହାଉ ହାଉ କରି ଉଠେ ମୀନା । ଅଶୋକ ଦାସ କ'ଣ ସତରେ ଆଖି ବୁଜି ତା'ର ଗୀତ ଶୁଣେ ? ଆଖି ଦେଇ ସେ ମୀନାର ସୌନ୍ଦର୍ଯ୍ୟକୁ ଦେଖି

ପାରେ ନା ? ଅଗ୍ନିଭୂଜ କାନବାଟେ ଇ ସେ ପିଉଥାଏ ମୀନାର-ସୌନ୍ଦର୍ଯ୍ୟ-ମାଧୁର୍ଯ୍ୟ ? ରୂପର ଆଲୋକରେ ସେ ଦୀପ୍ତ କରି ପାରେନା ଅଶୋକର ମନକୁ ? କେବଳ ଶବଦର ତରଙ୍ଗରେ ସେ ଅଶୋକକୁ ଉଦ୍ଦୀପ୍ତ କରେ ? ତା'ର କଣ୍ଠ ଚୁପ୍ ହୋଇଗଲାକ୍ଷଣି ଅଶୋକ ଚାଲିଯାଏ, ଲୀନା ଅପାକୁ ମଧ୍ୟ ଉପେକ୍ଷା କରି । ଲୀନା ଅପା ଅଭିମାନରେ ଫାଟିପଡ଼େ । ଅନୁନୟ କରି କହେ— "ଶୁଣନ୍ତୁ ଅଶୋକବାବୁ ! ଦୁହେଁ ଯାକ ବୁଲି ଯିବା ଯେ—" ମାତ୍ର ଅଶୋକ ଶୁଣେ ନା । ଅଶୋକର ମଟର ପଛପଟେ ଶୁଖିଲା ପତ୍ରଟିଏ ଧୂଳିଝଡ଼ ସଙ୍ଗେ ଉପରକୁ ଲହଡ଼େଇ ଉଠି ପୁଣି ଧୂଳିରେ ଲୋଟି ଯାଉ ଯାଉ ଭୂଇଁ ଉପରେ ଇ ପଡ଼ିରହେ ଅସହାୟ ହୋଇ······ ।

ଏମିତ ଭାବିବାକୁ ଭଲଲାଗେ ମୀନାକୁ । ଅଶୋକ ଦାସ କିନ୍ତୁ ସଙ୍ଗୀତ ଭଲ ପାଏ—ଲୀନା ଅପାକୁ ଭଲ ପାଏ । ଆଉ ଏହା ସଙ୍ଗେ ସଙ୍ଗେ ମଧ୍ୟ ଭଲ ପାଏ ଚିଫ୍ ଇଞ୍ଜିନିଅରର୍ ଅଲଅଲୀ କାଦଙ୍ଖୋର୍ ଝିଅ ଅଞ୍ଜନାକୁ; କିନ୍ତୁ ମୀନାକୁ ସେ ଭଲ ପାଏ ନା ? ନା—ଭଲ ପାଏ ନା । କିନ୍ତୁ କ'ଣ ହେଲା ସେଇଠୁ ? ତା'ର ଲୀନା ଅପାକୁ ତ ସେ ଭଲ ପାଏ ! ବେଶ୍ ତ !

ଲୀନା ଅପା ଭାବପ୍ରବଣ—ଲୀନା ଅପା ବୋକୀ—ଲୀନା ଅପା ପାଗଲ୍, ମୁଖରା, ଈର୍ଷାତୁରା; କିନ୍ତୁ ଲୀନା ଅପା । ଆଃ ! ତା'ର ବି ଲୀନା ଅପା ଛଡ଼ା ଆଉ କିଏ ଅଛି ? ମାଆ ନାହିଁ ବହୁକାଳୁ । ଆତ୍ମହତ୍ୟା କରିଛି ମାଆ । ଭାଇ ନାହାନ୍ତି । ମଝିଆଁ ଭଉଣୀ ଅପହୃତା ବାପା ବୁଢ଼ା ହେଲେଣି । ଘୋଟିଆ ମଣିଷଟିଏ । ଖୁବ୍ ଦୁର୍ବଳଆ । ଘରି ନରମ ବାଁକୁଡ଼ି । ଜାକଜୁକ ହୋଇ ଯାଆନ୍ତି ଆସନ୍ତି । ଆଉ ସବା ବଡ ଭଉଣୀ ଗୀନୁଅପା ।

ଗଣିତରେ ଅଧ୍ୟାପିକା । ସେମାନଙ୍କଠାରୁ ବେଶ୍ ବଡ଼ । ମାଆ ଭଳି ହେବ । ଘର କଡ଼ା ମଣିଷ । ସେଇ ତ ଏଇ ଘରର କର୍ତ୍ତ୍ରୀ । ପିଲାଦିନେ ହାତରେ ବେତ ଧରି ପିଟିପିଟି ସେମାନଙ୍କୁ ଶାସନ କରୁଥିଲା । ଏବେ କିନ୍ତୁ କାହାକୁ କିଛି କହେନାହିଁ । ଛାତ ଉପରର ବଖୁରିକିଆ ଘରେ ଦିନରାତି ଆରାମଚଉକୀଟିରେ ପଡ଼ିରହି ଶିବାନନ୍ଦ ନିଗମାନନ୍ଦ ଆଉ ରାମକୃଷ୍ଣଙ୍କ ଉପଦେଶ ପଢ଼ୁଥାଏ । ଏବେ ସେ କାହାକୁ କିଛି କହେ ନା—ମାତ୍ର ଘର ଡରମାଡ଼େ ତାକୁ । ହାତରେ ବାଡ଼ିଟିଏ ଧରି ସେ ବାହାରକୁ ଯାଏ ଗମ୍ଭୀର ହୋଇ । ପୁଣି ବାହାରୁ ଗମ୍ଭୀର ହୋଇ ଘର ଭିତରକୁ ପଶି ସିଧା ଉଠିଯାଏ ଛାତ ଉପରକୁ— ସେଇ ତା'ର ବଖୁରିକିଆ ଘରଟି ଭିତରକୁ । ବାସ୍— । ତାକୁ କଥା କହିବାକୁ ଡର ଲାଗେ । ତା' ଆଗରେ ପଡ଼ିଗଲେ ଛାତି ଧଡ଼ ପଡ଼ ହୁଏ । ବାପା ମଧ୍ୟ ତାକୁ ଡରନ୍ତି । ଲୀନା ଅପା ଏଡେ ଫାଜିଲ୍—ମାତ୍ର ରିନୁ ଅପା ଆଗରେ ତା ପାଟି ଝଳି ବାଜିଯାଏ ।

ଆଉ ତା'ହେଲେ ତା'ର କିଏ ? ଲୀନା ଅପା ଛଡ଼ା ଦୁହିଙ୍କ ମଧ୍ୟରେ ବର୍ଷଟିଏ ତଫାତ । ପିଲାଦିନୁ ଏକାଠି ଖେଳି-ଛନ୍ତି—ଖାଇଛନ୍ତି—ଶୋଇଛନ୍ତି—ଚଢ଼ିଛନ୍ତି ଆଜିଯାଏ । ଲୀନା ଅପା ସୁନ୍ଦରୀ—ତିନୁପାତେଳୀ, ସୁନାଖଣ୍ଡିକା ପରି । ଅତ୍ୟାଧୁନିକ ଢଙ୍ଗରେ ନିଜକୁ ସଜାଏ । ଖୁବ୍ ଗୁଡ଼ାଏ ବକ୍ ବକ୍ କରେ— ସବୁବେଳେ ହିଁ ହିଁ ହୋଇ ହସେ । କାହାକୁ ଜବାବ୍ ନ ଦେଇ ଛାଡ଼େ ନାହିଁ । ବଡ଼ ଲୋକଙ୍କ ସଙ୍ଗେ ମିଶେ । ମାତ୍ର ସେ ନିଜେ ଲୀନା ଅପାର ସବୁ ଗୁଣର ବିପରୀତ । ସେ ସୁନ୍ଦରୀ ନୁହେଁ—କାଳୀ— ମୋଟି । ଖୁବ୍ ଗମ୍ଭୀର । ହସେ ନାହିଁ—ହସାଏ ବି ନାହିଁ କାହାକୁ ।

ବେଶି ଲୋକଙ୍କ ସଙ୍ଗେ ମିଶିବାକୁ ତା'ର ପ୍ରବୃତ୍ତି ହୁଏ ନା। ସେ କେବଳ ଗୀତ ଗାଏ। ତା' ପୁଣି ଆଧୁନିକ ଲଘୁ ସିନେମା ବା ପଲ୍ଲୀସଙ୍ଗୀତ ନୁହେଁ। ମାର୍ଗ-ସଙ୍ଗୀତ—ଖିଆଲ, ଠୁମ୍ରି...ଏଇଆପି ମୀନା ଅପାକୁ ସେ ଖୁବ୍ ଭଲପାଏ। ମୀନା ଅପା ତା'ଠାରୁ ବୟସରେ ବଡ଼—ମାତ୍ର ମୀନା ଅପାକୁ ତାର ମନେ ହୁଏ—ଖୁବ୍ ସାନ ତା'ଠାରୁ। ଦେହଗେଲିଆର କିଛି ଠିକଣା ନାହିଁ। ବେଶ୍ ବୁଦ୍ଧିମତୀ କ୍ଲାସରେ ଖୁବ୍ ଭଲ ପଢ଼େ। ମାତ୍ର ସଂସାର ବିଷୟରେ ବୋଧେଥା କିଛି ଜାଣେ ନା। କେବଳ ଗଳ୍ପ ଆଉ କବିତା ପଢ଼ି ପଢ଼ି ସେ ଦୁନିଆକୁ ଦେଖେ ତା'ର ଭାବପ୍ରବଣ ଆଖିର ସ୍ୱପ୍ନ ଭିତରେ।

ମୀନା ଅପାର ନାକ ଉପରେ କ'ଣ୍ ଦମ୍ଭ ? ସେ କହେ—"ପ୍ରେମ କ'ଣ ତୁ କାହିଁ ବୁଝିବୁ ମୀନା !" ଯଦି ତୁ କାହାକୁ ପ୍ରେମ ନ କରିଛୁ ବା ତୋତେ ବି କିଏ ପ୍ରେମ ନ କରିଛି ?"

ହସମାଡ଼େ ମୀନାକୁ ମନେମନେ। ପ୍ରେମରେ ଏଡ଼େ ଅଭିଜ୍ଞା ମୀନା ଅପା ? ଅଥଚ ଅଶୋକ ଦାସ ଆଖି ବୁଜି ତା'ର ଗୀତ ଶୁଣିଲବେଳେ ସେ ତାକୁ ଈର୍ଷା କରେ କେମିତ ? ସେ ଭଲ ମୋତେ ବୁଝେ ?

ନେହା ବୁଝେ ମୀନା ଅପା ! ଆପଣା ମନର ଖିଆଲୀ ପ୍ରବଣତାରେ ବୋକା ହୁଏଁ। ମନେ ମନେ ଫୁଲୁଥାଏ। ପଢ଼ୁଥିବା ଥାଏ କୁହୁଡ଼ି ଭିତରେ। ଏବେ ପାଇବ ସେ ତା'ର ଫଳ ! ପ୍ରେମ କରିବାର ମଜା ବାହାରିପିବ। କଅଣ ଭଲ ବର୍ତ୍ତିମାନ ସେ କରିବ ? ଅଶୋକର ଏ ଚିଠିଟା ପଢ଼ୁ ପଢ଼ୁ ତା'ର ସ୍ଥିତ ଯାଇଁ-

ଯିବ ନାହିଁ ? ସେ ଯେମିତ ଝିଅ । ଗୋଟାଏ ଅଚେତନ ମୋହରେ ଆଖି ବୁଜି ବସିଛି—ସତ୍ୟର ନିଦାରୁଣ ପ୍ରଜ୍ୱଳିତ ଆଲୋକର ଧାଡ଼ିକୁ ଡରିମରି ? ବର୍ତ୍ତମାନ ତା'ର ବୁଜିଲା ଆଖି ଆଗରେ ଯେ ଫାଇଁକିନା ଜଳି ଉଠିବ ନିଦାରୁଣ ସତ୍ୟର ଅସହନୀୟ ନିଆଁ ହୁଳ । କ'ଣ କରିବ ଲୀନା ଅପା ?

ଓଃ—ହେ ଭଗବାନ୍ !

ଲୀନା ଅପା ବର୍ତ୍ତମାନ କଅଣ କରିବ ? କେମିତ ରହିବ ? ବହୁକାଳୁ ଲାଳିତ ଏହି ଆକସ୍ମିକ ମୋହ-ଭଙ୍ଗକୁ ସେ କପରି ସମ୍ଭାଳି ପାରିବ ?

ଓଃ—କଅଣ କଲା ଅଶୋକ ଦାସ ? ହେ ଭଗବାନ୍ !

ଅପା କଥା ଭାବି ଭାବି ମୀନାର ମନ ଅସ୍ଥିର ହୋଇ ଉଠିଲା । ସେ କିଛି ବାଟ ପାଇଲା ନାହିଁ । ଏ ସ୍ଥଳରେ ତାର କର୍ତ୍ତବ୍ୟ କ'ଣ, ତାହା ମଧ୍ୟ ସେ ସ୍ଥିର କରି ପାରିଲା ନାହିଁ । ଅଶୋକର ଚିଠିଟାକୁ ହାତରେ ଧରି ସେ ଖାଲି ଛଟପଟ ହୋଇ ଘରଯାକ ଘୂରି ବୁଲିଲା । ତା'ର ମନରେ କେବଳ ଆଉଟି ହେଉଥିଲା—ଅଶୋକ-ପ୍ରେରିତ ଏଇ ଚିଠି ଭିତର ନିଦାରୁଣ ସତ୍ୟଟାକୁ ଯାହା କି ଗୋଟାଏ ରଙ୍ଗ ନିଆଁ ଭଳି ଏ ଯାବତ୍ ପାଉଁଶ ଭିତରେ ଲୁଚି କରି ରହିଛି—କପରି ଲୀନା ଅପାର ଭାବ-କୋମଳ ବିଶ୍ୱାସ-ପ୍ରସାରିତ ପ୍ରେମରଞ୍ଜିତ ହାତ ଭିତରକୁ ବଢ଼ାଇ ଦେବ ।

ହଠାତ୍ ଲୀନାର ପାଟି ଶୁଣି ମୀନା ଅଧିକ ଚଞ୍ଚଳ ହୋଇ ଉଠିଲା ଗୁଣୁ ଗୁଣୁ ହୋଇ କ'ଣ ଗୋଟାଏ ଗୀତର ସୁର ଧରି—ବନହରିଣୀ ଭଳି ନାଚି ନାଚି ସେ ବାହାରୁ ଆସୁଥିଲା ଘର ଆଡ଼କୁ । ସତେ କି ଫୁଲର ଉଦ୍ୟାନରେ ଫୁଲଚୁଇଁ ଚଢ଼େଇଟିଏ । କମ୍ପା

ଫଳର ଉଦ୍ୟାନରେ ମୁଖର ବୁଲବୁଲୀଟିଏ ! ହୋଲେ ନାଁ ଡୋଲେ । ଅପଣାର ପ୍ରେମ-ବିଶ୍ୱାସ-ମଧୁ ଆସବ ପାନରେ ଆପେ ପ୍ରମତ୍ତ । ଅପଣାର ଖିଆଲୀ ଫୁଲବଣରେ ଯେମିତି ଗୋଟାଏ ହାଲ୍କା ପ୍ରଜାପତି । ବୋକା କିଛି କ'ଣ ବୁଝେ ନା ବୁଝିବାକୁ ଚେଷ୍ଟା କରେ ? ହତଭାଗୀ ! ସେ କ'ଣ ଆଶଙ୍କା ବି କରୁଛି ହେଲେ—ଯେ ତା'ପାଇଁ ପ୍ରକାଶ ଅପେକ୍ଷାରେ ଏଠି ପାଞ୍ଜିଶ ଭିତରେ ଲୁଚି ଧକାଧକ କରୁଛି ଗୋଟାଏ ନିଦାରୁଣ ସତ୍ୟ—ଝିଅଟିଏ ଚନ୍ଦ୍ରମା ନିଆଁର ଅଙ୍ଗାର ଭଳି ?

ଇସ୍—ମନେ ମନେ ଗୋଟାଏ ପ୍ରେମିକା !

ମୀନା ସତକୁ ସତ ରାଗିଗଲା । ପଦପ ଏମିତି ରାଗିବ ବୋଲି ସେ ନିଜେ ଜାଣି ନ ଥିଲା; ପ୍ରସ୍ତୁତ ବି ନ ଥିଲା । ତାର ଇଚ୍ଛା ହେଲା—ସେ ଲୀନା ଅପାର ଷ୍ଟାଇଲ୍ କରି ବନ୍ଧା ହୋଇଥିବା କେଶଫୁଲାକ ଯୋଷାର ଧରି ତା'ର ଗାଲରେ ଚଟାପଟ ଚଟକଣି ମାରିଦିବ । ହତଭଗିମୀ ! ଆ ତୁ ଏଠିକି ଆଗ ।

ଲୀନା ନେଣୁ ନାଚି ନାଚି ଆସି ପହଞ୍ଚିଲା ମୀନା ପାଖରେ । ହଠାତ୍ କୋଉଠି ଥିଲା ତାଙ୍କର ପୋଷା ରୁମାଲିଆ କାବୁଲି ଶଂଖୀ ପୁସି ବିଲେଇଟା ତା' ଦେକର ଘୁଙ୍ଗୁରଟାକୁ ବଜାଇ ବଜାଇ ଆସି ଲୀନା ଅପାର ଗୋଡ଼ପାଖେ ଶିକାରୀ ବାଘୁଣୀ ଭଳି ଖୁବ ଗୁଡ଼ାଏ ଛକାଛକି କୁଦାକୁଦି ଆରମ୍ଭ କରିଦେଲା । ଲୀନା ଅପା ପୁସିଟାକୁ ଟେକି ଗୋଟାଇ ନେଇ ତା' କୋଳରେ ଜାକିଧରି—ତା' ମୁହଁ ପାଖେ ମୁହଁ ଲଗାଇ ପୁଣି ବଢ଼େ ଗେହ୍ଲେଇ ହୋଇ ନାଚି ଗଲା ।—

ତାପରେ ମୀନା ଉଦ୍ଦେଶ୍ୟରେ କହି ଚାଲିଲି—

ଏଇ ଗୋଟିଏ ଲେଇ ପୁଷିଟାକୁ କିନ୍ତୁ ମୁଁ ନେଇଯିବି ସାଙ୍ଗରେ ମୀନା ! ଏ ବୋକାଟାକୁ ତୁମେମାନେ ଏଠି ଚଳେଇ ପାରିବ ନାହିଁ ।...ତୁ ତ ଏହାର ଶୀର ଦେଖୁ ନାହୁଁ । ଯିବୁ ନା ଲୋ ମୋ ସାଙ୍ଗରେ ? ହେ ଫୁଲେଇ ? ? ଯିବୁ ନା ?

ପୁଷି କହିଲା—ମିଆଁଉ ! !

ଚୁପ୍ ଚୁପ୍—କହିଲା ମିଆଁଉ । । ଯିବୁ ନା ଲୋ ? ହେ ମୀନା ଏ ପୁଷିଟାକୁ ମୁଁ ସାଙ୍ଗରେ ନେଇଯିବି—ତୁ ନିଶ୍ଚିନ୍ତ ରହ ।

ମୀନା ରାଗରେ ନାଲି ପଡ଼ିଗଲା ।

କୁଆଡ଼େ ନେବୁ ପୁଷିକୁ ?

କାହିଁକି ? ଅଶୋକ ବି ଜୀବଜନ୍ତୁ ପୋଷିବାକୁ ଭାରି ଭଲ ପାଏ ଜାଣୁ ନା ?

କିନ୍ତୁ ତୋତେ ଆଉ ଭଲ ପାଏ ନା ଅଶୋକ ? ମନେ ମନେ ବେଦ ବାନ୍ଧି—ମୁକୁଟ ପିନ୍ଧି ବସିଥା ।

ଚୁପ୍ କର୍ ! ସବୁଦିନେ ତୁ ମତେ ଏମିତି କାହିଁକି ଜଳାଉ ଥାଉ ଲୋ ? ତୁ ଜାଣୁ ଆସନ୍ତା ମାସରେ ବାହାହେବା ଲାଗି ଅଶୋକ ମତେ କଥା ଦେଇ ସାରିଛି ? ଟ୍ରାନ୍‌ସଫର ହୋଇଗଲା ବୋଲି ତୁ ଭାବୁଛୁ......

ମୁଁ କ'ଣ ଭାବୁଛି—ସେ କଥା ତୁ କେବେ ଜାଣିବାକୁ ଚେଷ୍ଟା କରିବୁ ମୀନା ଅପା !

ହଁ ଜାଣେ ଲୋ ! ତୁ ଭାବିଥିଲୁ—ଅଶୋକ ତୋ' ଖିଆଲ, ଟୁମୁରୀ ଶୁଣି ତୋତେ ଭଲ ପାଇ ବସିଛି । ଆଉ ତୋତେ

ତାହାହବାକୁ ଅଶୋକ ଚେଷ୍ଟା କରି ଲାଗିଛି—ନାହିଁ ? ମୀନା ଆ ତୁ ମନେ ମନେ ହସୁଥିଲା ଲଜ୍ଜା । ଇର୍ଷାରେ ଜଳି ମରୁଛି ହତଭାଗୀ— ! ହଂସିକୁଣ୍ଡୀ ! ଅଶୋକର ଆଖି ଦାଢ଼ୀ କାଚର ଆଖି ନୁହେଁ ମ ! ସେ ଆଖିରେ ଜୀବନ ଅଛି । ସେ ଆଖିରେଖା ଆଉ ରଙ୍ଗର କାରୁକାର୍ଯ୍ୟ ବାରିପାରେ ।

ମୀନାର ମୁଣ୍ଡ ଗରମ ହୋଇଗଲା । ତା'ର କାନମୁଣ୍ଡା ଝାଇଁ ଝାଇଁ ହୋଇଗଲା । ତା'ର ଇଚ୍ଛା ହେଲା—ସେ ମୀନା ଅପାର ଜାଚେନାଲୀ ଭଳି ବେକଟାକୁ ଅମୁଣ୍ଡ ପକାନ୍ତା । ହରି ଗଲା ତା'ର ଏଇ ବେକଟା ଲାଗି । ଭାରି ଦେଖେଇ ହୁଏ ସେ ବେକଟାକୁ ! ମୀନା କହିଲା—

ଅଶୋକର ଖାଲି ଆଖି ନାହିଁ—ତା'ର କାନ ଦୁଇଟା ବି ଅଛି । ସେ କାନ ସ୍ୱର, ଲୟ, ଆଉ ମୂର୍ଚ୍ଛନା ବାରିପାରେ । ତୋ ଭଳି ଗପୁଡ଼ି, ପାଜିଲ୍, ଆଉ ହାଲୁକା ଝିଅକୁ ଅଶୋକ ଦାସ କେବେ ପସନ୍ଦ କରି ପାରେ ନା । ତୋ ଭାଗ୍ୟରେ କେତେ ବଡ଼ ଦୁର୍ଭାଗ୍ୟ ଅଛି, ସେ କଥା ତୁ ଖୁବ୍ ଶୀଘ୍ର ବୁଝିବୁ । ରହ— ଅପେକ୍ଷା କର ।

ମୁଁ ବେଶ୍ ବୁଝିଛି ମୀନା ! ତୁ ମୋର ଶିରୀ ଦେଖି ପାରୁନାହୁଁ । ଆଉ ମୁଁ ବଡ଼ ନ ହେଉଣୁ—ତୋ'ର ଇଚ୍ଛା— ତୁ କେମିତି ଚଞ୍ଚଳ ବାହା ହୋଇ ପଡ଼ିବୁ । ତୋତେ ମରଣ ହେଉ ନ କାଳୀଚଣ୍ଡୀ ?

ଅପା ତୋର ପାଟି ଛୁଡ଼ ପଡ଼ିବ । ତୁ ମତେ ଏମିତି ଅପମାନ ଦେଉଛୁ । ତୋ ମୁଣ୍ଡରେ ବଜ୍ର ପଡ଼ିବ । ଅଶୋକ ଦାସ

ତୋତେ ଧୋକା ଦବ ନାହିଁ—ଅପେକ୍ଷା କର—ଦେଖିବୁ ପୁଣି ଦେ ଯାହାକୁ ବାହା ହଉଛି ।

ଚୁପ୍ କର କହୁଛି— !
ମୁଁ ତ ସବୁ ଦେଖିଲି ଚୁପ୍ !
ତୁ ଚୁପ୍ ରହିଥା ।
ଆଉ—ତୁ ତ ନ ହେଲେ ବାହାହେବୁ ।

ଚାଲି ଯା ଏଠୁ—ଚାଲିଯା ଏଠୁ କହୁଛି—ନଗଣ୍ଡ ଆଉ ତାହାଣୀ ।

ମାନ ମୀନା ସେଠୁ ସଙ୍ଗେ ସଙ୍ଗେ ଉଠିଗଲା ନାହିଁ । ସେଇଠି ଠିଆ ହୋଇ ସେ ଅଶୋକ ମୁହଁକୁ ଚାହିଁ ରହିଲା । ତା'ର ଆଖି ଛଳ ଛଳ ହୋଇ ଉଠିଥିଲା । ତା'ର ଛଳ ଛଳ ଆଖିକୁ ଚାହିଁ ଦେଇ ମୀନା ଧୁମ୍ ଧୁମ୍ କରି ଆର ଘରକୁ ଚାଲିଗଲା । ତା'ର ମନଟା ମଧ୍ୟ ହଠାତ୍ ଅସ୍ଥିର ଓ ଅଶାନ୍ତ ହୋଇ ଉଠିଲା ।

କ'ଣ ଏମିତି କହିଗଲା ମୀନା ? ଅଶୋକ ସଙ୍ଗେ ଅବା ସେ କେତେକ୍ଷଣ ମିଶେ ? ଅଶୋକକୁ ସେ କ'ଣ ବା ବୁଝିଛି ? କ'ଣ ବା ସେ ଜାଣେ ପ୍ରେମ ବିଷୟରେ ? ଅଥଚ କେଡ଼େ ସାହସରେ କହିଦେଲା—"ଅଶୋକ ତୋତେ ବାହା ହେବ ନାହିଁ !" ଇସ୍ ! ମଜନୁମୁହାଁ ଘର ଜଣେ ! କୋଉଡ ରୂପ ! ଆଖି ଦ'ଟା ବିରାଡ଼ିର ଆଖି ଭଳି ଗୋଲ ଗୋଲ । ପାଉଁରୁଟି ଭଳି ଫୁଲୁକା ଫୁଲୁକା ଗାଲ । ବେଙ୍କ ବୋଲି ତା'ର କିଛି ନାହିଁ କହିଲେ ଚଳେ । ଦେହର ରଙ୍ଗଟା ବି କେମିତି ଗୋଟେ ଧୂଆଁଳିଆ ; ଦାନ୍ତ ଯେମିତି ଗୋଟାଏ ଗୁମ୍ବତି-ଗାମୁଛି ଗଢ଼ଣା ମାତ୍ର ।

ତା' ଦେହେର ପାଖରେ ମୀନା କେତେ ମଳିନ । କେତେ ଅସୁନ୍ଦର । ଅଶୋକ ତ ସେଦିନ ଖୁବ୍ ଆବେଗଭରେ କହୁଥିଲା—"ମୀନା ! ତୁମେ ଯେମିତି ଗୋଟାଏ ନାଳନ୍ଦା ମହାଭାରତ ।"

ଅହାଃ । ମୀନା ନିଜ ଦେହ ଉପରେ ତୁଛି ଥରେ ଆଖି ବୁଲାଇ ଆଣିଲା, ଆଖି ପିଟୁଳାକେ ଦର୍ପଣ ଆଗରେ । ପ୍ରକୃତରେ ଏକା ଇଞ୍ଜିନିଅର ଅଶୋକ ଦାସର ଦୃଷ୍ଟିରେ କହିଲ୍ଭ ରହିଛି । ଜବର ଆଖି ନେଇ ସେ ସୌନ୍ଦର୍ଯ୍ୟର ତାରିଫ କରେ ତା'ରେ··· ଅଥଚ—ଅଥଚ ମୀନାଟା ମନେ ମନେ ଭାବୁଛି ଯେ ଅଶୋକ ତା'ର ସଙ୍ଗୀତ ଶୁଣି ତା' ପ୍ରେମରେ ପଡ଼ିଯାଇଛି । ଆଜି ତାକୁ-ଇ ଭୁଲି ଯାଇଛି ସେ ଶେଷରେ ବାଧ୍ୟ ହେବ ।

କେମିତି ଏ କଥା ଭାବୁଛି ମୀନା ? ମୀନା କ'ଣ ନିଜର ରୂପ ଉପରେ ସଚେତନ ହୋଇ ପାରେ ନା ? ହେଲା ଏବେ—ତା'ର କଣ୍ଠସ୍ୱରରେ କ'ଣ ଗୋଟାଏ ବିଚିତ୍ର ମାଦକତା ଅଛି । (କଣ୍ଠସ୍ୱରରେ କି ପ୍ରକାର ମାଦକତା ଥାଏ—ଅବଶ୍ୟ ସେ ନିଜେ ବୁଝି ପାରେ ନା ।) ଅଶୋକର ଆଖିକୁ ସନ୍ତୁଷ୍ଟ କଲଭଳି ତା'ର ଦେହକାନ୍ତିଏ ଅଗ ଅଛି ନା ! ଭ୍ରାତୃଜକୁ ପଛପଟୁ—ଆଗପଟୁ ଯେତେ ଚଳକୁ କାଟି ପିନ୍ଧିଲେ ବ ଗଉଡ଼ଣୀ ମାଛ ଭଳି ତା'ର ଗଣ୍ଡିକୁ ନେବକଠାକୁ କେବେହେଲେ ପୃଥକ୍ କରି ହୁଏ ନା ।

ଅଥଚ କେତେଥର ଅଶୋକ ତା' ନିଜର ଦେହକାନ୍ତିକୁ ପାପୁଲିରେ ଧରି ପକାଇ ଚୁମା ନ ଦେଇଛି !!—"ଦେହ ତ ନୁହେଁ—ଯେମିତି ରଜନୀଗନ୍ଧା ଫୁଲର ଲଳିତ ଡେମ୍ଫଟିଏ ।

ଅଶୋକ ବି ନିଜେ କହେ—ସ୍ତ୍ରୀ ଲୋକର ଅର୍ଦ୍ଧେ ସୌନ୍ଦର୍ଯ୍ୟ ତା'ର ବେଶ ଉପରେ-ଇ ନିର୍ଭର କରେ । ଇଣ୍ଡିଆନ୍ସ୍ଫେ ହେଲେ କ'ଣ ହେଲା, ଏଇ ସୌନ୍ଦର୍ଯ୍ୟବୋଧ ଓ ରୁଚିବୋଧ ଲାଗି ସେ ପ୍ରଫେସର ଅବିନାଶ, ଡାକ୍ତର ଅମଳେନ୍ଦୁ ଆଉ ଦେଉତ୍ତି ଅଚ୍ୟୁତ କର ଆଦି ପୁରୁଷବନ୍ଧୁଙ୍କ ଭିତରେ ଏଇ ଅଶୋକ ଦାସଙ୍କୁ-ଇ ଭଲପାଇ ବସିଛି । ପ୍ରଫେସର୍ ଅବିନାଶ୍ ବେଶ୍ ସୁନ୍ଦର ଆଉ ସ୍ୱାସ୍ଥ୍ୟବାନ୍ । ଆଉ କେବଳ ଏଇଥିଲାଗି ତା' ପାଇଁ ବନ୍ଧୁ ଝିଅଙ୍କ ଆଖିକି ନିଦ ନାହିଁ; କିନ୍ତୁ ଅବିନାଶ୍‌କୁ ଭଲପାଇ ହୁଏ ନା ଗୁଡ଼ାଏ ଅଯଥା ବକ୍ ବକ୍ କରେ । ବଡ଼ ବକ୍ତୃତାକାର । ଝିଅ ବା ଭଦ୍ରମହିଳା ଦେଖିଲେ-ଇ ସେ ବକ୍ତୃତା ଦେବାକୁ ଆରମ୍ଭ କରିଦିଏ । ଅନ୍ୟମାନଙ୍କୁ ସେ କଥା କୁହାଇ ଦିଏ ନା । ବନ୍ଧୁ ବଡ଼ ବଡ଼ କଥା ଅବଶ୍ୟ ସେ କହେ ! ସାହିତ୍ୟ, କଳା, ଧର୍ମ, ରାଜନୀତି—ଯେ କୌଣସି ବିଷୟରେ ଅନର୍ଗଳ ଗପି ଚାଲେ । ଗୁଡ଼ାଏ ଗପି ଦେଇ ପୁଣି ହଠାତ୍ କଥା ବନ୍ଦ କରିଦେଇ ସେ ଉଠି ଚାଲିଯାଏ । ସତେ କି କ୍ଲାସ ନେଉଥିଲା—ଘଣ୍ଟା ବାଜିବା ମାତ୍ରେ ହିଁ ବକ୍ତୃତା ବନ୍ଦ କରି ସାର୍ ଉଠିଗଲେ ଫେର ଅନ୍ୟ କ୍ଲାସକୁ । ଇସ୍—ମୁଣ୍ଡ ବିଥାଏ । ଏତେ ଗପୁଡ଼ି ପୁରୁଷଗୁଡ଼ାଙ୍କୁ ସେ ଭଲ ପାଏ ନା । କଅଣ ଅଛି ଏତେ ଗପିବାର ଏତେ ବକ୍ତୃତା ଦେବାର ? ସେ କିଛି ଦେଖେ ନା—କିଛି ଶୁଣେ ନା—କେବଳ ଝିଅମାନଙ୍କୁ ଦେଖିଲେ ଇ ଗପିଚାଲେ ବକ୍ତୃତା । ସୌନ୍ଦର୍ଯ୍ୟ ଉପରେ କଥା ଉଠିଲେ ସେ କହେ—ସବୁଫୁଲ ସମାନ ସୁନ୍ଦର । ସବୁ ରଙ୍ଗ ଚମତ୍କାର । ସବୁ ଆକୃତି ମନୋରମ । ବାସ୍—ଏତକ କଥାକୁ ପ୍ରମାଣ କରିବା ଲାଗି ତା' ପଛେ ପଛେ ଗୋଟାଏ ନାତିଦୀର୍ଘ ସାରଗର୍ଭକ ଭାଷଣ ଶୁଣୁଥା··· ।

ହଁ, ତାଙ୍କୁ ବି ଶୁଣିବାକୁ ହିଁ ଅଛନ୍ତି । ସିପ୍ରା ଆଉ ବୁଲ୍‌ବୁଲି ବି ତା' କଥାକୁ କାନଦ୍ୱାରେ ପିଇଯାନ୍ତି । ସେଇ ଦୁହିଁଙ୍କ ଭିତରେ ପୁଣି ତାଙ୍କୁ ପାଇବାଲାଗି ପ୍ରତିଦ୍ୱନ୍ଦ୍ୱିତା ଚାଲିଛି । ଅଥଚ ପ୍ରଫେସର ଅବନୀନ୍ଦ୍ର କହନ୍ତି—ସିପ୍ରା ଆଉ ବୁଲ୍‌ବୁଲି ନାରୀ ହିସାବରେ ସମାନ । କେବଳ ତା' ନିଜ ହୃଦୟର ପ୍ରଣୟ-ମଧୁ-ସମୁଦ୍ରରେ ଆଲୋଡ଼ିତ ଆଉ ପାଳିତ ହୋଇ ଦୁଇଟିଯାକ ମାଛ ସମାନ ମଧୁର ହୋଇ ଉଠିଛନ୍ତି । ଆଉ ଏଣେ ସିପ୍ରା ଆଉ ବୁଲ୍‌ବୁଲି ଘରେ ଏଥି-ଲାଗି କଳିକଜିଆ କରି ଦୁହେଁ ଦୁହିଁଙ୍କୁ ଅସୁଡ଼ି ହୋଇଥିଲେ ।

ଆଉ ଡାକ୍ତର ଅମଲେନ୍ଦୁ । ଲୋକଟା ଖୁବ୍ ଅଳ୍ପ କଥା କହେ—ଦାନ୍ତ ଚିପି ଚିପି । ମାନ ଗୁଡ଼ାଏ ଅଯଥା ହସେ; ଯଦିଓ ହସରେ ସ୍ୱାଭାବିକତାର ଗନ୍ଧ ନାହିଁ । ସତେ କି କୋଉଠି କେତେ-ବେଳେ କେତିକି ହସିବାର କଥା—ସେମିତିକା ଠିକ୍ ହିସାବ କରିସାରି ସେ ହସେ !

ଭଲ ଲାଗେ ନା ଅମଲେନ୍ଦୁକୁ । ତଥାପି ତ ଅମଲେନ୍ଦୁକୁ ନେଇ ଭବିଷ୍ୟତର ସପନା ଉପରେ ଫୁଲ ପକାଉଛନ୍ତି ଅଞ୍ଜଳି ମିଶ୍ର ।

ମହାମାୟାର ଆଖି ପୁଣି ଡେପୁଟୀ ଅଜୟ କର ଉପରେ । କ'ଣ ତାଙ୍କୁ ଭଲଲାଗେ କେଜାଣି ତା'ର ? ସବୁବେଳେ ମୁହଁଟାକୁ ଗମ୍ଭୀର କରିଥିବ । ସେ ଆଦୌ ହସି ଜାଣେ ନା । ଯେତେ ନରମ କରି କଥା ମଧୁର କରି କହିଲେ ବି ଶୁଣେ ଯେମିତି କାନ ଲଗାଉଛନ୍ତି । କ'ଣ ସେ ଭାବେ କେଜାଣି ? ତା' ମୁହଁରୁ ଜାଣିବା କଷ୍ଟକର ।

ଅଥଚ ଏଇ ଅଶୋକ ଦାସ ! ଅଃ—ଲୋକଟିକୁ ନେଇ ଅଜୀବନ ମୁଖରେ ନିଃଶ୍ୱାସ ମାରିହେବ । ତେବେହେଲେ ବିଶେଷ ଭଲ ନ ହେଲେ ବି ତା'ର ଗୋଟିଏ ପୁରୁଷୋଚିତ ବ୍ୟକ୍ତିତ୍ୱ ଅଛି । ସେଇଟା ହିଁ ତ ଆକର୍ଷଣ କରେ । ଖୁବ୍ ସରଳ । ଠିକ୍ ଯେମିତି ପିଲାଟିଏ । ଯାହା ଅନୁଭବ କରେ ଯେତେବେଳେ—ସେ କହୁ ନ କହୁଣ ତା'ର ମୁହଁରେ ସେ ସବୁ ଫୁଟି ଉଠେ—ରେଖା ହୋଇ—ରଙ୍ଗ ହୋଇ । ସେ ଯେତେବେଳେ ବିରକ୍ତ ହୁଏ, କହିଦିଏ—"ଆଃ—ବଡ଼ ବିରକ୍ତ ଲାଗିଲାଣି, ଉଠେ ଏଥର ! ସେ ଯେତେ-ବେଳେ ଖୁସୀ ହୋଇଯାଏ—ହସିଉଠେ ବେପରୱା—ହାଃ ହାଃ ହାଃ ! ଆଉ ସେ ଯେତେବେଳେ ରାଗିଯାଏ—ସଫା କହିଦିଏ—"ଦେଖ ଲୀନା ! ଏ ସବୁ କଥାରେ ମୁଁ ବଡ଼ ରାଗିଯାଏ ।" ଯେଉଁ-ମାନଙ୍କୁ ସେ ଭଲ ପାଏ ନା—ପରିଷ୍କାର ସ୍ୱୀକାର କରିଯାଏ ତା ଆଗରେ ।—ମୋତେ ମିଶ୍ରାଟା ଆଦୌ ଭଲ ଲାଗେ ନା ! ଇସ୍—ସ୍ତ୍ରୀଲୋକ ନାମରେ କଥା କହିଲେ ମୋର ନାହିଁ ଉଏ ।... ଲୋକଟାକୁ କିଏ କାହିଁକି ପସନ୍ଦ କରେ—ମୁଁ ବୁଝି ପାରେ ନା—ଭୀଷଣ ହସେ ମିଶ୍ରା । ହସେ ନାହିଁ ତ—ଅଟ୍ଟହାସ କରେ । ମହାପାତ୍ରଟାର ରୂପ ଦେଖିଲେ ଆଶ୍ଚର୍ଯ୍ୟ ହୁଏ ମୁଁ । ତା'ର ଧାରଣା ସେ ଅଜସ୍ର କରି ସେଇପୁଡ଼ି ମାଜକ୍ଟେ ଦେଖାଏ ଦେବତା । ମୁଁ କହେଁ—ବରଂ କହ ଅପଦେବତା ।"

ସେଦିନ ଲୀନା ଅଶୋକର କୋଟ୍‌ରେ ଗୋଟିଏ ଗୋଲାପ ଫୁଲ ଲଗାଇ ଦେଉ ଦେଉ ଗେହ୍ଲେଇ ହୋଇ ନଇତ କଣ୍ଠରେ ପଚାରିଥିଲା—

**ଆଚ୍ଛା, ଅଶୋକବାବୁ ! ପଚାରିବି, ସତ କହିବେ ?**

ଉଥିଣ କହ୍ତ—

ଆମ ମୀନା ଆପଣଙ୍କୁ କପରି ଲାଗେ ?

ଅଶୋକ ଖୁବ୍ ଗମ୍ଭୀର ହୋଇ ତା' ମନର କଥା କହି ଦେଉଥିଲ । —"ମୀନା ଗୀତ ଗାଏ ଅବଶ୍ୟ ସୁନ୍ଦର । — କନ୍ତୁ···ମାନେ—ଏଇ···

ଆଉ ଅଧିକ ଶୁଣିବା ଲଗି ଆଗ୍ରହ ନ ଥିଲ ମୀନାର । ତଥାପି ଅଶୋକ କହୁଥିଲ ଉତ୍ସୃତ 'କନ୍ତୁ' 'ମାନେ' 'ଅର୍ଥାତ୍' ଭଳ—ମୀନାଠା ଟିକଏ ଅଉ ସ୍ମାର୍ଟ ହେବା ଉଚିତ ଥିଲ ।

ମୀନା ଅଶୋକର ସ୍ପୃଷ୍ଟ ଆଡ଼କୁ ଆହୁରି ଝୁଙ୍କି ପଡ଼ିଲ । ଅଶୋକ ତାକୁ ନିଜ ଉପରକୁ ଆଉଜାଇ ନେଲ । ମୀନା ତା'ର ସ୍କନ୍ଧରେ ମୁହଁ ରଖି ଗୋଟାଏ କଡ଼କୁ ଚାହିଁ ଅଭିମାନ ସୁରରେ ପଚାରୁଥିଲ ଗୋଟାଏ ମନଗଢ଼ା ମିଥ୍ୟା ଖବର—

କନ୍ତୁ ମୁଁ ଶୁଣୁଛି—ଆପଣ କୁଆଡ଼େ ମୀନାକୁ ହି ବାହା ହେବାକୁ ଇଚ୍ଛା କରୁଛନ୍ତି ବୋଲି ଜାହା ହାତରେ ବାପାଙ୍କ ପାଖକୁ ଖବର ପଠାଇଥିଲେ ?

ହୁର ପାଗ୍ଲୀ ! ମୀନା ମୋର ଦୁସ୍ମନ୍‌କୁ ବାହା ହେଉ ।

ତା' ହେଲେ ଆପଣ ବାବାଙ୍କୁ ସେଇ କଥାଟା ଭଲଭଲି···

କୋଉ କଥାଟା ?

—ଯେ ଆପଣ ମୀନାକୁ ନୁହିଁ—ମୋତେ ହି······

ବାପାଙ୍କୁ ବୁଝାଇବା କ'ଣ ଦରକାର ?

ଆଉ ତେବେ ?

ତୁମେ ନିଜେ ଆଗ କଥାଟା କୁହ—

ମୀନା ଆଶାର ମଧୁର ନିଶାରେ ବିହ୍ୱଳ ହୋଇ ଆଖି ବୁଜି ଦେଇଥିଲା ।

ଅପେକ୍ଷା କର ମୀନା । ଏତେଶୀଘ୍ର ଉତ୍ତର କାହିଁକି ? ବି.ଏ.ଟା ପାସ୍ କରିଯାଏ ।

× × ×

ତାପରେ ମୀନା ତ ଅପେକ୍ଷା ହିଁ କରୁଛି । ଅଶୋକର କଥାକୁ ଅବିଶ୍ୱାସ କରି ହୁଏ ନା । ଅଶୋକ ତ କେବେ ଛଳନା କରିବାର ନୁହଁ । ଅଥଚ ଆଜି ମୀନାର କଥା ଶୁଣି ସେ ଆଶ୍ଚର୍ଯ୍ୟ ହେଲା । ମୀନା ମଧ୍ୟ କେବେ ଏମିତି କହେନା । ସେ ତ ଖୁବ୍ କମ୍ କଥା କହେ ; ତା' ପାଟିରୁ ପଦେ ଉତ୍ତର ଶୁଣିବା ଲାଗି ବାପା ମଧ୍ୟ ଟିକେ ପଡ଼ନ୍ତି । ଚାନୁ ଅପା ବି ଟିକେ ପଡ଼େ । ଅଶୋକ ସାଙ୍ଗେ ମଧ୍ୟ ସେ କେତେ-ବେଳେ ବା ମିଶେ ? ଅଶୋକ ଯେତେବେଳେ ଆସେ—ସେ ଛୁଟି ଚାଲିଯାଏ ତା'ର ସେଇ ଅନ୍ଧାରିଆ ଘର ଭିତରକୁ, ଯୋଉଟି ତା'ର ମାଆ ଆତ୍ମହତ୍ୟା କରି ମରିଥିଲା । ସେଇ ଘରେ ବସି ସେ ତାନପୁରା ଧରି କ'ଣ ଗୋଟାଏ ଆ ଆ ସୁର୍‌ରେ ବିଳାପ କରି ଉଠେ । ମୀନା ମଧ୍ୟ କେବେ ଅଶୋକକୁ ପାଖରୁ ଛାଡ଼ି ଦିଏ ନାହିଁ । ଯେତେ ସମୟ ତା' ପାଖରେ ରହେ, ସେତେ ସମୟ ସେ ତା' ପାଖେ ପାଖେ ଲାଗି ରହେ । ତା'ର ଆଖି, ତା'ର କାନ, ତା'ର କଥା, ତାର ମନ—ସବୁକୁ ସେ ନିଜ ଆଡ଼କୁ ଟାଣି ଆଣି ତାକୁ ବାନ୍ଧି ରଖେ । ସେ ମଧ୍ୟ ବାଧ୍ୟ ଶିଶୁଟିଏ ଭଳି ତା'ର

ପାଖ ଗ୍ଲଡ଼ି ଯାଏ ନା କୁଆଡ଼େ । ଦେଖେ ନା କାହାରି ଦୃଶ୍ୟ—ଶୁଣେ ନା କାହାରି ସ୍ୱର ।

ଅଥଚ ମୀନା ଆଜି ଏ କି କଥା କହୁଛି ? ସତରେ କ'ଣ ତା'ହେଲେ ଅଶୋକ ମୀନାକୁ ଭଲପାଏ ? ମୀନାକୁ ବିବାହ କରିବାକୁ ଚାହେଁ ? ତେବେ ଯେ କଥା ସେ ସ୍ପଷ୍ଟ କରି କହେ ନାହିଁ କାହିଁକି ?—କୋଉ ନିର୍ଜନ କ୍ଷଣରେ କୋଉ ଗୋପନ ସୂତ୍ରରେ ତା'ର ସଂପୂର୍ଣ୍ଣ ଅଲକ୍ଷ୍ୟରେ ଅଶୋକର ଲୀନା-ଲଗ୍ନ ମନକୁ ନିଜ ଆଡ଼କୁ ଟାଣିନେଇ ମୀନା ଆଜି ଏତେ ଦମ୍ଭରେ କହୁଛି ଯେ ଅଶୋକ ତାକୁ ବାହା ହେବ ନାହିଁ !!

କେମିତି କେଜାଣି, ଏତେକ ଭାବିଲାକ୍ଷଣି ଲୀନାକୁ ବଡ଼ ଅସହ୍ୟ ଲାଗିଲା । ତା'ର ନିଜ ଉପରେ ଦୟା ହେଲା । ଅଭିମାନ ମଧ୍ୟ ହେଲା । ସେ ସନ୍ଦେହ କରିବାକୁ ଆରମ୍ଭ କଲା—

ଅବଶ୍ୟ ମୀନା ଯେ ଅଶୋକ ଦାସ ସଙ୍ଗେ ଆଦୌ ମିଶେ ନାହିଁ—ଏ କଥା ନୁହେଁ ! କେବେକେବେ ସାନଭଉଣୀ ପ୍ରତି ଦୟାପରବଶ ହୋଇ ଲୀନା ଡକାଇ ପଠାଏ ମୀନାକୁ ।

ମୀନା ! ଶୁଣ୍ ଆଣ୍ ତ !......

ମୀନା ! ଅଶୋକବାବୁଙ୍କୁ ଆଜି ଗୋଟାଏ ଗୀତ ଶୁଣା ତ !...

ମୀନା ! ତୁ ଏଇ ଟିକିଏ ଅଶୋକବାବୁଙ୍କ ପାଖରେ ଥା... ମୁଁ ଏଇ ଆସୁଛି !...

ଅଶୋକ ସଙ୍ଗେ ଟିକିଏ ମିଶିବା ଲାଗି—ତା'ର ସାନ୍ନିଧ୍ୟ ଟିକିଏ ଉପଭୋଗ କରିବା ଲାଗି—ମୀନାକୁ ଏମିତି ବହୁତ ସୁଯୋଗ ଦିଏ ଲୀନା । ବଡ଼ ଭଉଣୀ ତ ସେ ! ମୀନାପାଇଁ କେବେକେବେ ତାକୁ

ବଢ଼ଳ ଲଗେ । ବରୁଣୀ ଅସୁନ୍ଦରୀଟିଏ ବୋଲି ସବୁବେଳେ ଆଡ଼େଇ ହୋଇ ରହେ । ଅନ୍ଧାରଘରେ ବସି ଆପଣା ଗ୍ଳାର ଗୀତ ଗାଏ । କେହି ତା' ସଙ୍ଗେ ମିଶନ୍ତି ନାହିଁ । ସେଥିଲାଗି ମନର ଉଦାରତାରେ ସେ ବହୁ ଥର ଭାବେ—ମୀନା ଯଦି ଖୁସି ହୁଏ ଅଶୋକର ସାନ୍ନିଧ ପାଇ—ତେବେ ସେ ପାଉ ନା ଅଶୋକକୁ କିଛି ସମୟ ! ଉ—ବଡ଼ ଭଉଣୀର ଐଶ୍ୱର୍ଯ୍ୟ ଉପରେ କ'ଣ ତା'ର ଏତେ ଟିକିଏ ବି ଦାବୀ ନାହିଁ ? ମିଶୁ ସେ ଅଶୋକ ସାଙ୍ଗରେ କିଛି ସମୟ—ମିଶୁ !!

କିନ୍ତୁ ଏହା ବୋଲି—ଏଇ ସୁଯୋଗରେ ତାକୁ ଦୂରକୁ ଠେଲିଦେଇ ଚିରଦିନଲାଗି ତା'ର ସ୍ଥାନକୁ ଅଧିକାର କରି ବସିବ ମୀନା ! ତା'ର ମାଳାକୁ ଛଡ଼ାଇ ଦେଇ ତା'ର ବାଞ୍ଛିତର ଗଳାରେ ଲମ୍ବାଇଦେବ ଆପଣା ପ୍ରଣୟର ଆଉ ଅଧିକାରର ବରଣମାଳା ! ତା' ହେଲେ ଏତେ ଦିନଧରି ଲୀନା କେବଳ ଆଉ ଜଣକ ଜୀବନରେ ଗୋଟିଏ ପ୍ରଣୟଲୀଳାର ବେଦୀ ହୋଇ ରହିଥିଲା ? ତାଆରି ଉପରେ ଚାଲିଥିଲା—ଦୁଇଟି ପ୍ରାଣର ଏତେ ଦେନାଦେନର ଲୀଳା ଏତେ ଦିନଧରି—ତା'ର ସଂପୂର୍ଣ୍ଣ ଅଜାଣତରେ କିମ୍ବା ତା'ର ପ୍ରାଣର ଦାବୀକୁ ଅସ୍ୱୀକାର କରି ?

ଉଃ ! ଲୀନାର ଗୁପ୍ତ କ୍ରୋଧ ଓ ଅଭିମାନରେ ଫାଟିପଡ଼ିଲା ।

ଉଃ ! ହେ ଭଗବାନ ! ତା' ହେଲେ ଅଶୋକ ତାକୁ ଏତେଦିନ ଧରି ଛଳନା କରୁଥିଲା କାହିଁକି ? ପ୍ରତାରଣା କରୁଥିଲା କାହିଁକି ? ଭଲ ପାଇବା ତ ବ୍ୟକ୍ତିଗତ ବ୍ୟାପାର । କିଏ ତାକୁ ବାଧ୍ୟ କରୁଥିଲା ତାକୁ ଭଲ ପାଇବାକୁ—ବାହା ହେବାକୁ ? ଉଃ— ଅଶୋକ ! ଅଶୋକ !

ମୀନା ପ୍ରାୟ ଚିତ୍କାର କରି ଉଠିଲା । ଘୃଣା, ବିରକ୍ତି, କ୍ରୋଧ, ହତାଶା ଆଉ ପରାଜୟଜନିତ ଅଭିସଂପାତର ଜ୍ୱାଳାରେ ତା'ର ମନ ବିକଳ ହୋଇ ଉଠିଲା । ବାତାହତ ଲତାଟିଏ ଭଳି ସେ ଯାଇ ବିଛଣା ଉପରେ ଅଜାଡ଼ି ପଡ଼ିଲା । ତା'ପରେ ଫୁଲିଫୁଲି କାନ୍ଦିବାକୁ ସେ ବ୍ୟସ୍ତ ହୋଇ ଉଠିଲା—

କିନ୍ତୁ ନାଃ— । କାନ୍ଦିବା ଲାଗି ତା'ର ସ୍ପୃହା ହେଲା ନାହିଁ । ଏତେ ସହଜରେ ସେ ପରାଜୟକୁ ମାନି ନେଇ ନୀରବ ବିଫଳତାରେ ବିଳାପ କରି ବସିବ ନାହିଁ । ଅଶୋକର ପ୍ରବଞ୍ଚନାକୁ ସେ କ୍ଷମା କରି ନ ପାରେ । ମଉନୁମୁହାଁ ମୀନାର ଛୋଟଲୋକ ଚାଲକିକୁ ସେ ସହ୍ୟ କରି ନ ପାରେ । ଏଇ ହୀନ ଚକ୍ରାନ୍ତର ସେ ପ୍ରତିଶୋଧ ନେବ ।

ମୀନା ଭାବିଲା—ସବା ବଡ଼ ଭଉଣୀ ରାନୁଅପା ଆଗରେ ସେ ମୀନା ନାମରେ ଫେରାଦ୍ ହେବ । ସେଇ ରାନୁଅପା ହାତରେ ହିଁ ଜବତ ହେବ ମୀନା । ରାନୁଅପାର ବେତ ପାହାର ପିଠିରେ ପଡ଼ିଲେ ଯାଇ ଡାହାଣୀ ଶିଖିବ—ଗୋପନରେ ବଡ଼ ଭଉଣୀର ପ୍ରେମିକ ସଙ୍ଗେ ଆଖି ମିଳାଇବାର ପ୍ରତିଫଳ କ'ଣ !

ଛାତ ଉପରେ ସିଡ଼ି ଘରକୁ ବଢ଼େଇକରି ରୁମ୍‌ଟିଏ । ବହୁ ଦିନର ପୁରୁଣା କୋଠା । ଚୂନ୍ ସୁର୍କି ଛାଡ଼ିଗଲାଣି । ଠାଏ ଠାଏ ଶିଉଳି । ବହୁ ଜାଗାରେ ଫାଟିଲାଣି କାନ୍ଥ । ଛୋଟ ଛୋଟ ବର ଆଉ ଅଶ୍ୱତ୍ଥ ଗଛ ମଧ୍ୟ ଉଠିଲାଣି କଣ ଫାଟମାନଙ୍କରେ ଠାଏ ଠାଏ । ବାପ ତ ସାମାନ୍ୟ ସବ୍‌ଡେପୁଟୀଟିଏ ଥିଲେ । ସମ୍ପତ୍ତି ଭିତରେ ଏତିକି—ଏଇ ପୁରୁଣା କୋଠାଟିକୁ ଅଳ୍ପ କେତୋଟି ଟଙ୍କା

ଦେଇ କରିଥିଲେ । କରିଲା ଘରଟି ଏ ଘର ମରାମତି ହୋଇ ନାହିଁ । ସେଥିଲାଗି ଟଇଲା ମଧ୍ୟ ଅଣି ନାହିଁ ।

ସେଇ ପୁରୁଣା ଫାଟା ଶିଉଳିଲଗା ଘର ଉପରେ ସିଢ଼ିଘରେ ରହନ୍ତି ସବା ବଡ଼ଭଉଣୀ ଝୁନୁଅପା । ସେମାନଙ୍କଠାରୁ ଢେର ବଡ଼ ହେବ ବୟସରେ । ବୟସ ଅପେକ୍ଷା ମଧ୍ୟ ଆହୁରି ବୁଢ଼ୀ ଦିଶିଲାଣି ସେ । ଖୁବ୍ ମୋଟୀ ହୋଇଗଲାଣି । ମୁଣ୍ଡର ବାଳସବୁ ଉପୁଡ଼ିଯାଇ ଚନ୍ଦା ହୋଇ ଆସିଲାଣି । ଆଜଯାଏ ବାହା ହେଲ ନାହିଁ । ପିଲାଦିନେ କୁଆଡ଼େ କାହାକୁ ଭଲ ପାଉଥିଲା । ସେ କଥା ଦେଇ-ଥିଲା ବାହା ହେବ ବୋଲି; କିନ୍ତୁ ସେ କଥା ରଖିଲା ନାହିଁ; ଆଉ ଠାଏ ବାହା ହୋଇଗଲା । ଆଉ ଦୁର୍ନାମ ହେଇଗଲା ସେ ଏ ଘରର ଝିଅମାନେ କେହି ନିଜର ବାପ ଆଉ ନୁହନ୍ତି । ସେମାନେ ଜାରଜାତକା । ଏଇଭଳି ଗୋଟାଏ ଦୁର୍ନାମର ଜନରବ ମଧ୍ୟ ସେମାନେ ପିଲାଦିନୁଁ ଶୁଣିଆସିଛନ୍ତି ।

ମାଆ ଥିଲା ଖୁବ୍ ସୁନ୍ଦରୀ ତା'ର ସୌନ୍ଦର୍ଯ୍ୟ ଆଗରେ ବାପା ଅତି ମ୍ଳାନ ଆଉ କ୍ଷୀଣ । ଖୁବ୍ ଦୁର୍ବଳ କ୍ଷୀଣକାୟ ଶ୍ୟାମଳ-ବର୍ଣ୍ଣ ଆଉ ଶାନ୍ତଶିଷ୍ଟ ମଣିଷଟିଏ ବାପା । ଦୈବବିଧାନରେ ସେମାନେ ବିବାହ କରିଥିଲେ । ସୁନ୍ଦରୀ ଗୁଣବତୀ ମାଆର ମନକୁ ସନ୍ତୁଷ୍ଟ କରିବା ଲାଗି ବାପା ଜୀବନଯାକ କମ୍ ସାଧ୍ୟସାଧନା କରି-ନାହାନ୍ତି । ତାଙ୍କର ଉପାର୍ଜିତ ସମସ୍ତ ଧନ-ସମ୍ପତ୍ତି ସେ ମାଆର ମନୋରଞ୍ଜନ ଲାଗି ଖର୍ଚ୍ଚ କରି ସର୍ବସ୍ୱାନ୍ତ ହୋଇଛନ୍ତି । ମାତ୍ର ମାଆର ମନକୁ ସେ ଶେଷ ପର୍ଯ୍ୟନ୍ତ ପାଇ ନାହାନ୍ତି । ମାଆ ତାଙ୍କୁ ଶେଷ ପର୍ଯ୍ୟନ୍ତ ଠକିଦେଇ ଗଲା ।

ଜନରବ ଯେତେ କି ମିଛ କିଏ ଜାଣେ ? ମାତ୍ର ଜନରବରେ ପ୍ରଚାରିତ ହୋଇଥିଲା—ମାଆ ସମ୍ପର୍କରେ ବହୁ କୁତ୍ସିତ, କଳଙ୍କିତ ଆଉ ମର୍ମନ୍ତୁଦ କାହାଣୀମାନ । ଶାନ୍ତଶିଷ୍ଟ ସାନ ମଣିଟିଏ ତା'ର ବାପା—ମାଆର ତେଜ ଆଗରେ ଖୁବ୍ ମଳିନ, ଖୁବ୍ ଦୟନୀୟ । ମାଆ ଜମା ଖାତିର କରୁ ନ ଥିଲା ବାପାଙ୍କର ବ୍ୟକ୍ତିତ୍ୱ । ବରଂ ବାପା ହିଁ ଜୀବନସାରା ଡରି ଥରି ହାତଯୋଡ଼ି ରହୁଥିଲେ ମାଆ ଆଗରେ । ମାଆ ଥିଲା ମହାମହିମାମୟୀ, ସୌନ୍ଦର୍ଯ୍ୟବତୀ, ଐଶ୍ୱର୍ଯ୍ୟ-ମୟୀ, ବ୍ୟକ୍ତିତ୍ୱସମ୍ପନ୍ନା ମହାରାଣୀ । ଆଉ ବାପା ??? ବାନ୍ଦର !!!

କ'ଣ ଖିଆଲ ହେଲା କେଜାଣି ଦିନେ ବାପାଙ୍କର ! ଗୋଟିଏ ଝିଅ ଆଉ ଦୁଇଟି ପୁଅ ହେବା ପରେ ବାପା ଦିନେ ଡାକ୍ତର-ଖାନାରେ ତାଙ୍କର ସୃଷ୍ଟି-କ୍ଷମତା ହରାଇ ଦେଇ ବସିଲେ ।

ଆଉ ଏହି ଘଟଣାର ଦୁଇ ବର୍ଷ ପରେ । ଗୋଟିଏ ଅବୈଧ ସନ୍ତାନର ଭ୍ରୂଣକୁ ଗର୍ଭରେ ଧାରଣ କରି ଦିନେ ସେଇ ଅନ୍ଧାରିଆ ଘର ଭିତରେ ଆତ୍ମହତ୍ୟା କଲା ମାଆ । ମାଆ ମଲା—! କିନ୍ତୁ ରଖି-ଦେଇଥିଲା ତା'ର ଗର୍ଭଜାତ ଗୋଟିଏ ହତଭାଗିନୀ କନ୍ୟାଙ୍କ ଜୀବନରେ ଏକ ଦାରୁଣ ଅଭିସମ୍ପାତର କଳଙ୍କ ଚିରଦିନ ଲାଗି ।

ମାଆକୃତ ସେହି ଅପକର୍ମର ପ୍ରଥମ ବଜ୍ରାଘାତ ସହ୍ୟ କଲା ତା'ର ପ୍ରଥମ ସନ୍ତାନ ରାନୁଅପା, ତା'ର ଜୀବନର ପହିଲ ବସନ୍ତରେ । ରାନୁଅପା ପ୍ରେମ କଲା—ପ୍ରେମ ପାଇଲା—ମାତ୍ର ବିବାହ କରିପାରିଲା ନାହିଁ । ସେହି ଶୋଚନୀୟ କୁତ୍ସିତ କଳଙ୍କିତ ଅପକର୍ମର ଛାୟା ରାହୁ ଭଳି ତା'ର ଜୀବନ-ଆକାଶରେ ନବୋଦିତ ଆଶା-ଚନ୍ଦ୍ରକୁ ଗ୍ରାସ କରି ପକାଇଲା ଚିରଦିନ ଲାଗି । ରାନୁଅପା ସେହିଦିନୁ କୁମାରୀ । ଗଣିତରେ ଏମ୍. ଏ. ପାଶ୍ କରି ସେ ଅଧ୍ୟାପିକାର

ଙ୍ଗବକା ଗ୍ରହଣ କଲା । ଆଉ ସେହି ହେଲା ଏ ଘରର କର୍ତ୍ତ୍ରୀ । ପ୍ରଥମେ ପ୍ରଥମେ ଭାରି କଡ଼ା ଥିଲା ରାନୁଅପା । ଗୋଟାଏ ବେତ ଧରି ସେ ପିଟି ପିଟି ଭାଇଭଉଣୀମାନଙ୍କୁ ଶାସନ କରେ । ତା'ର ଜଳନ୍ତା ଆଖିକୁ ଚାହିଁଲେ ଡର ମାଡ଼େ, ବାପା ମଧ୍ୟ ଶଙ୍କିଯାନ୍ତି । ଠାଇଁ ଠାଇଁ କରି କଥା କହେ । ତା ପାଟି ଶୁଣିଲେ ପିଳେହି ପାଣି ହୋଇଯାଏ । ବେଶି କଡ଼ା ସେ ଭଉଣୀମାନଙ୍କ ଉପରେ । ବାପାଙ୍କର ପେନ୍‌ସନ୍‌ରେ ସଂସାର ଚଳେ ନାହିଁ । ରାନୁଅପାର ଉପାର୍ଜନ ଉପରେ ହିଁ ନିର୍ଭର କରେ ଘର ।

କିନ୍ତୁ ରାନୁଅପା ମଧ୍ୟ ଦିନେ ନରମ ହୋଇଗଲା । ବାଧ୍ୟ ହୋଇ ନରମ ହୋଇଗଲା । ଭାଇଟିଏ ଥିଲା—ନବକିଶୋର । ଏକାଦଶ ଶ୍ରେଣୀରେ ପାଠ ପଢ଼ୁଥିଲା । କ୍ଲାସରେ ପ୍ରଥମ ହେଉଥିଲା । ଅଦ୍ଭୁତ ପ୍ରତିଭା ଥିଲା ତା'ର । ଇଂରାଜୀରେ ଅନର୍ଗଳ ବକ୍ତୃତା ଦେଇ ପାରୁଥିଲା । ଗଣିତରେ ଅସାଧ୍ୟ ଅଙ୍କମାନ କଷି ପାରୁଥିଲା । ଓଡ଼ିଆରେ ଏମିତି ସବୁ କ'ଣ ଲେଖୁଥିଲା—ଯାହାକୁ କି ବଡ଼ ମଣିଷମାନେ ମଧ୍ୟ ବୁଝିପାରୁ ନ ଥିଲେ । ଖୁବ୍ ଭଲ ପାଉଥିଲା ରାନୁଅପା ଏଇ ଭାଇଟିକୁ; କିନ୍ତୁ କ'ଣ ହେଲା ? ସେଇ ଏକାଦଶ ଶ୍ରେଣୀରେ-ଇ ତା'ର ଜୀବନସୂର୍ଯ୍ୟକୁ ଗ୍ରାସ କରିବାଲାଗି ଗୋଟିଏ ଅଶୁଭ ଗ୍ରହର ଛାୟାରୂପେ ଆସି ଦେଖାଦେଲା ତା'ର ହେଡ଼୍‌ମାଷ୍ଟରଙ୍କ ଝିଅ ମାନମୟୀ ସରକାର । ନବକିଶୋର ଜିଦ୍ ଧରିଲା, ସେ ମାନମୟୀକୁ ବିବାହ କରିବ !

ଚିନ୍ତିତ ଆଉ ବିବ୍ରତ ହୋଇ ପଡ଼ିଲା ରାନୁଅପା । ଭଉଣୀମାନଙ୍କ ପ୍ରତି ଖୁବ୍ କଡ଼ା ବ୍ୟବହାର କରୁଥିଲେ ବି ରାନୁଅପା ଏଇ ସାନଭାଇଟିକୁ ଭାରି ସ୍ନେହ କରୁଥିଲା । ଠିକ୍ ସ୍ନେହମୟୀ ମମତାମୟୀ

ମାଆର କୋମଳ କରୁଣାଶ୍ରୁ ଝରି ପଡୁଥିଲା ରାନୁଅପାର ଆଖିରୁ ନବକିଶୋର ଉପରେ । ଏକମାତ୍ର ଆଶାଭରସା ସାନଭାଇଟିର ଏଇ ଆକସ୍ମିକ ଦୁର୍ବିପାକରେ କାତର ହୋଇ ଦିନେ ଟିକିଏ କଡ଼ା କଥା ଶୁଣାଇ ଦେଇଥିଲା ରାନୁଅପା । କ'ଣ ସେ ସେଦିନ କହିଥିଲା କେଜାଣି ? ଦିନେ ଦେଖାଗଲା—ନବକିଶୋର ଆଉ ଘରକୁ ଫେରି ନାହିଁ । ତିନି ଦିନ କାଳ ନ ଖାଇ, ନ ପିଇ, ନ ଶୋଇ ରାନୁ-ଅପା ଉପରକୁ ଆଁ କରି ବସି ରହିଥିଲା । ତା'ପରେ—ତା'ପରେ ଦିନେ ନବକିଶୋରର ଶବ ଆବିଷ୍କୃତ ହେଲା ସମୁଦ୍ର କୂଳରୁ ।

ମାତ୍ର ଆଶ୍ଚର୍ଯ୍ୟ କଥା, ରାନୁଅପା କାନ୍ଦି ନ ଥିଲା । କାହାକୁ କିଛି କହି ନ ଥିଲା । ଯେମିତିଭଳି ନିର୍ବେଦ ହୋଇ ସେ ଯନ୍ତ୍ରବତ୍ ଉଠିଯାଇଥିଲା ସେଇ ଶିଉଳିଲଗା ଭଙ୍ଗା ସିଡ଼ି ଉପର ଦେଇ ଛାତ ଉପରେ ତା'ର ସେହି ସିଡ଼ିଘର ବଖରା ଭିତରକୁ ······

କିନ୍ତୁ ଆଉ ଦିନେ—ପୁଣି ଘଟିଲା ଗୋଟାଏ ଦୁର୍ଘଟଣା । ରାନୁଅପାର ତଳକୁ ଯେଉଁ ଭଉଣୀ— ମାନୁଅପା । ସେହି ଘାରି ଦେଇଗଲା ରାନୁଅପାର ଅନ୍ତରାକୁ ନିର୍ମମଭାବେ ପ୍ରହାର ଦେଇ । ରାନୁଅପା ସେହିଦିନରୁ ମଲା ସାପଟିଏ ଭଳି ପଡ଼ିରହିଲା । ଆଉ କେବେହେଲେ ବି ସେ ଫଣା ଟେକିପାରିଲା ନାହିଁ ।

ଘରର ଭଉଣୀଙ୍କ ଭିତରୁ ରାନୁଅପା ଆଉ ସେ ନିଜେ ଠିକ୍ ମାଆ ଭଳି ସୁନ୍ଦରୀ । ମୀନା ସୁନ୍ଦରୀ ନ ହେଲେ ମଧ୍ୟ କୁତ୍ସିତା ନୁହେ । ପୁଣି ତା'ର ଗୀତ ଗାଇବା ଗୁଣ ବି ଅଛି । ମାତ୍ର ରାନୁ-ଅପା ତଳ ଭଉଣୀ ମାନୁଅପା ଅବିକଳ ବାପାଙ୍କ ଚେହେରା ପାଇଥିଲା । ଖୁବ୍ ସାନ, ଦୁବଳ— ଆଉ ଦେହର ରଙ୍ଗଟା ବି

ଖୁବ୍ ଚାଉଁଶିଆ କଲା । ତା'ପାଇଁ ବାପା ବଡ଼ ଚିନ୍ତିତ ରହୁଥିଲେ । ସେ କପରି ବଡ଼ ହେବ—ଏହା ନେଇ ବାପା ଖୁବ୍ ବ୍ୟସ୍ତ ହେଉଥିଲେ । ମାନୁଅପା ମଧ୍ୟ ନିଜେ ମନ ମାରି ରହୁଥିଲା । ଆପଣାର ରୂପ ଆଉ ସ୍ୱାସ୍ଥ୍ୟ ଉପରେ ତା'ର ବଡ଼ ଲଘୁମନ୍ୟତା ଥିଲା ।

ଦିନେ କିନ୍ତୁ ବଡ଼ ଅଘଟଣ କାଣ୍ଡ ଘଟିଗଲା । ସେ ଦିନ କଲେଜରୁ ଫେରିଲା ନାହିଁ ମାନୁଅପା । ଗଣ୍ଡପାକ ବହୁତ ଖୋଜାଖୋଜି ହେଲା । ପରେ ପରେ ଦୁଇ ଦିନ କଟିଗଲା; ସପ୍ତାହେ ବି କଟିଗଲା । ମାତ୍ର ମାନୁଅପାର ଖୋଜ ମିଳିଲା ନାହିଁ । ତା'ପରେ ଦିନେ ଜଣାପଡ଼ିଲା ଯେ ମାନୁଅପା ଗୋଟିଏ ବସ୍-କଣ୍ଡକ୍ଟରକୁ ବିବାହ କରିଛି କୋର୍ଟରେ ।

ବାସ୍—! ସେଇଦିନୁ ମାନୁଅପାର ମଧ୍ୟ ଆସିଲା ଘୋର ପରିବର୍ତ୍ତନ । କାହାକୁ ଆଉ କିଛି କହେ ନାହିଁ । ଚୁପ୍‌ଚାପ୍ ଖଣ୍ଡିଏ ବାଡ଼ି ଧରି ଦିନ୍ରୁ ବାହାରକୁ ଯାଏ—ଆଉ ବାହାରୁ ଘର ଭିତରକୁ ପଶେ ନିଃଶବ୍ଦରେ । ତା'ପରେ ଅଳ୍ପ କଥାରେ ଘରର କାମଦାମ ବରାଦ କରିଦେଇ ସିଧା ଉଠିଯାଏ ସେଇ ଶିଉଳିଲଗା ସିଡ଼ିଦେଇ ଛାତ ଉପରର ତା'ର ସେହି କୋଠରୀଟିକୁ । ସେଇଠି ଗୋଟାଏ ଆରାମଚଉକି ଉପରେ ଶୋଇରହି ସେ ପଢ଼େ ନିଗମାନନ୍ଦ, ଶିବାନନ୍ଦ, ରାମକୃଷ୍ଣ ଆଉ ଶ୍ରୀଅରବିନ୍ଦଙ୍କ ସଂପର୍କରେ ବହିସବୁ ।

ମାନୁଅପାର ଏହି ନୀରବତା ଆଉ ନିର୍ଲିପ୍ତତାର ସୁଯୋଗ ନେଇ ଏବେ ଲୀନା ଆଉ ମୀନା ଘରେ-ବାହାରେ ବହୁତ ଆଡ୍ଡା ମାରନ୍ତି; ବିଶେଷତଃ ସେ ନିଜେ ଲୀନା ବନ୍ଧୁ, ପୁରୁଷବନ୍ଧୁଙ୍କୁ ଡାକିଆଣେ ଘରକୁ । ତା' ଦ୍ୱାରା ଆକର୍ଷିତ ହୋଇ ମଧ୍ୟ ବହୁ ବିବାହିତ-ଅବିବାହିତ ଯୁବକ ସେ ଘରକୁ ଆସନ୍ତି ପ୍ରତିଦିନ ସାନ୍ଧ୍ୟମିଳନ

ଉପଦ୍ରବେଗ ଲାଗି । ସେମାନଙ୍କର ପାଚିଭୁଗ୍ର, ହସଟାପର, ଗୁ' ଜଳଖିଆ, ପାନ ସିଗାରେଟ ତଳେ ମୀନାର କୋଠରୀ ଉଠେ ଆଉ ପଡ଼େ; ମାତ୍ର ଉପରେ ସେଇ ଶିଉଳିଲଗା, ରୁଣ୍ଡଖସା, ଫଟା କାନ୍ଥର ସିଡ଼ିଘରେ ଆରାମଚଉକୀ ଉପରେ ଶୋଇରହି ମୋଟା ଲେନ୍ସର ଚଷମା ଆଖିରେ ଦେଇ ରାନୁଅପା ନିଃଶବ୍ଦରେ ପଢ଼ି ଚାଲିଥାଏ ବିବେକାନନ୍ଦ, ନିଗମାନନ୍ଦ, ରାମକୃଷ୍ଣ ଅଉ ଶ୍ରୀ ଅରବିନ୍ଦ । ତଳର ଏହି ଲଘୁଚପଳଛଇଳ ରାସଲୀଳାର ନୃତ୍ୟ, ଗୀତ ବା ବାଦ୍ୟର ଉଚ୍ଛ୍ୱସିତ କୋଳାହଳରେ ତା'ର ଧ୍ୟାନ ଭାଙ୍ଗେନାହିଁ । ସେ କାନ ଡେରେ ନାହିଁ । ଚାଟି ଖୋଲେ ନାହିଁ, ଆଁଖ ଫେରାଏ ନାହିଁ ।

କିନ୍ତୁ—କିନ୍ତୁ—ଏଥର ବୋଲି ରାନୁଅପା ପ୍ରତି ଭୟ ତୁଟିନାହିଁ ସେମାନଙ୍କର । ବର୍ତ୍ତମାନ ମଧ୍ୟ ରାନୁଅପା ତାଙ୍କ ଆଗରେ ବାଡ଼ଧରି ଗମ୍ଭୀର ହୋଇ ଚାଲିଗଲେ, ମୀନାର ଛାତି ଧଡ଼ଫଡ଼ ହୁଏ । ଚିତ୍ତ ଶଙ୍କିଯାଏ ।

ମୀନା ସ୍ଥିର କଲା, ମୀନାର ଏହି ଅପକୀର୍ତ୍ତି ସମ୍ବନ୍ଧେ ସେ ରାନୁଅପାକୁ ଜଣାଇଦେବ । ତା'ପରେ—ତା'ପରେ ରାନୁଅପାର ବେତ-ପାହାର ଯେତେବେଳେ ବାଜିବ ମୀନାର ପିଠି ଉପରେ, ସେତେବେଳେ ଯାଇ ଡାହାଣୀ ବୁଝିବ...

ସେହି ଶିଉଳିଲଗା, ଇଟାଖସା, ଫଟା ସିଡ଼ି ଉପରେ ମୀନା ରାଗରେ ଡମ ଡମ ହୋଇ ଉପରକୁ ଉଠିଲା । ସବୁଦିନ ଭଳି ସେହି ରଙ୍ଗଛଡ଼ା ବେତଛିଣ୍ଡା ଆରାମଚୌକିଟି ଉପରେ ଶୋଇରହି ରାନୁ-ଅପା କ'ଣ ଗୋଟାଏ ଧର୍ମପୁସ୍ତକ ପଢ଼ୁଥିଲା । ତା'ର ବାଡ଼ଖଣ୍ଡିକ ଡେରା ହୋଇଥିଲା କାନ୍ଥ କଡ଼କୁ । ଆଉ ଠିକ୍ ଦୁଆର ମୁହଁରେ,

ଗାନୁଆପାର ଗ୍ରନ୍ଥମଧ୍ୟା ବଣ୍ଟନ୍ଟା ଶିଷ୍ୟାଟିଏ ଉଳ ଚାପ୍ରାଗ୍ରନ୍ ବସି ରହିଥିଲା ସେହି ରୁମାଳଆ ବାବୁଲା ପୁସି ବଲେଇଟା । ପାହାଚ ଉପି ଦୁଆର ମୁହଁରେ ପହଞ୍ଚି ଶଲ୍କାକ୍ଷଣି ଲୀନାର ଦେହ ହାତ ଅବଶ ହୋଇ ଉଠିଲା । ତା'ର ପାଦ ଚଳଲା ନାହିଁ । ପାଟି ମଧ୍ୟ ଫିଟିଲା ନାହିଁ । ତା'ର ଗୁଇ ପଡ଼ିବାରେ ଗାନୁଅପା ବହିରୁ ମୁହଁ ଟେକି ତା' ଆଡ଼କୁ ଗୁହିଁଲା ।

ମା ଲୋ !! ଲୀନା ସେ ଗୁହାଣି ଦେଖି ଏକବାରେ ଭୟ ପାଇଗଲା । ତା'ର ଏହି ଗୁହାଣିରୁ ସେହି କାନ୍ତିଭ୍ରମୟୀ କର୍ତ୍ତାଦୃଷ୍ଟି ଲିଭିଗଲାଣି; କିନ୍ତୁ ତା' ବଦଳରେ ସେ ଗୁହାଣି ଭିତରୁ ଏମିତି ଗୋଟାଏ ଉଦାସ ଅହଂକାରର ଆଲୋକ, ଅସ୍ତରାଗର ରକ୍ତପୀତାଭ ଗୈରିକ ଧାରାରେ ବିଚ୍ଛୁରି ପଡ଼ୁଛି ଯେ ତାକୁ ଦେଖିଲେ ହିଁ ମନଭିତରୁ ସବୁ ଅନୁଭୂତିର ଶାଶ୍ୱତତା ମରିଯାଉଛି । ଲୀନା ଇତସ୍ତତଃ ହେଲା । ତା'ର ଦୃଷ୍ଟି ତଳକୁ ନଇଁଆସିଲା । ସେ ସବୁ କଥା ଭୁଲିଗଲା । ମାତ୍ର ଗାନୁଅପା କିଛିକ୍ଷଣ ସେହିଭଳି ଗୁହିଁ ନିର୍ଲିପ୍ତ କଣ୍ଠରେ ପଗ୍ଭରିଲା—

କ'ଣ ରେ ଲୀନା ?

କିଛି ନାହିଁ; ଏଇ ପୁସିଟାକୁ ଖୋଜିବାକୁ ଆସିଥିଲି ।

ଲୀନାର ମୁହଁକୁ ଗୁହିଁ ପୁସିଟା ପ୍ରତିବାଦ କରି ଉଠିଲା—

ମିଅାଉଁ...

ତା'ପରେ ଗାନୁଅପା ପୁଣି ଧର୍ମଗ୍ରନ୍ଥରେ ଦୃଷ୍ଟି ନିବଦ୍ଧ କଲା । ଭୟରେ ତରସ୍ତ ହୋଇ ଲୀନା ଧିରେ ଧୀରେ ପାହାଚରେ ତଳକୁ

ଓହ୍ଲାଇ ଆସିଲା । ମାଆ ଲୋ ! କି ଗୃହାଣୀ ରାନୁଅପାର ! କି ନିଃସଙ୍ଗ, ନିର୍ଲିପ୍ତ, ଉଦାସ, ଅହଙ୍କାରଦୀପ୍ତ ସେ ଗୃହାଣି !! ଇସ୍— ତା' ଆଗରେ କି ଏସବୁ କଥା କହିହୁଏ ? ରାନୁଅପା ସେମାନଙ୍କର ଏହି ସମସ୍ୟାକୁ କିଛି ହେଲେ ଭଲ ବୁଝିପାରିବ ? ତା'ର କାନରେ କିଛି ଆଉ ପଶିବ ନାହିଁ—ତା'ର ଆଖିରେ କିଛି ମଧ୍ୟ ଆଉ ଦିଶିବ ନାହିଁ ।

ସବା ତଳ ପାହାଚରେ ପହଞ୍ଚିଲାକ୍ଷଣି ପୁଣି ତା'ର ମନ ପୂର୍ବ ଅବସ୍ଥାକୁ ଫେରିଗଲା । ଅଶୋକ ବାସନ୍ତ ଲଳନା ଅପେକ୍ଷା ମଉନମୂର୍ତ୍ତି ମୀନା ଉପରେ ତା'ର ସବୁ କ୍ରୋଧ ଅଜାଡ଼ି ହୋଇ ପଡ଼ିଲା । ମୀନା ଏଡ଼େ ସ୍ୱେଚ୍ଛାଚାରୀ ଲୋକ ! ଏଡ଼େ ସ୍ୱାର୍ଥପର ! ଭିତରେ ତା'ର ସମ୍ପୂର୍ଣ୍ଣ ଅଲକ୍ଷ୍ୟରେ ସେ କେତେବେଳେ ଅଶୋକକୁ ନିଜ ଆଡ଼କୁ ଟାଣିନେଇ ଯାଇଛି ! ମୀନା ତା'ର ସର୍ବନାଶ କରିଛି— ତା'ର ଖାଇବା ପତରରେ ଧୂଳି ପକାଇଦେଇଛି ଡାହାଣୀ । ତା'ର ଖାଇବାଥାଳି ତା'ର ଅଲକ୍ଷ୍ୟରେ ତା'ର ହାତରୁ ଛଡ଼ାଇ ନେଇ ନିଜେ ଖାଇବାକୁ ବସିଛି ପେଟନ୍ଦୀ ! ଓଃ ! ଏଇ ମୁହୂର୍ତ୍ତରେ ସେ ମୀନାକୁ ବଦାର ପକାଇବ,··ତା'ର ଆଖି ଫୁଟାଇ ଦେବ, ତା'ର ତଣ୍ଟି କଣା କରି ଦେବ । ଓଃ ! ଡାହାଣୀ କୁଆଡ଼େ ଗଲା ସେ ?

ହିଂସ୍ର ଆଉ ଉତ୍କ୍ଷିପ୍ତ ପଦକ୍ଷେପରେ ସେ ମୀନାର ଶୋଇବା କୋଠରୀ ଆଡ଼କୁ ମୁହାଁଇଗଲା···

ଏଣେ ଲୀନା ଅପାକୁ କଡ଼ା କଡ଼ା କଥା ଶୁଣାଇଦେଇ ମୀନା ତା'ର କୋଠରୀ ଭିତରକୁ ଚାଲି ଆସିଥିଲା । ମନ ଭିତରେ ସେ ବଡ଼ ଅସ୍ଥିରତା ଓ ଅସ୍ୱସ୍ତି ଅନୁଭବ କରୁଥିଲା । ତାକୁ କାନ୍ଦ

ଲାଗୁଥିଲେ ମଧ୍ୟ ସେ କାନ୍ଦି ପାରୁ ନ ଥିଲା । ଲୀନା ଅପାଙ୍କୁ କ'ଣ କହିବାକୁ ଯାଇ ସେ କ'ଣ କହି ପକାଇଲା ? ପୋଷ୍ଟମ୍ୟାନ୍ ହାତରୁ ଚିଠିଟି ପାଇ, ସେ କ'ଣ ଅନୁଭବ କଲା—ସେହି ଚିଠିଟିରେ ଲୀନା ଅପାଙ୍କୁ ଚିରଦିନଲାଗି ହତାଶ କରିଦେବାଲାଗି ଯେଉଁ ନିଦାରୁଣ ବାର୍ତ୍ତା ଅଶୋକ ଦାସ ପଠାଇଥିଲା, ସେହି ନିର୍ମମ ସତ୍ୟଟିକୁ ସେ ଲୀନାଅପା ଆଗରେ କିପରି ପ୍ରକାଶ କରିବ ଓଃ ! ଲୀନାଅପା ତାଙ୍କୁ କିପରି ଭାବେ ଗ୍ରହଣ କରି ଦୃଢ଼ତାର ସହିତ ସହ୍ୟ କରିବ—ଏହି ଭାବନାରେ ବ୍ୟଗ୍ର ହୋଇ ସେ କ'ଣ ସବୁ କିପରି କହିଗଲା ଲୀନାଅପାଙ୍କୁ ! ଏଇ ଲଫାପାଟି ଭିତରେ କି ନିଦାରୁଣ ନୈରାଶ୍ୟର ବାର୍ତ୍ତା ଲୁଚି ରହିଛି, ସେ କଥା ସେ ଲୀନାଅପାଙ୍କୁ କିପରି ବା ବୁଝାଇ ପାରିଥାନ୍ତା ? ସ୍ନେହ—ସହାନୁଭୂତି ଓ କରୁଣାରେ ଜର୍ଜରିତ ହୃଦୟ ତା'ର କେମିତି ବା ଏପରି ବିରୁଦ୍ଧ ପ୍ରତିକ୍ରିୟା ଦେଖାଇ ବସିଲା ? କେମିତି ସେ ଏତେ ରୂଢ଼ ହୋଇପଡ଼ିଲା ? ଏତେ ରୁକ୍ଷ ହୋଇପଡ଼ିଲା ? ଅଶୋକ ଦାସ ପ୍ରତି ତା'ର ମନର ଚିର ଅବଦମିତ ସଂଗୁପ୍ତ ଦୁର୍ବଳତା ଟିକକ ମଧ୍ୟ କିପରି ଭାବେ ଏତେ ପ୍ରଚଣ୍ଡ ରୂପରେ ଲୀନାଅପା ଆଗରେ ଆତ୍ମପ୍ରକାଶ କରିବସିଲା ? ଓଃ ! କାହିଁକି ସେ ହଠାତ୍ ଏମିତି ରାଗିଗଲା ? କାହିଁକି ସେ ନିଜ ଉପରୁ ଏମିତି ସଂଯମ ହରାଇ ବସିଲା ? ହେ ଭଗବାନ୍ !!

କେତେ ଭଲ ତା'ର ଏଇ ଲୀନାଅପାଟି ! କେତେ ସରଳ ! କେତେ ସହଜ-ବିଶ୍ୱାସୀ, କେତେ ଭାବପ୍ରବଣ ! ବିଶ୍ୱର ବୁଝି-ପାରେ ନା—ସେ ନିଜେ ପ୍ରତାରିତା । ବୁଦ୍ଧିହୀନା ନୁହଁ ଲୀନା ଅପା । କ୍ଲାସରେ ଭଲ ପଢ଼େ । ତର୍କ ସଭାରେ ଭଲ ବକ୍ତୃତା ଦିଏ । ଖୁବ୍ ଫିଟ୍‌ଫାଟ୍ ଆଉ ସ୍ମାର୍ଟ ରହେ ବେଶପୋଷାକରେ । ପଟାପଟ୍ କଥା

କରନ୍ତି । ହସେ-ଖେଳେ-ବୁଲେ-ଜବାବ୍ ଦିଏ । ହୋଟେଲ୍ ହୋଟେଲ ପ୍ରଜାପତିଟି ଭଳି ମାଲୁକା ମନରେ ଉଡ଼ିବୁଲେ । ଖୁବ୍ ସୁନ୍ଦରୀ ମଧ୍ୟ ଲୀନାଅପା । କିନ୍ତୁ—କିନ୍ତୁ—ଖୁବ୍ ବେଶି ଦମ୍ଭ ଆଉ ଖୁବ୍ ବେଶି ବିଶ୍ୱାସ ଲୀନାଅପାର ଆପଣା ଉପରେ । ଏତେ ବେଶି ସ୍ୱପ୍ନିଳ ଅଉ ଭାବପ୍ରବଣ ବ୍ୟକ୍ତିର ମନ ଯେ ବାସ୍ତବ ଯେତେ ଉଜ୍ଜ୍ୱଳ ହୋଇ ତା' ଆଖି ଆଗରେ ଠିଆହେଲେ ବି ଆଖିରେ ରଙ୍ଗୀନ୍ କାଚ ଲଗାଇ ସେ ତାକୁ ଦେଖନ୍ତି ।

ଅଶୋକ ଦାସ ଲାଗି ଲୀନାଅପା ଅନ୍ଧ ହୋଇ ଯାଇଛନ୍ତି । ସେଥିଲାଗି ସେ ସମ୍ପର୍କରେ ପ୍ରକୃତ ବାସ୍ତବ ସତ୍ୟଟାକୁ ମଧ୍ୟ ସେ ଆଖିବୁଜି ଦେଉଛନ୍ତି । ନହେଲେ ଅନ୍ୟପ୍ରକାର ଭାବୁଛନ୍ତି ।

ଅଥଚ ଏଇ ତା'ର ହାତ ପାଆନ୍ତାରେ ଟେବୁଲ ଉପରେ ପାଉଁଶରଙ୍ଗ ଖଣ୍ଡିଏ ଇନ୍ଭଲପ୍ ଭିତରେ ଏକ ନିଦାରୁଣ ସତ୍ୟ ଲୀନାଅପା ଆଗରେ ପ୍ରକାଶିତ ହେବାକୁ ଅପେକ୍ଷା କରି ରହିଛି । ଲୀନାଅପା କେମିତି ଏତେବଡ଼ ଜଳନ୍ତା ସତ୍ୟକୁ ହାତରେ ମୁଠାଇବ ?

ଉଃ ! ହେ ଭଗବାନ୍ !

ମୀନା ଅସ୍ଥିର ହୋଇ ଉଠୁଥିଲା । କେମିତି ଭଲା ଲୀନାଅପା ଏତେ ବଡ଼ ଧକ୍କାକୁ ସହ୍ୟ କରିପାରିବ ? ଖଣ୍ଡିଏ ସୁନାର ପାଞ୍ଚଆ ଭଳି ଝକ୍ ଝକ୍ ସିଧା ସରଳ କଅଁଳ ଲୀନାଅପା ତା'ର ଚିରଦିନ ଲାଗି ନଇଁପଡ଼ିବ ହତାଶାର ଧାସରେ । ନୈରାଶ୍ୟ-ଧୂଆଁ ଲାଗି ସେ କଳା ପଡ଼ିଯିବ । ମୁଖର ବୁଲ୍ ବୁଲ୍ଟି ଭଳି ଲୀନାଅପା

ତା'ର ସବୁଦିନଲାଗି ମୂକ ହୋଇଯିବ । ହାଲୁକା ପ୍ରଜାପତିଟି ତା'ର ଡେଣାଗୁଡ଼ାକ ଝଡ଼ାଇ ଭୂଇଁ ଉପରେ ଝଡ଼ିପଡ଼ିବ ! ତା'ପରେ ହୁଏ ତ ସବା ବଡ଼ଭଉଣୀ ରାନୁଅପା ଭଳି ସେ ଗୋଟାଏ ବେତଚୁଣ୍ଡା ରଙ୍ଗଛଡ଼ା ଆରାମଚଉକୀ ଉପରେ ନୀରବ ନିଷ୍ପନ୍ଦ ହୋଇ......ଓଃ ! ଅସହ୍ୟ—ଅସହ୍ୟ ! ତା'ର ଅତି ପ୍ରିୟ ଲୀନାଅପାର ଏତେବଡ଼ ଶୋଚନୀୟ ପରାଜୟ, ଏତେବଡ଼ ହୀନ ମୃତ୍ୟୁ ସେ ତା' ଆଖି ଆଗରେ କେବେ ଦେଖିପାରିବ ନାହିଁ !!

ପାଖରେ ଟେବୁଲ୍ ଉପରେ ପାଉଁଶରଙ୍ଗା ଖଣ୍ଡିଏ ରଡ଼ ନିଆଁ ଭଳି ସେହି ନିଦାରୁଣ ସତ୍ୟଟି ଅପେକ୍ଷା କରି ରହିଛି । ଏତେ ବଡ଼ ଜଳନ୍ତା ସତ୍ୟକୁ ସେ ତା'ର ଏତେ ପ୍ରିୟ ଲୀନାଅପା ମୁହଁରେ ଏମିତି ନିଷ୍ଠୁରଭାବରେ ମାଡ଼ିଦେଇ ପାରିବ ନାହିଁ । ସେ ତ ନିଜେ ଏ ସତ୍ୟର ନିଆଁ ଧାସକୁ ସହି ପାରୁନାହିଁ । ତା'ର ହ ତ ହାତ ପୋଡ଼ିଯାଉଛି, ମୁହଁ ପୋଡ଼ିଯାଉଛି, ମନ ପୋଡ଼ିଯାଉଛି ।

ଆଉ ଲୀନାଅପାକୁ ପୋଡ଼ି ପାଉଁଶ କରି ଦେବା ଲାଗି ଏତେବଡ଼ ଜଳନ୍ତା ସତ୍ୟ ଯେ ଏଠି ଏଇ ଟେବୁଲ୍ ଉପରେ ଲଫାପା ଭିତରେ ଅପେକ୍ଷା କରି ରହିଛି !

ତା'ହେଲେ କ'ଣ କରାଯିବ ?

କେମିତି ଲୀନାଅପାକୁ ରକ୍ଷାକରି ହେବ ?

ହେ ଭଗବାନ୍ !

ମୀନା ଉଠି ଠିଆହେଲା । ତା'ର ମନେ ହେଲା— ସେ ରାନୁଅପା ପାଖକୁ ଯାଇ ତା'ର ହାତରେ, ଏଇ ଲୀନାଅପାକୁ

ପୋଡ଼ିଦେବା ଲାଗି ଅପେକ୍ଷା କରିଥିବା ଏଇ ଜଳନ୍ତା ସତ୍ୟଟିକୁ ଧରାଇଦେଇ ଆସିବ । ରାନୁଅପା ଏଭଳି ସତ୍ୟଟିକୁ ଲୁଚାଇ ଧରିଥିବ! ହଁ-- ପାରିବ । ତା'ର କଷ୍ଟ ହେବ ନାହିଁ । ବୟାଳିଶ ବର୍ଷବୟସ୍କା ସେମାନଙ୍କର ମାତୃସମା ଏ ଘରର କର୍ତ୍ତ୍ରୀ । ରାନୁଅପା ନିଆଁକୁ ଡରେ ନାହିଁ । ଜଳନ୍ତା ସତ୍ୟର ତେଜକୁ ସେ ଭୟ କରେ ନା । ଏହାଠାରୁ ବଳି ଜଳନ୍ତା ସତ୍ୟର ତେଜରେ ପୋଡ଼ି ହୋଇ ସେ କୋଇଲା ପାଉଁଶ ହୋଇ ଯାଇଛି । ରାନୁଅପା ତା'ର ନିଆଁଟାକୁ ଥୋଇ ଦେଇ ଆସିଲେ—ସେ ସମ୍ଭାଳି ନେଇ ପାରିବ ।

ହଁ, ସେଇ ରାନୁଅପାକୁ-ଇ ସେ ଧରାଇ ଦେଇ ଆସିବ ଚିଠିଟା । ଚିଠିଟାକୁ ଆଣିବାକୁ ସେ ଟେବୁଲ୍ ପାଖକୁ ଗଲା । ଟେବୁଲ୍‌କୁ ଲାଗି ବହୁକାଳର ଗୋଟାଏ ବିରାଟ ଦର୍ପଣ । ତା'ର କୁତ୍ସିତ ଦର୍ଶନ ବାପା, ତା'ର ଅତି ସୁନ୍ଦରୀ ମାଆ ଲାଗି ଏ ଦର୍ପଣଟା କିଣି-ଥିଲେ । ସୁନ୍ଦରୀ ମାଆର ମନକୁ ପାଇବା ଲାଗି ବାପା ଏମିତି ବହୁ ବିଳାସ ପଦାର୍ଥମାନ କିଣୁଥିଲେ । ସେଥିପାଇଁ ଅବସର ନେଲା-ବେଳକୁ ବାପାଙ୍କ ହାତରେ ପଇସାଟିଏ ବି ନ ଥିଲା । ମାଆ ଆତ୍ମହତ୍ୟା କଲାପରେ ବାପା ଏ ଦର୍ପଣଟାକୁ ଦାଣ୍ଡଘରକୁ କାଢ଼ି ଦେଇଥିଲେ । ରାନୁଅପା ବି ଦର୍ପଣଟାକୁ ନେଲା ନାହିଁ । ସେ ଦର୍ପଣରେ କେବେ ମୁହଁ ଦେଖେ ନା । ମୁଣ୍ଡ କୁଣ୍ଡାଇଲାବେଳେ ବି ନୁହେଁ । ଲୀନାଅପା ହମ ହମ ହୋଇ ସରାଗରେ ଦର୍ପଣଟାକୁ ତା' ଘରକୁ ନେଇଗଲା । ମାତ୍ର ଦିନ ଦୁଇଟା ଯାଇଛି କି ନାହିଁ— ଦିନେ ରାଗିରେ ଖୁବ୍ ଅଗର୍ଚ୍ଛ ହୋଇ ଦର୍ପଣଟା ଆଣି ସେ ଏ ଘରେ ଥୋଇ ଦେଇଗଲା । ତା'ର ମୁହଁ ଉପରେ ସେଥା ପଡ଼ିଯାଇଥିଲା । ସେ ଥରୁଥିଲା । ତା'ର ମୁହଁରେ ଝାଳ ଜମି ଯାଇଥିଲା । ଦର୍ପଣଟାକୁ

ଏ ଘରେ ଥୋଇଦେଇ ଖୁବ୍ ଧୀରେ ଭୟଜଡ଼ିତ କଣ୍ଠରେ ସେ କହିଲି—

ମୀନା ! ଏ ଦର୍ପଣଟା ଏଇ ଘରେ ରହିବ- ତୁ ଜାଣୁ ? ମାଆ ଏଥିରେ ମୁହଁ ଦେଖୁଥିଲି ?

ହଁ, କ'ଣ ହେଲା ସେଇଠୁ ?

ଆଜ ଆଲୁଅଟା ଜାଳି ଦର୍ପଣ ଆଗରେ ଠିଆ ହୋଇ କ'ଣ ଦେଖିଲି ? ଇଃଃଃ —

କ'ଣ ?

ତୁ ବିଶ୍ୱାସ କର ଟାଣ ବୁନି—ଦର୍ପଣଟା ଭିତରେ ମୁଁ ମାଆଙ୍କୁ ଦେଖିଲି ମୀନା, ମାଆ ଠିଆ ହୋଇଥିଲି······ଉଃ······ ନା-ନା, ଏ ଦର୍ପଣଟା ଏଇ ମାଆ-ଘରେ ଥାଉ ।

ସେଇଦିନୁ ସେଇ ଅନ୍ଧାରିଆ ଘରଟାରେ-ଇ ଦର୍ପଣଟା ରହିଲା । ଲୀନା ଆଉ ମୀନା ଗୋଟିଏ ଘରେ ରହୁଥିଲେ । ମାତ୍ର ଅଶୋକ ଦାସ ସଙ୍ଗେ ଲୀନା ଅପାର ପ୍ରେମ ହେବା ଦିନୁ ମୀନା ଏଇ ଅନ୍ଧାରିଆ କୋଠରିଟିକୁ ଚାଲିଆସିଲା । ତା'ର ବିଛଣା, ଟେବୁଲ୍, ବହିପତ୍ର ଓ ସଙ୍ଗୀତ ବାଦ୍ୟଯନ୍ତ୍ର ଏଇ ଘରେ ।

ଟେବୁଲ୍ ପଛରେ ପୁରୁଣେ ଉଞ୍ଚର ଦର୍ପଣଟା ଖୁବ୍ ପୁରୁଣା ହୋଇଗଲାଣି—ପାରା ଛାଡ଼ିଗଲାଣି । ପ୍ରତିବିମ୍ବ ଠିକ୍ ଫୁଟେ ନାହିଁ । ମୀନା ମଧ୍ୟ କେବେ ଏ ଦର୍ପଣଟା ଆଗରେ ଠିଆ

ହୁଏ ନାହିଁ । ସାନ ଦର୍ପଣଟିରେ ସେ ମୁହଁ ଦେଖେ । ସେଇ ଦର୍ପଣଟାକୁ ଧରି ରଖିଛି ଟେବୁଲ୍‌ଟା । ଆଉ ସେଇ ଟେବୁଲ୍‌ଟା ଉପରେ ଲୀନାଅପା ଆଗରେ ପ୍ରକାଶିତ ହେବା ଲାଗି ଅପେକ୍ଷା କରୁଥିଲା ଗୋଟାଏ ନିଦାରୁଣ ସତ୍ୟ—ପାଉଁଶଭଙ୍କା ଗୋଟାଏ ଜଳନ୍ତା ରଡ଼ନିଆଁ ଭଳି ଅଶୋକ ଦାସର ଚିଠିଟା !

ମୀନା ସେଇଟିକୁ ନେଇ ସାନୁଅପାକୁ ଦେଇ ଦେବ । ସେଇ ସମାଜିବ ଏତେ ବଡ଼ ଜଳନ୍ତା ସତ୍ୟର ଉତ୍ତାପ ଆଉ ଜ୍ୱାଳା । ଗଦାଏ ପାଉଁଶ ଭଳି ତା'ର ସାନୁଅପା ଏଇ ରଡ଼ ଅଙ୍ଗାରଟାକୁ ଘୋଡ଼ାଇ ନେଇ ପାରିବ ।

ଟେବୁଲ୍ ପାଖରେ ପହଞ୍ଚି ସେ ଲଫାପାଟିକୁ ହାତରେ ଉଠାଇ ନେଇଛି—ତା'ର ଅଜାଣତରେ ସେ କାହିଁକି କେଜାଣି ଦର୍ପଣଟା ଆଡ଼କୁ ଗୁହିଁଦେଲା । ସେହି ସ୍ୱଳ୍ପାନ୍ଧକାର ଘର ଭିତରେ ଦାଗଛଡ଼ା ମଳିନ ଦର୍ପଣଟିରେ କାହାର ପ୍ରତିବିମ୍ବ ଦେଖି ସେ ଚିର୍‌ଚିରେଇ ଉଠିଲା—

ଏ କିଏ ?

କିଏ ଏ ଦର୍ପଣ ଭିତରେ ? ମାଆ ଲୋ !

ଏ ଯେ ମାଆ ! ଇଃ ! କି ହିଂସ୍ର ଦିଶୁଛି ମାଆର ମୁହଁଟା !

ମୀନା ଚିତ୍କାର କରି ଉଠିଲା—ମାଁ ଗୋ !!!

ମାଆ ସଙ୍ଗେ ସଙ୍ଗେ, ତାକୁ ଆଉ ବେଶି ଚିତ୍କାର କରିବାକୁ ନ ଦେଇ ପଛପଟୁ ତା'ର ଖୋସାଟାକୁ ଟାଣିଧରିଲା ଲୀନା ।

ଡାଆଣୀ ! ତୁ ମୋର ସର୍ବନାଶ କରିଛୁ—ମୁଁ—ମୁ—ମୁଁ ତୋତେ ମାରିଦେବି । ମର୍—ମର୍ ରାକ୍ଷସୀ······

ଅବିକଳ ମାଆ ଭଳି, ଫଟଫଟ ଲୀନାର ହିଂସ୍ରମୂର୍ତ୍ତିର ପ୍ରତିବିମ୍ବ ପଡ଼ୁଥିଲା ଦର୍ପଣଟା ଉପରେ । ମୀନା ଅନନ୍ୟୋପାୟ ହୋଇ ବିକଳରେ ଅଶୋକ ଦାସର ସେଇ ଲଫାପାଟା ଲୀନା ହାତକୁ ବଢ଼ାଇଦେଲା ।—

ନେ—ନେ—ହତଭାଗୀ ! ଏଇ ନିଆଁ ମୁଣ୍ଡାଟାକୁ ଧର୍—ନେ—ପୋଡ଼ି ଯା—ପୋଡ଼ି ପାଉଁଶ ହୋଇ ଯା—ଉଃ—ଛାଡ଼୍—ଛାଡ଼୍ ମତେ—ଉଃ—

ଉତ୍ତେଜନାରେ ଥରି ଥରି ମୀନାର ଖୋଷାଟାକୁ ଛାଡ଼ିଦେଇ ଲୀନା ଲଫାପାଟିକୁ ଧରିଲା । ଖୋଲି ଲଫାପାଟା ଭିତରୁ ଥରି ଥରି ହାତରେ ଖଣ୍ଡିଏ ଛୋଟ କାଗଜ ବାହାର କଲା । ତା'ର ସମଗ୍ର ଦେହ ଥରୁଥିଲା । ତା'ର ଆଖିରୁ—ନାକରୁ—ଆଉ ମୁହଁରୁ ଥପ୍‌ଥପ୍ ହୋଇ ଲୁହ ଆଉ ଝାଳ ଝରି ପଡ଼ୁଥିଲା । ସେ ଦିଶୁଥିଲା ଗୋଟାଏ ଆତତାୟୀ ଭଳି ! ସେହିଭଳି ଥରି ଥରି ସେ ଚିଠିଟାକୁ ପଢ଼ିଲା—

ଲୀନା !

ଦୁଃଖର ସହିତ ଜଣାଇବାକୁ ପଡ଼ୁଛି—ତୁମେ ମୋତେ ଭୁଲ ବୁଝିବ ନାହିଁ । ନାନାଦି ଅନିବାର୍ଯ୍ୟ କାରଣ ହେତୁ ଚିଫ୍ ଇଞ୍ଜିନିୟରଙ୍କ ଝିଅ ଅଞ୍ଜନା ସହିତ ମୋର ବିବାହ ସ୍ଥିର ହୋଇଗଲା । ଆସନ୍ତା ମାସର ଉଣେଇଶି ତାରିଖରେ ମୋର ବିବାହ । ମୁଁ ନିରୁପାୟ । ତୁମେ ନିଶ୍ଚୟ ଜାଣ ଯେ ଅଞ୍ଜନା ସହିତ ମୋର ପରିଚୟ ଆଗରୁ ସେମିତି କିଛି ଘନିଷ୍ଠ ନ ଥିଲା । ଅଞ୍ଜନା କିନ୍ତୁ କିଦ୍

ଧରିଲି ଯେ ମୋତେ ବିବାହ ନ କଲେ ଆତ୍ମହତ୍ୟା କରିବ । ଖୁବ୍ ଭାବପ୍ରବଣ ଝିଅଟା । ଏ ସ୍ଥଳରେ ମୋର ବା ଆଉ କର୍ତ୍ତବ୍ୟ କ'ଣ ? ଗୋଟିଏ ଝିଅର ଜୀବନ ରକ୍ଷା କରିବା ମୋର ଉଚିତ ନୁହେଁ କି ? ତୁମେ ତ ଜାଣ, ସବୁ କଥାରେ ମୁଁ ଖୁବ୍ ସିଧାସଳଖ ବ୍ୟବହାର କରେ ।

ହଁ, ଆଉ ଗୋଟିଏ କଥା । ମୁଁ ଶୁଣିଲି, କୌଣସି ଏକ ଅବାଞ୍ଛିତ କାରଣରୁ ତୁମର ମାଆ କୁଆଡ଼େ ଆତ୍ମହତ୍ୟା କରିଥିଲେ । ଅବଶ୍ୟ ଏସବୁ ଉଡ଼ାଖବର ଉପରେ ମୁଁ ବିଶ୍ୱାସ କରେ ନାହିଁ । ତା' ଛଡ଼ା ଏ ବ୍ୟାପାର ସଙ୍ଗେ ବା ସେ ସବୁ କଥାର ସମ୍ପର୍କ କ'ଣ ? ଛାଡ଼—

ମୋର ଆଶା ଓ ବିଶ୍ୱାସ, ତୁମେ ଏ ବ୍ୟାପାରକୁ ବେଶି ଗୁରୁତ୍ୱପୂର୍ଣ୍ଣ ବୋଲି ଭାବିବ ନାହିଁ । ମୁଁ ମଧ୍ୟ ଜାଣେ, ତୁମେ ଅଞ୍ଜନା ଭଳି ଏତେ ଭାବପ୍ରବଣ ଝିଅ ନୁହଁ । ଭଲରେ ଥାଅ ।

ଶୁଭାକାଙ୍କ୍ଷୀ—

ଅଶୋକ ଦାସ ।

ପ୍ରଥମରୁ ଥରେ ଥରେ ଲୀନା ଚିଠିଟି ଆମୂଳଚୂଳ ପଢ଼ିଗଲା । ମାତ୍ର କିଛି ବୁଝିପାରିଲା ନାହିଁ । ଯଦିଓ ଚିଠି ଭିତରେ ଘଟଣାଟିକୁ ସେ ଖୁବ୍ ଚଞ୍ଚଳ ଧରି ନେଇଥିଲା, ତଥାପି ଚିଠିଟାକୁ ପୁଣି ଥରେ ସେ ପଢ଼ିଲା । ଏଥର କିନ୍ତୁ ସେ ଖୁବ୍ ବେଶି ଥରିବାକୁ ଲାଗିଲା । ଆଉ ଚିଠିଟାର ବିନ୍ଦୁ ବିସର୍ଗ ବି ସେ ବୁଝିପାରିଲା ନାହିଁ । ତା'ର ଆଖିକୁ କିଛି ଆଉ କିଛି ଦିଶିଲା ନାହିଁ । ତା'ର ମସ୍ତିଷ୍କର ବୋଧ-ଶକ୍ତି ଲୋପ ପାଇଗଲା । ସେ କେବଳ ଥରେ ଥରେ ଚିଠିଟାକୁ ଆଖି

ଆଗରେ ଧରିଥାଏ ଓ କ୍ରମେ ତଳକୁ ଝୁଙ୍କି ପଡ଼ୁଥାଏ ! ଭୂମିକମ୍ପରେ ଗୋଟାଏ ଟଳମଟଳ ଖମ୍ବ ଭଳି କମ୍ପା ଝଡ଼ ବତାଶରେ ଗୋଟାଏ ଦୋଦୁଲ୍ୟମାନ ତାଳଗଛ ଭଳି ସେ କେବଳ ଦୋହଲୁଥାଏ ।

ଲୀନାଅପାର ଏପରି ଅବସ୍ଥା ଦେଖି ମୀନା ଆଉ ସମ୍ଭାଳି ପାରିଲା ନାହିଁ । ଲୀନାଅପାକୁ ନିଜର ଛାତିରେ ଭିଡ଼ି ଧରି ସେ ବାଳପି.ଉଠିଲା—

ଅ· · ·...ପା !!!!!!

ମାତ୍ର ଲୀନା କେବଳ ଥରୁଥାଏ । ତା'ର ପାଟିରୁ କଣ୍ଠୁ ବାହାରୁ ନ ଥାଏ । କ୍ରମେ କ୍ରମେ ତା'ର ଦାନ୍ତ ମଧ୍ୟ ଠକ୍ ଠକ୍ ହୋଇ, କମ୍ପିଲା ।

ମୀନା ତାକୁ କୁଣ୍ଢାଇ ଧରି ନିରୁପାୟ ଭାବରେ ଡାକ-ପକାଇଲା—

ରାନୁଅପା ! ରାନୁଅପା ! ଦଉଡ଼ି ଆସ ।

କିନ୍ତୁ ସେମାନେ ଜାଣି ନ ଥିଲେ, ରାନୁଅପା କେତେବେଳୁ ତା'ର ଛାତ ଉପରୁ ଘରୁ ଓହ୍ଲାଇଆସି ସେଠି ଠିଆ ହୋଇ ଯାଇଛି । ପାଉଁଶ-ଗଦାଟିଏ ଭଳି ରାନୁଅପା ସେଠି ଠିଆ ହୋଇଥାଏ । ହାତରେ ଧରିଥାଏ ତା' ସେଇ ବେତବାଡ଼ି ଖଣ୍ଡିକ ।

ରାନୁଅପା ସେଇ ବେତଖଣ୍ଡିକରେ ଟେବୁଲ୍ ଉପରେ ଜୋର୍‌ରେ ଗୋଟାଏ ପାହାର ପକାଇ ପାଟିକରି ଉଠିଲା—

ଲୀନା !!

ରାନୁଅପାର ଘେଞ୍ଚି ଭୟସଞ୍ଚାରୀ ଡାକରେ ଲୀନାର ଠକ୍ ଠକ୍ ହୋଇ କମ୍ପିବା ବନ୍ଦ ହୋଇଗଲା । ଡାହାଣୀ ଲାଗିଥିବା ସ୍ତ୍ରୀଲୋକ ଗୁଣିଆର ବେତମାଡ଼ରେ ଠକ୍ କରି ସ୍ତବ୍ଧ ହୋଇଯିବା ଭଳି ଲୀନା ଠକ୍ କରି ଅବାକ୍ ହୋଇ ଠିଆ ହୋଇଗଲା । ଆଉ ସମ୍ମୋହିତ ଆଖିରେ ସମ୍ମତି ଫୁଟାଇ ସେ ରାନୁଅପାର ମୁହଁକୁ ଚାହିଁରହିଲା । ତା'ପରେ କିଛି ସମୟ କଠମଠ କରି ଲୀନାଅପାର ଆଖିକୁ ଚାହିଁରହିଲେ ରାନୁଅପା । ସେଇଠୁ ବେଶ୍ ଧୀର ଗମ୍ଭୀର ଭାବେ ଲୀନା ହାତରୁ ଚିଠିଟା ଛୋଡ଼ାଇ ନେଇ ପଢ଼ିଲେ— । ପଢ଼ୁ ପଢ଼ୁ ତା'ର ମୁହଁରେ ଗୋଟାଏ ଅସ୍ୱାଭାବିକ ଆତଙ୍କର ଧୂଆଁ କୁହୁଳି ଉଠିଲା, ମାତ୍ର ତାହା ବେଶିକ୍ଷଣ ରହିଲା ନାହିଁ । ଶୀତଦିନେ ଶୁଖିଲା ପବନର ଛୋଟ ଭଉଁରୀଟିଏ ପାଉଁଶଗଦା ଉପରେ ପଡ଼ି ତାକୁ ସର୍ସରେଇ ଭଉଁରେଇ ନେଇ ଉଡ଼େଇଦେଲା ପରେ, ତା' ଭିତରର ଜକ ଜକ ନିଆଁ ଫୁଟିଉଠିଲା ପରି ରାନୁଅପାର ପାଉଁଶିଆ ମୁହଁରେ ପୁଣି ଗୋଟାଏ ଦୃଢ଼ତା ଧପ୍ କରି ଜଳି ଉଠିଲା । ସେ ଲୀନା ଆଡ଼କୁ ଚାହିଁ ଡାକିଲା—

ଶୁଣ୍ !

ମନ୍ତ୍ରମୁଗ୍ଧ ପରି ଚାଲି ହୋଇଗଲା ଲୀନା ତା ପାଖକୁ । ଲୀନାକୁ କୋଳରେ ଧରି ରାନୁଅପା ଖୁବ୍ ଗମ୍ଭୀର କର୍ତ୍ତୃତ୍ୱପୂର୍ଣ୍ଣ ଗଳାରେ କହିଲା—

ଶୁଣ୍, ହାଁକିପଡ଼ୁଛୁ କାହିଁକି ? ତୁ-ତୁ-ଆତ୍ମହତ୍ୟା କରି-ପାରିବୁ ?

ଲୀନା ଅବୋଧ ବୟସ୍କରେ ନବାକ୍ ହୋଇ ରାନୁଅପାର ମୁହଁକୁ ଚାହିଁରହିଲା । ତାର ମୁହଁରେ ଆଉ ରକ୍ତ ନ ଥିଲା । ସେ ନିତାନ୍ତ ଅସହାୟ ଆଉ ମାନ ପରିଶିତ ଦିଶୁଥିଲା । ମାତ୍ର ମୀନା ଚିତ୍କାର କରି ଉଠିଲା—

ଅପା !!!

ଚୁପ୍ କର । ବଫଳ ପ୍ରେମର ଦୁଇଟି ମାତ୍ର ବାଟ । ହୁଏ ତ ଆତ୍ମରକ୍ଷା; ନ ହେଲେ ଆତ୍ମହତ୍ୟା । ତୁମେମାନେ—ତୁମେମାନେ ...ଓଃ !

ରାନୁଅପାର ଭିତରେ ଶ୍ୱାସବାୟୁ ରୁଦ୍ଧ ହୋଇଗଲା ଭଳି ସେ ବୋଧକଲା । ସମାଳି ନ ପାରି ସେ ଲୀନାକୁ କୋଳରେ ଧରି ଖଟ ଉପରେ ବସିପଡ଼ିଲା ଗଦାଏ ପାଉଁଶ ଭଳି । ଲୀନା ଯେଇମିତି ନିଶ୍ଚଳ ନୀରବ-ହୋଇ ବଡ଼ ଭଉଣୀର କୋଳରେ ବସିଥାଏ ।

କିନ୍ତୁ ଏ ପରିସ୍ଥିତିରେ ଆକସ୍ମିକଭାବରେ ମୀନା ଖୁବ୍ ସାହସୀ ଆଉ ମୁଖର ହୋଇ ଉଠିଲା । କ୍ରୋଧରେ ହୁଁ ହୁଁ ହୋଇ ସେ ସମ୍ପି-ଲାଗିଲା ଗଳା ଫଟାଇ—

ଅଶୋକ ଦାସକୁ ତୁମେ କ୍ଷମା କରିପାରିବ ରାନୁଅପା ? ଆମେ ଗରିବ ବୋଲି—ଆମେ ଭାଗ୍ୟହୀନା ବୋଲି ସେ ଆମକୁ ନେଇ ଏତେ ନୃଶଂସତାର ଖେଳ ଖେଳିଗଲା ? ଆଉ...ଆଉ...ଏଇ ଅଞ୍ଜନାଟା ! ଡାହାଣୀ ! ସେ କଣ ଜାଣି ନ—ଲୀନାଅପାକୁ ବାହା ହେବ ବୋଲି ଅଶୋକ ଦାସ ଶେଷ ଜବାବ୍ ଦେଇ ସାରିଥିଲା ? ତାର ବାପ ବଡ଼-ଲୋକ, ପ୍ରତିପତ୍ତିଶାଳୀ । ଯୌତୁକର ଲୋଭ ଦେଖାଇ ସେମାନେ

ଅଶୋକ ଦାସଙ୍କୁ ଆମ ହାତରୁ ଛଡ଼ାଇନେଲେ । ଆମର ମାଆ ନାମରେ ସେ ପୁରୁଣା ମିଥ୍ୟା ଜନରବ ଉଠାଇ ସେମାନେ ଅଶୋକ ଦାସର ମନକୁ ଘୃଣି ଦେଲେ । ତା' ନ ହେଲେ ଲୀନାଅପାଠାରୁ କ'ଣ ସେ ଡାହାଣୀଟା ବେଶି ସୁନ୍ଦରୀ ? ବେଶି ଗୁଣବତୀ ? ସେ କ'ଣ ଲୀନାଅପାଠାରୁ ଅଶୋକ ଦାସଙ୍କୁ ବେଶି ଭଲପାଇ ଜାଣେ ? ଓଃ ! ସେ ପୁଣି କୁଆଡ଼େ ଏତେ ଧାର୍ମିକପରାୟଣ ? ତା'ର ଆଗ ଯେଉଁ ପ୍ରେମ ବୋଲି କଣ୍ଠି ଅଛି ? ମୁଁ ତାକୁ ଜାଣେ ନା ! ପ୍ରଶାନ୍ତ ଚୌଧୁରୀ ଡାକ୍ତର ପାଖେ ସେଇ ନା ଦୁଇ ବର୍ଷ ଧରି ଲଗିଥିଲା ? ଖାଲି ସେଇ-ଜଣକ ନୁହଁ ; କାହା ପାଖେ ସେ ଭଲ ଅଡ଼୍ଡା ମାରେନାହିଁ ? ତା'ର ତିନି ମାସର ଗର୍ଭ ହୋଇ ନାହିଁ ? ପ୍ରଶାନ୍ତ ଚୌଧୁରୀ ତାକୁ ଠକିଦେଲା ପରେ ଅଶୋକ ଦାସ ଭଳି ମେଣ୍ଢାଟାକୁ ଆତ୍ମହତ୍ୟା କରିବାର ମିଛ ଧମକ ଦେଖାଇ; ଆମ ନାମରେ କଳଙ୍କ ରଟାଇ... ଓଃ ! ହେ ଭଗବାନ୍ !

ଦୁଃଖ, କ୍ରୋଧ, ଅପମାନର ଆଘାତ ଉଚ୍ଛ୍ୱାସରେ ଫାଟିପଡ଼ି ମୀନା ଗର୍ଜି ଉଠୁଥାଏ—

ହେ ଭଗବାନ୍ ! ମୁଁ କହିଦେଉଛି—ତା' ଜୀବନ କେବେ ସୁଖମୟ ହେବ ନାହିଁ । ଆମର ତତଲା ଲୁହରେ ତା'ର ସୁଖ-ସ୍ୱପ୍ନ ଜଳିପୋଡ଼ି ପାଉଁଶ ହୋଇଯିବ । ଅଶୋକର କେବେ ଭଲ ଗତି ହେବ ନାହିଁ !

କିନ୍ତୁ ମୀନାକୁ ଆଉ କହିବାକୁ ନ ଦେଇ ବନ୍ଧୁଅପା କୋଳରୁ ଲୀନା ଉଠିଆସି ତା'ର ମୁହଁକୁ ଚାପିଧରିଲା—

ଇସ୍ ! ପୋଡ଼ାମୁହାଁ ଏମିତି କହ ନା ଲୋ !!

ଅପା !

ମୀନା ଆବେଗରେ ଲୀନାକୁ କୁଣ୍ଢାଇ ପକାଇଲା ।

ଇଃ ଅପା ! ତୁ କେଡ଼େ ଭଲ ଲେ !

ଦୁଇ ଭଉଣୀ ଦୁହିଁଙ୍କୁ କୁଣ୍ଢାଇ ଧରି ସାଉଁ ସାଉଁ କରି କାନ୍ଦି ଲାଗିଲେ ।

ଟିକିଏ ଦୂରରେ ଗୋଟାଏ ଧୂସର ପାଉଁଶଗଦା ଭଳି ଖଟ ଉପରେ ବସି ରାନୁଅପା ଶ୍ୱାସକଷ୍ଟ ଅନୁଭବ କରୁଥିଲା । ସେ ଶ୍ୱାସ ନେବାରେ ଖବ୍ କଷ୍ଟ ଅନୁଭବ କରୁଥିଲା । ଛାତିକୁ ଚିପିଧରି ପାଟି ମେଲାକରି ସେ କେବଳ ଧକାଉଥିଲା । ସେ ଭଲ ଟିକିଏ କାନ୍ଦି ପାରନ୍ତା ଏଇ ମୂହୂର୍ତ୍ତରେ ! ଏଇ ମୂହୂର୍ତ୍ତରେ ତା'ର କାନ୍ଦିବା ହିଁ ଉଚିତ ଯେ ! ଓଃ ! ସେ ତ ନିଃଶ୍ୱାସ ମଧ୍ୟ ନେଇପାରୁ ନାହିଁ । କାନ୍ଦିବ ବା ଆଉ କେମିତି ? ସେ ତ ଭଲକରି ଜାଣିସାରିଛି ଯେ—

ଏ ଘରେ ଚିରଦିନ ସମସ୍ତେ ଏମିତି ପ୍ରେମ କରିବେ; ଆଉ— ସେହି ପ୍ରେମଲାଗି ସବୁ ଲୁହ ଆଖିରୁ ଶୁଖି ନ ଯିବା ପର୍ଯ୍ୟନ୍ତ ଜୀବନଯାକ କେବଳ ଲୁହ ଢାଳି ଚାଲିବେ ।

ସେମାନେ କେହି ଜାଣନ୍ତି ନାହିଁ ଯେ ଯେ ମାନଙ୍କର ସେହି ହତଭାଗ୍ୟ, କ୍ଷୀଣକାୟ, ଦୁର୍ବଳ, କୁତ୍ସିତ ରୂପ, ନିରୁପାୟ, ଅସହାୟ ବୃଦ୍ଧ ବାପଟି ଛୋଟ ଖୁଣ୍ଟିଟିଏ ଭଳି ଦୁଆରମୁହଁରେ ଛିଡ଼ା ହୋଇ ରହିଛି ।

ସାନୁଅପା ମେଲ ଝରକା ଉପରେ ନୀହାରୀକା ଗୁଡିକୁ ଗୁରିଧରି ପାଟି ମେଲାଇ ଶ୍ୱାସକଷ୍ଟରେ ଗଁ ଗଁ ହେଉଥାଏ ।

ମୀନାର ଚିର ଶତ୍ରୁ, ଲୀନାର ପୋଷା, ସାନୁଅପାର ଅନୁଗତ ଶିଷ୍ୟା, ଆଉ ସେ ଘରର ବୁଢ଼ୀ ପିଉସୀମାନଙ୍କ ଭଳି ସେମାନଙ୍କର ସବୁ କଥାରେ ଅନଧିକାର ଚର୍ଚ୍ଚା ଓ ଅଯାଚିତ ମନ୍ତବ୍ୟ ପ୍ରକାଶ କରିବାରେ ଅଭ୍ୟସ୍ତ ସେହି ମୋଟା ରୁମାଲିଆ କାବୁଲି ବିଲେଇଟା କୋଉଠି ଥିଲା, ଖୁବ୍ ଧୀରେ ଆସି ସେଠି ଠିଆହେଲା ଏବଂ କେତେ ସମୟ ସେମାନଙ୍କ ଆଡ଼କୁ ଦାର୍ଶନିକର ଦୁର୍ବୋଧ ଦୃଷ୍ଟିରେ ଗ୍ରହିଁ ବୋବେଇ ଉଠିଲା—ମିଆଉଁ !

ତା'ର ଏଇ ଡାକରେ ସାନୁଅପା ମୁହଁ ଟେକି ଗ୍ରହିଁଲା । ବିଲେଇ ଆଉ ସେ ଦୁହେଁ ଯାକ କିଛିକ୍ଷଣ ପରସ୍ପରର ମୁହଁକୁ ଗ୍ରହିଁ ରହିଲେ । ତା'ପରେ ସାନୁଅପା ସହଜଭାବେ ଗୋଟିଏ ଦୀର୍ଘଶ୍ୱାସ ନେଇ ଉଠିଲା -- ।

ଗ୍ରଲ୍—ଗ୍ରଲ୍ ଲୀନା ! ଉପରକୁ ଗ୍ରଲ୍ । ହେ ମୀନା ! ଆ-ଆ, ମୋ ସାଙ୍ଗରେ ଉପରକୁ । କାହିଁକି ସେମିତି କାନ୍ଦୁଚ ରେ ? ଭାଙ୍ଗି ପଡ଼ୁଛ କାହିଁକି ଏଇକିରେ ? ଆସ, ଆସ ମୋ ସଙ୍ଗରେ— ଉପରକୁ ଆସ । ତୁମେମାନେ ତ କାହାକୁ ଠକିନାହଁ ? ତୁମେମାନେ ତ ପ୍ରେମକୁ ନେଇ ଖେଳିନାହଁ ? ଆଉ ତେବେ ଶୋଚନା କାହିଁକି ? ଆସ, ଆସ ସୁନା ଝିଅଟିମାନଙ୍କ ଭଳି ଉପରକୁ ଉଠିଆସ । ପ୍ରେମ ତ ଏମିତି ଦୁର୍ବଳ କରେନାହିଁ ! ନିରାଶ କରେ ନାହିଁ !! ଆସ ଲୋ ଆସ; ଉପରକୁ ଆସ ।

ବାନୁଅପା ଦୁଇ ଭଉଣୀଙ୍କୁ ଦୁଇ ପଟେ ଧରି ସିଡ଼ି ଆଡ଼କୁ ମୁହାଁଇଗଲା । ଆଉ ସେମାନଙ୍କ ପଛେ ପଛେ ତଳକୁ ମୁହଁ ପୋତି ନନ୍ଦା ଓ ବୁଢ଼ା ବାପଟି ମଧ୍ୟ ସିଡ଼ି ଉପରକୁ ଉଠିଲା ।

ସିଡ଼ି ଉପର ଘର ଦୁଆରମୁହଁରେ ପହଞ୍ଚିଲାବେଳକୁ ସେମାନେ ଦେଖିଲେ ପୁସି କେତେବେଳୁ ଆଗରୁ ଆସି ସେଠି ଜାକିଜୁକି ହୋଇ ବସିଛି । ସେମାନେ ସମସ୍ତଙ୍କୁ ଏକାବେଳେ ଦେଖି ପୁସି ସେମାନଙ୍କ ଆଡ଼କୁ କଟମଟ କରି ଚାହିଁ ପୁଣି ଥରେ ବୋବେଇ ଉଠିଲା—

ମିଆଉଁ !!!

## ଶୃଣ୍ୱନ୍ତୁ ସର୍ବେ, ଅମୃତସ୍ୟ ପୁତ୍ରାଃ

ଜୀବନରେ ବହୁ ବନ୍ଧୁଙ୍କ ସମ୍ପର୍କରେ ଆସିଛି । ସାହିତ୍ୟ, ରାଜନୀତି, ସାମାଜିକ ଓ ପାରିବାରିକ ବ୍ୟାପାରରେ ମୋର ବନ୍ଧୁ ସଂଖ୍ୟା ଅଗଣିତ । ଆଉ ଆପଣ ମାନନ୍ତୁ ବା ନ ମାନନ୍ତୁ; ମୋର ଧାରଣା—ବନ୍ଧୁମାନେ ନ ଥିଲେ ଏ ପୃଥିବୀରେ ଆମେ ମିନିଟିଏ ବି ଚଳିପାରିବା ନାହିଁ । ପିଲାପିଲି ନେଇ ଭିଡ଼ ଟ୍ରେନରେ ଉଠିବା ବେଳେ;—ବଡ଼ ଝିଅର ହଠାତ୍ ବାହାଘର ଜୁଟିଗଲେ—ସଡ଼ୁର ପୁଅପାଇଁ ଚାକିରିରେ ସୁପାରିସ କରିବାକୁ ଚେଷ୍ଟା କଲେ—ସଞ୍ଜବେଳେ ଗପ କରିବାକୁ ଇଚ୍ଛାଥିଲେ—ଔଷଧ ଦୋକାନରୁ ବାକିରେ ଔଷଧ କିଣିବାକୁ ହେଲେ—ମାସ ଶେଷରେ ହଠାତ୍ ୫. ଗୁଣ୍ଠ ଜମି କିଣିବାକୁ ମିଳିଗଲେ—କମ୍ଭା କିଛି ନ ହେଲେ ତାସ, ପଶା ଖେଳିବାକୁ ସଉକ ହେଲେ ଏବଂ ଆଉ ଏହିଭଳି ହଜାର ହଜାର ସମସ୍ୟାରେ ବନ୍ଧୁମାନଙ୍କର ଆବଶ୍ୟକତା ଯେ ଖୁବ୍ ବେଶି; ଏ କଥା ଅନୁଭବୀ ମାନେ-ଇ ଜାଣିଥିବେ । ଆଉ ଏ କଥା କହିବାରେ ବି ମୋର ଲଜ୍ଜା ନାହିଁ ଯେ, ପିଲାଦିନୁଁ ଆଜି ପର୍ଯ୍ୟନ୍ତ, ଏଇ ବନ୍ଧୁମାନଙ୍କ ନିକଟରେ ହିଁ ମୁଁ ଅସମ୍ଭବ ଭାବେ ଋଣୀ ହୋଇ ରହିଛି । କାହାର ବହି ପଢ଼ିବାକୁ ମାଗି ଆଣି ଫେରାଇ ନାହିଁ । ଇଣ୍ଟରଭିଉକୁ ଗଲାବେଳେ କାହାର ନେକ୍‌ଟାଇ ଧାର ଆଣି ପିନ୍ଧି ଘରେ ରଖିଦେଇଛି । କାହାଠାରୁ ଟଙ୍କା ଧାର ଆଣି ଶୁଝିନାହିଁ ବା ଶୁଝିପାରି ନାହିଁ । କାହାର ସାଇକେଲ ଆଣି

ଅଭିନୟ କରନ୍ତି । ମୋର ବନ୍ଧୁମାନଙ୍କ ମଧ୍ୟ ସେହିଭଳି ମୋର ଋଣୀ ହୋଇ ରହିଛନ୍ତି । କେଉଁ ବନ୍ଧୁଙ୍କ ସ୍ତ୍ରୀ ମୋର ଗ୍ରାମଫୋନ୍‌ଟିକୁ ମୋଡ଼ ବିଗାଡ଼ ଦେଇଛନ୍ତି । କେଉଁ ବନ୍ଧୁଙ୍କ ପକେଟରୁ ମୋର ଫାଉଣ୍ଟେନ୍‌ପେନ୍‌ଟି ଅକସ୍ମାତ୍ ହଜି ଯାଇଛି । କେଉଁ ବନ୍ଧୁଙ୍କର ପୁଅ ମୋ ଛତାଟିକୁ ନେଇ ତାଙ୍କ ଘରେ ରଖିଛି ଏବଂ ଏକ ବନ୍ଧୁ ମୋର ଘଡ଼ିକୁ ଭୁଲରେ ପକେଟରେ ପକାଇ ଦେଇଛନ୍ତି । ଏହିଭଳି ଅସଂଖ୍ୟ ଉଦାହରଣ ଦେବି, ଯେଉଁଥିରେ କି ଆମେ ବନ୍ଧୁ ବନ୍ଧୁ ମଧ୍ୟରେ ପରସ୍ପରକୁ ଠକି ବଞ୍ଚିଛୁ ବୋଲି ଆପଣ ନିର୍ଦ୍ଦ୍ୱନ୍ଦ୍ୱରେ ଜାଣିପାରିବେ । ପ୍ରକୃତରେ ଯଦି ଆମେ ଯଦି ଏ ଦୁନିଆରେ କାହାକୁ ଠକୁ, ତେବେ ସେହି ପୁଣ୍ୟାତ୍ମା ପ୍ରାତଃ-ସ୍ମରଣୀୟ ନିରୀହ ଭଦ୍ରବ୍ୟକ୍ତିଗୁଡ଼ିକ ହେଉଛନ୍ତି ଆମର ବନ୍ଧୁ ଏବଂ ଆମେ ଯଦି କାହା ପାଖରୁ ଠକିହେଉ, ତେବେ ସେହି ପାପାତ୍ମା ଦୁର୍ବୃତ୍ତମାନେ ହେଉଛନ୍ତି ଆମର ବନ୍ଧୁ ।

କିନ୍ତୁ ମୁଁ ଆପଣଙ୍କୁ ଗୋଟିଏ କଥା କହିବି—ଯେଉଁଥିରେ କି ଏହି ଭୂମିକାଟିକୁ ଗମ୍ଭୀର ଭାବେ ପରୀକ୍ଷା କରି ଦେଖିବାର ସୁଯୋଗ ଲାଭ କରିବେ ।

ମୁଁ ମୋର ବନ୍ଧୁ ବାନାମ୍ବର ମେହେରର କଥା କହୁଛି । ବାନାମ୍ବର ମୋର କୈଶୋର ବୟସରୁ ସାଥୀ । ମାଟ୍ରିକଠାରୁ କଲେଜ ଯାଏ ଏକାସଙ୍ଗେ ପଢ଼ିଥିଲୁ । ବାନାମ୍ବର ଲୋକଟି ବଡ଼ ଧୀରସ୍ଥିର; କିନ୍ତୁ "ମାଛିକି ମର" ବୋଲି କହନ୍ତି ନାହିଁ । ଯେଉଁ ଧୀର-ଚିହ୍ନ, ବାନାମ୍ବର ସେ ଗୋଷ୍ଠୀର ନୁହେଁ । ଲୋକଟାର ବୁଦ୍ଧି ଅଛି, ବଳ ଅଛି ଓ ବିଦ୍ୟା ବି ଅଛି । ସେ କେତେକଙ୍କୁ ନିନ୍ଦା କରେ ଓ କେତେକଙ୍କୁ ପ୍ରଶଂସା କରେ । ତା' ଭିତରରେ

ଯାହା ଖରାପ ବୋଲି ସେ ମନେକରେ, ତା' ବିରୁଦ୍ଧରେ ନିର୍ମମ ଗିତିମତ ସଂଗ୍ରାମ ବି କରେ । ବନ୍ଧୁ ଭାବରେ ମଧ୍ୟ ବାନାମ୍ବର ଖୁବ୍ ବିଶ୍ୱାସୀ ଓ ନିର୍ଭରଯୋଗ୍ୟ । ମୁଁ ଯେତେଥର ରୋଗରେ ପଡ଼ିଛି, ବାନାମ୍ବର ରାତି ରାତି ଅନିଦ୍ରା ହୋଇ, ଅକୁଣ୍ଠିତ ଚିତ୍ତରେ ମୋର ସେବା କରି ଆସିଛି । ଟଙ୍କା ଅଭାବରେ ପଡ଼ି ମୁଁ ଯେତେଥର ବାନାମ୍ବର ଆଗେ ହାତ ପାତିଛି, ମୋର ଅଞ୍ଜଳିରେ ସ୍ମିତହାସ ସେ ଢାଳିଦେବେ ଷ୍ଟିଣ୍ଟ କରି ନାହାଁନ୍ତି ଏବଂ ମୁଁ ବିନମ୍ରର ସହିତ ଘୋଷଣା କରୁଛି କି ବନ୍ଧୁ ବାନାମ୍ବର ମେଦହରର ଏହି ଅକୁଣ୍ଠ ମ ସ୍ନେହ ଓ ସେବାର ମୁଁ ପ୍ରତିଦାନ ଦେଇନାହିଁ କିମ୍ବା ତା'ର ଆର୍ଥିକ ଋଣଦାନର ପରିଶୋଧ ମୁଁ ଅଦ୍ୟାବଧି ବି କରି ପାରିନାହିଁ । ଆମ ସମସ୍ତଙ୍କ ମଧ୍ୟରେ ସେ ଥିଲା ବେଶି ନିର୍ଦ୍ଧନ । ମାତ୍ର ସେ ଏତେ ମିତବ୍ୟୟୀ ଓ ଶୃଙ୍ଖଳିତ ଯେ ସେ ଆମକୁ ମଝେ ମଝେ ଟଙ୍କା ଧାର ଦେଉଥିଲା ଓ ସିନେମା ଦେଖାଇ ନେଉଥିଲା । କେବେ ବା ହୋଟେଲରେ ଟିକେ ଜଳଖିଆ ଖୁଆଉଥିଲା । ମାତ୍ର ବନ୍ଧୁ ବାନାମ୍ବରକୁ ହୋଟେଲରେ ଟିକେ କପେ ଖୁଆଇଛି—ଏଭଳି ସୁଦିନ ମୋର ମନେ ପଡ଼ୁନାହିଁ । ସେ କାହାକୁ ଠକିନାହିଁ; ଧାର ଉଧାର କରିନାହିଁ; ଟିଉସନ୍ କରି ପାଠ ପଢ଼ିଛି ଏବଂ ମୋ ଭଳି ଠକ ବନ୍ଧୁମାନଙ୍କୁ ସାହାଯ୍ୟ ଦେଇ ଆଉ ତାକୁ ଫେରିପାଇ ନାହିଁ ।

ବାନାମ୍ବର ଥିଲା ଚରିତ୍ରବାନ୍—ବ୍ରହ୍ମଚାରୀ ଓ ଗଭୀର ଆଶାବାଦୀ । ସଂସାରକୁ ସେ ଶ୍ରଦ୍ଧା କରୁଥିଲା । ମନୁଷ୍ୟକୁ ସେ ବିଶ୍ୱାସ କରୁଥିଲା ଓ ଭବିଷ୍ୟତ ଉପରେ ତା'ର ଗଭୀର ଆସ୍ଥା ଥିଲା । ସେ ରାମକୃଷ୍ଣ ଓ ବିବେକାନନ୍ଦଙ୍କ ଗ୍ରନ୍ଥସବୁ ପଢ଼ୁଥିଲା । ଦାଢ଼ିର ଖୁଥିଲା ଓ ସକାଳୁ ସ୍ନାନ ସାରି ଗୀତା ଓ ଋକ୍‌ବେଦର ପଙ୍‌କ୍ତିମାନ ବଡ଼ପାଟିରେ ଆବୃତ୍ତି କରୁଥିଲା । ସେ ଥିଲା ତା' ମାତରେ ଅଟଳ,

ଧୂର୍ତ୍ତ । ଅମ ଭଳି ଦୁଃଖପ୍ରଧାନ, ଆଶାହୀନ, କର୍ମଉଦ୍ଦ୍ୟମହୀନ, ସିନିକ୍ (cynic) ମାନଙ୍କୁ ସେ ଜଳଦଗମ୍ଭୀର ବାଣୀରେ ବାର୍ତ୍ତା ଶୁଣାଉଥିଲା—

"ଶୃଣ୍ୱନ୍ତୁ ସର୍ବେ, ଅମୃତସ୍ୟ ପୁତ୍ରାଃ—"ଜାଗ୍ରତ ବିବେକାନନ୍ଦ କଣ କହୁଛନ୍ତି ? ହେ ଅମୃତର ସନ୍ତାନଗଣ ! ତୁମେମାନେ ଶୁଣ । ତୁମେମାନେ ଅମୃତର ଅଧିକାରୀ । ତୁମେମାନେ ଈଶ୍ୱରଙ୍କ ସନ୍ତାନ । ତୁମେମାନେ ପବିତ୍ର—ପୂର୍ଣ୍ଣ । ତୁମେମାନେ ଏହି ମର୍ତ୍ତ୍ୟଭୂମିର ଦେବତା । ହେ ଅମୃତର ପୁତ୍ରଗଣ ! ତୁମେମାନେ ସିଂହ ସ୍ୱରୂପ ହୋଇ ମେଷବତ୍ ଆଚରଣ କରୁଅଛ କାହିଁକି ? ଏହି ଭ୍ରମ ଜ୍ଞାନକୁ ଦୂର କର । ନିରାଶ ହୁଅନାହିଁ, ତୁମେମାନେ ଏହି ଅମୃତମୟ ସଂସାରର ଅଧିକାରୀ । ଏହି ମଧୁମୟ ସଂସାର ତୁମର, ତୁମେମାନେ ଏ ସଂସାରରୁ ଅମୃତ ଲୁଣ୍ଠନ କରି ଭୋଗକର ।

ବିବେକାନନ୍ଦଙ୍କ ବାଣୀ ଆବୃତ୍ତି କରୁ କରୁ ବାନାମ୍ବରର ସୁନ୍ଦର ମୁଖମଣ୍ଡଳଟି ଅପୂର୍ବ ଜ୍ୟୋତିଶ୍ରୀ ଧାରଣ କରେ । ତାର ଶରୀରରେ ବେପଥୁ ଜାତ ହୁଏ ଓ ଲୋମରାଶି ଊର୍ଦ୍ଧ୍ୱିତ ହୁଏ । ଆଖିରେ ତାର ଗଭୀର ବିଶ୍ୱାସ ଓ ନିଷ୍ଠାର ଜ୍ୟୋତି ଦେଖି ଆମେମାନେ ସ୍ତମ୍ଭିତ ହେଉଁ ଏବଂ ପରେ ବାନାମ୍ବର ସମ୍ବନ୍ଧେ ଭଣ୍ଡ କଥା ପକାଇ ତା ପଛରେ ତାକୁ ଥଟ୍ଟା କରୁ । ମୋର ଆଜି ବି ମନେ ପଡ଼ୁଛି—ବାନାମ୍ବର କଣ୍ଠରେ ବିବେକାନନ୍ଦଙ୍କର ବାଣୀ । ବାନାମ୍ବର ଦରିଦ୍ର ସତ୍ୟ; ମାତ୍ର ନିଜକୁ ସେ ଖୁବ୍ ବଡ଼ ମନେ କରୁଥିଲା । ଆଉ ବଡ଼ ପାଟିରେ ଘୋଷଣା କରୁଥିଲା, "ମୁଁ ଶ୍ଳେଚ୍ଛ ନୁହଁ—ହେ ଅର୍ଜୁନ ! ମୋତେ ବୁଝ—ମୋତେ ଜାଣ । ଜ୍ୟୋତି-ମନ୍ତମାନଙ୍କ ମଧ୍ୟରେ ମୁଁ ଅଂଶୁମାନ ସୂର୍ଯ୍ୟ—ଜଳାଶୟମାନଙ୍କ ମଧ୍ୟରେ ମୁଁ ଅସୀମ ସାଗର—ବୃକ୍ଷମାନଙ୍କ ମଧ୍ୟରେ ମୁଁ ଅଶ୍ୱତ୍‌ଥ—।

ଛନ୍ଦମାନଙ୍କ ମଧ୍ୟରେ ମୁଁ ମେରୁ । ଘୋଟକମାନଙ୍କ ମଧ୍ୟରେ ମୁଁ ଉଚ୍ଚୈଃଶ୍ରବା; ସର୍ପମାନଙ୍କ ମଧ୍ୟରେ ମୁଁ ବାସୁକୀ । କାଳମାନଙ୍କ ମଧ୍ୟରେ ମୁଁ ଯମ— । ପଶୁମାନଙ୍କ ମଧ୍ୟରେ ମୁଁ ସିଂହ— । ଦେବତାମାନଙ୍କ ମଧ୍ୟରେ ମୁଁ ଇନ୍ଦ୍ର— । ମନୁଷ୍ୟମାନଙ୍କ ମଧ୍ୟରେ ମୁଁ ନରପତି— । ମୁଁ ତେଜସ୍ୱୀଙ୍କର ତେଜ—ବଳବାନମାନଙ୍କର ବଳ – ଜ୍ଞାନୀଙ୍କର ଜ୍ଞାନ ଓ ଠକମାନଙ୍କର ଜୁଆଖେଳ ।"

ଅର୍ଜୁନ ଶ୍ରୀକୃଷ୍ଣଙ୍କ ବିଭୂତିକୁ ବୁଝିପାରନ୍ତୁ ବା ନ ପାରନ୍ତୁ, ବାନାମ୍ବର କିନ୍ତୁ ନିଜର ବିଭୂତି ବୁଝିସାରିଥିଲା । ତେଣୁ ସେ ଆମ୍ଭମାନଙ୍କ ଆଗେ ଚିତ୍କାର କରୁଥିଲା—

"ସେଇ ଭୂମାଙ୍କୁ ଇଚ୍ଛା କର । ସେଇ ବୃହତ୍ତମଙ୍କୁ ଲାଭ କର । ସଂକୀର୍ଣ୍ଣତାର ଜମ୍ବାଳ ମଧ୍ୟରେ ସମାଧିସ୍ଥ ହୁଅନାହିଁ ।" ଜାଣିଚ ବିବେକାନନ୍ଦ କଣ କହିଛନ୍ତି ?

"ମୁଁ ଯଦି ଶିକାର କରିବି ତ ତେବେ ମୃଗକୁ ଛାଡ଼ି ମୃଗେନ୍ଦ୍ର ସିଂହକୁ-ହିଁ ଶିକାର କରିବି । ମୁଁ ଯଦି ଚୋରି କରିବି ତ ରାଜାର ରାଜସ୍ୱଖାନା ଲୁଟି କରିବି ।"

ବାନାମ୍ବର ଯାହା କହୁ ପଛେ, ମୁଁ କିନ୍ତୁ ତାକୁ ସବୁ ପ୍ରକାରେ ଠକୁଥିଲି । ସକାଳୁ ଉଠି ବାନାମ୍ବର ଆଲମିରା ଉପରୁ ମିଶ୍ରି ପାଣି ପିଇଦେଇ ସେଥିରେ ଖାଲି ପାଣି ପୂର୍ଣ୍ଣ କରି ରଖିଦିଏ । ବାନାମ୍ବର ଆସି ସେଇ ଖାଲି ପାଣିଟିକେ ମୁହଁରେ ମାରିଦେଇ ପୁଣି ରଖିଦିଏ । ଆଉ ସ୍ମିତ ହସି କହେ—"ମୋତେ ଏତେ ବୋକା ବୋଲି ଭାବ ନାହିଁ ବନ୍ଧୁ !" କେବେ ବା ବାନାମ୍ବର କଲେଜକୁ ଯିବାବେଳେ କାମିଜ ପିନ୍ଧୁ ପିନ୍ଧୁ ଦେଖେ, ତାର ହାତବୋତାମ ଦୁଇଟି କିଏ ନେଇ ଯାଇଛି । ଅଗତ୍ୟା

ଜାଣିନିକି, କୁତ୍ରଣୀ ଟେଁୟନ୍ତ ଜାଙ୍କ ସେ କଲେଜ ଯାଏ ଓ ଛୁଟୀ ହେଲେ ଫେରି ନେଇ ମୋ ପାଖକୁ ଆସି ଟିକେ ହସି କରି କହେ—

"ମୋତେ ଏତେ ବୋକା ବୋଲି ଭାବନାହିଁ ବନ୍ଧୁ !"

ବାନାମ୍ବର ଦାନ୍ତଘଷା ପେଷ୍ଟ—ତାର ମୁଣ୍ଡଲଗା ତେଲ—ଦେହଲଗା ସାବୁନ ଓ କୋତାଦିଆ ରଙ୍ଗ ସବୁ ଆମେ କୌଶଳରେ ଉପଭୋଗ କରୁଁ । ସେ କ୍ଷତିଗ୍ରସ୍ତ ହୁଏ । ମାତ୍ର ବାନାମ୍ବର ଆମର ଏତେ ଭଲ ବନ୍ଧୁ, ଆଉ ଦେବପ୍ରକୃତିର ଲୋକ ଯେ ସେ କେବଳ ଏତିକି ହସିକରି କହେ—"ମୋତେ ଏତେ ବୋକା ବୋଲି ଭାବନାହିଁ ବନ୍ଧୁ !"

ବାନାମ୍ବର ବୋକା ନୁହେଁ, ଆମେ ଜାଣୁ । ମାତ୍ର ବାନାମ୍ବରକୁ ଯେ ଆମେ ଠକୁଥିଲୁ—ସେଥିରେ ଆଉ ସନ୍ଦେହ ରହିଲା କେଉଁଠି ?

କିନ୍ତୁ ଆମେ ବାନାମ୍ବର ଉପରେ ଖୁବ୍ ବିଶ୍ୱାସ ରଖିଥିଲୁ ଏବଂ ଆମକୁ ବିଶ୍ଳେଷଣ କରି, ଆମେ ଠିକ୍ ଭାବେ ବୁଝିପାରିଥିଲୁ ଯେ ଆମଠାରୁ ବଳି ଠକ, ଜୁଆଚୋର ଓ କଦର୍ଯ୍ୟ ପ୍ରକୃତିର ବ୍ୟକ୍ତି ନାହିଁ, ନ ଥିବେ ଏବଂ ଭବିଷ୍ୟତରେ ଛୁଆପିଲା ହେଲେ—ସଂସାରୀ ହେଲେ, ଜ୍ଞାନ ବଢ଼ିଲେ—ଆମେ ଯେତେ ବେଶି ଅର୍ଥ ଉପାର୍ଜନ କରୁ ପଛେ, ଆମର ଶ୍ରେଷ୍ଠଲୋକ ଅଳ୍ପ କଥାରେ ବି ପ୍ରକାଶ ପାଇବ । ବାନାମ୍ବର କିନ୍ତୁ ଆମକୁ ଆଶ୍ୱାସନା ଦେଉଥିଲା—

"ଆଦୌ ନିରାଶ ହୁଅନାହିଁ, ଏ ଯୁଗ ଓଲଟି ଯିବ । ସତ୍ୟଯୁଗ ଆସିଲାଣି । ଭାରତ ତାର ପୂର୍ବଗୌରବ ପୁଣି ଫେରି ପାଇବ । "ଜାଣିଛ ଅରବିନ୍ଦ କଣ କହିଛନ୍ତି ?" ଏ ଦେଶକୁ ପୁଣି ପୁରାଣଯୁଗର ମୁନିଋଷିମାନେ ଆସି ଲୋକମାନଙ୍କୁ ଅଭୟବାଣୀ ଶୁଣାଇବେ—"

"ଶୃଣ୍ୱନ୍ତୁ ସର୍ବେ ଅମୃତସ୍ୟ ପୁତ୍ରାଃ— × × × "ଯତ୍ର ଭୂମା-ତତ୍ର ସୁଖଂ । ନାଲ୍ପେ ସୁଖମସ୍ତି ।" × × ତୁମେମାନେ ଅଳ୍ପରେ ଆସକ୍ତ ହୁଅନାହିଁ । ବେଶିରେ ଅଛି ସୁଖ ।"

× × ×

—୨—

ଏହା ମଧ୍ୟରେ ଅନେକ ଦିନ ଗତ ହୋଇଗଲାଣି । ସଂସାରୀ ହୋଇ ପୁତ୍ରକନ୍ୟାଭାର୍ଯ୍ୟା ପରିବେଷ୍ଟିତ ପରିବାରଟିଏ ମୋର ନ ଥିଲେ ମଧ୍ୟ ସଂସାର ସମ୍ବନ୍ଧେ କ୍ରମେ ମୋର ଜ୍ଞାନ ବଢ଼ିଛି । ଗ୍ରେଟ ସହରଟିଏ । ମୁଁ ବେଶି ପାଠ ପଢ଼ିନାହିଁ । ତେଣୁ ସାନ ଚାକିରିଟିଏ କରୁଛି । ଖୁବ୍ ଅଳ୍ପ ଉପାର୍ଜନ । ଏତିକ ଉପାର୍ଜନକୁ ସମ୍ବଳ କରି ବିବାହ କଲେ, ହଠାତ୍ ଯଦି ପରିବାରଟି ଖୁବ୍ ବଢ଼ିଯାଏ ଓ ମୁଁ ସ୍ୱିତମତ ସଂସାରୀ ହୋଇଯାଏଁ, ତେବେ କାଳେ ପ୍ରାପଞ୍ଚିକ ଲୋଭ ଓ ମାୟାଜାଲରେ ପଡ଼ି ମୁଁ ଅତି ଛୋଟଲୋକ ଦେଖାଇବି, ଏହି ଭୟରେ ମୁଁ ଆଉ ବିବାହ କରିନାହିଁ । ଛୋଟଲୋକକୁ ମୁଁ ଭାରି ଘୃଣା କରେ । ବାଲ୍ୟକାଳରୁ ହି ମୁଁ ଛୋଟଲୋକକୁ ଘୃଣା କରି ଆସିଛି । ଦାରିଦ୍ର୍ୟ, ଅଭାବ, ଅସୁବିଧା; ରୋଗ, ଯାତନା ଇତ୍ୟାଦି ସବୁ କଥାକୁ ମୁଁ ସମ୍ମାନର ସହିତ ମଥାପାତି ଗ୍ରହଣ କରିନେବି—କିନ୍ତୁ ଛୋଟଲୋକ ଦେଖିଲେ-ଇ ମୋର ସବୁ ଅସହ୍ୟ ହୋଇ ଉଠେ । ମୋର ସ୍ୱଳ୍ପ ଉପାର୍ଜନ ପାଇଁ ମୁଁ ବ୍ୟଥିତ ନୁହେଁ । ନାରୀମାନଙ୍କ ସମ୍ପର୍କରେ ମୋର ଅସଚ୍ଚରିତ୍ର ପାଇଁ ଶୋଚନା ନାହିଁ । ଜୀବନରେ ଯେଉଁମାନଙ୍କୁ ଠକିଛି; ସେଥିପାଇଁ ମୁଁ ଅନୁତାପ ବି କରିନାହିଁ । ମାତ୍ର ମୁଁ ଭାରି ଖୁସି ଯେ ମୋର ଛୋଟଲୋକ ନାହିଁ । ବିଶାଳ ମନ ନେଇ ମୁଁ ଅନ୍ୟର ଅନୁଗ୍ରହ ପ୍ରାର୍ଥନା କରିଛି ଓ ବିଶାଳ ମନ ନେଇ ମଧ୍ୟ ଅନ୍ୟ-

ମାନଙ୍କୁ ମୁଁ ଠକେନ୍ତି । ମାଚମନାଙ୍କୁ ମୁଁ ଘୃଣାକରେ । ଛୋଟଲୋକଙ୍କ ମୁହଁରେ ଛେପ ପକାଇ ଦେବାକୁ ମୋର ଇଚ୍ଛା ହୁଏ । ମୋର ଧାରଣା; ମନୁଷ୍ୟ ଦାରିଦ୍ର୍ୟରୁ ଉଦ୍ଧାର ପାଇପାରେ; ମାତ୍ର ଛୋଟଲୋକମି ଥରେ ଅସିଲେ, ଆଉ ସେଥିରୁ ନିସ୍ତାର ନାହିଁ ।

ଛୋଟଲୋକଗୁଡ଼ାକ ! ଛି; କେତେ ଛୋଟଲୋକ ସେମାନେ ! କେମିତି ସେମାନେ ଠିଆ ହୁଅନ୍ତି ! କେମିତି, ସେମାନେ ଚାଲନ୍ତି ! କେମିତି ସେମାନେ ହସନ୍ତି ! କେମିତି ସେମାନେ ବାହାଦୁରୀ କରନ୍ତି ! କେମିତି ସେମାନେ ନିଜର ଅଭାବ ଦେଖାନ୍ତି ! କେମିତି ସେମାନେ ଦାନ କରନ୍ତି ! କେମିତି ସେମାନେ ପ୍ରେମ କରନ୍ତି ! ଆଉ ଶେଷରେ କେମିତି ସେମାନେ ଠକନ୍ତି ! ଛି କେମିତି ସେମାନେ ଦେଖାଯାନ୍ତି ! କେତେ କୁତ୍ସିତ; କେତେ କଦର୍ଯ୍ୟ !! କେତେ ଦୟନୀୟ !!!

ମାତ୍ର କ୍ଷମାକରିବେ—ଏଇ "ଛୋଟଲୋକମି"ର ସଂଜ୍ଞା ମୁଁ ଆଉ ବେଶି ଦେଇ ପାରିବି ନାହିଁ । କିନ୍ତୁ ମୋର ଏତିକି ଧାରଣା ଥିଲି ଯେ, ଛୋଟଲୋକମିଟା ଜନ୍ମଗତ ସଂସ୍କାରଗତ ଓ ପରଂପରା-ଗତ ଏବଂ ତା'ର ଆଉ ଔଷଧ ନାହିଁ ।

ସେ ଯାହାହେଉ, ଏଇ ଛୋଟ ସହରଟିରେ ମୋର ସେଇ ଛାତ୍ରଜୀବନର ସାଥୀ ବାନାମ୍ବର ମେହେରକୁ ଦିନେ ଦେଖିବାକୁ ପାଇଲି । ଅନ୍ୟସ୍ଥାନରୁ ବଦଳି ହୋଇ ସେ ଏଠାକୁ ଆସିଛି । ବୟସ ୩୬-୩୭ ହେବ । ତାର ସେ ପୂର୍ବ ରୂପ ମଉଳି-ଗଲାଣି । ମୁହଁରେ ଆଉ ସେ କଳା ମଚମଚ ଗହଳ ଦାଢ଼ି ନାହିଁ । ଗାଲ ପଶିଯାଇଛି । ମୁଣ୍ଡରୁ ବାଳ ଉପୁଡ଼ି ଆସିଲାଣି । ଦେଖିଲେ ମନେହେବ, ବାନାମ୍ବର ସଂସାର ଜଞ୍ଜାଳରେ ଘାଣ୍ଟି ହୋଇ

ବିକଳ ହୋଇ ପଡ଼ିଲାଣି । ସମଗ୍ର ସଂସାର ସହେ ବା ବାନାମ୍ବର ପିଠିରେ ଲଦି ହୋଇ ବସିଛି । ଆଉ ବାନାମ୍ବର ଏତେ ବଡ଼ ବୋଝକୁ ପିଠିରେ ଧରି ନଇଁ ପଡ଼ିଲାଣି । ଆଖିରେ ଶସ୍ତା ଗାଡ଼କାଲ ଫ୍ରେମର ଗୋଲ ଚଷମା ପିନ୍ଧି ଲୁଗାଫେରିକୁ ପେଟତଳେ ଦବାଇ ମଇଳା ଝୁରୁଣା କୋଟଟାକୁ ଦୁଇ ହାତରେ ଭିଡ଼ି ଭିଡ଼ି ସେ ମୋତେ ନମସ୍କାର ହେଲା; ଆଉ ଆରମ୍ଭ କଲା—

ହେଁ ହେଁ, ଆରେ ତୁ ଏଠି ! ବାଃ ବାଃ ! ଯାହାହେଉ ଭଲ ହେଲା । ଆରେ ହେଁ ହେଁ ! କେଇଟି ପିଲାପିଲି ହେଲେଣି ! ମ ? ତୋ' କଥା ଭାଇ କଏ ମତେ ଜଣେ କହୁଥିଲା । କଏ ସେ ହେଇଟି ଆଁ ଆଁ ହାତ କଉ ଅଗରେ ଅଛି ! ଦୁଇଟେଷ୍ଟ; କହୁଛି ଭାଇ ଆଜିକାଲି ମନେରହୁ ନି ।—ଆଉ କେତୋଟି ପିଲାପିଲି ହେଲେଣି ? କୋଉଠି ବସାଘର କରି ଅଛୁ ? ମୋର ଝିଅ ପୁଅର ପିଲା । ହେଁ ହେଁ ! କହ ନା ଭାଇ, ଯୋଉ ହଇଯାଉ ! ହେଁ-ହେଁ; ଆଉ କଣ ସେମିତି କହୁନୁ ।'

ମୋତେ ଧରି ସେ ଏକବାର ଦୋହଲାଇ ଦେଲା । ତାର କେଉଁ ପ୍ରଶ୍ନର ଉତ୍ତର ଦେବି ଠିକ୍ କରି ପାରୁ ନ ଥିଲି । ମୋର ମନରେ ସନ୍ଦେହ ହେଲା—ଏଇ କଣ ବାନାମ୍ବର ମେହେର ! ତଥାପି ଅତି ସହଜ ଭାବେ କହିଲି —

"ବାନାମ୍ବର, ତୁ କେବଠାରୁ ଏଠିକି ଆସିଲୁଣି ? ଏଠି, କେଉଁଠି ଅଛୁ ?".

"ମାସେ ହେବ ମୁଁ ଏଠାକୁ ବଦଳି ହୋଇ ଆସିଛି । ତୋର ଆଗ ପିଲାଛୁଆ କଣ ହେଲେଣି କହ ମ !"

"ଆଉରେ ନାହିଁ—ମୂଳରୁ ମାଇପ ନାହିଁ—ପୁଅ ନା ଗୋପାଳଆ !"

ମୁଁ ଚଡ଼ି ଉଠୁଥିଲି । ଏତେ ଦିନ ପରେ ଦେଖା । କଥା ଆରମ୍ଭ କରୁଛି କେତୋଟି ପିଲା ହେଲଣି ଠାରୁ, ନନ୍‌ସେନ୍‌ସ !

ବାନାମ୍ବର ଦୁଇ କହୁଣୀକୁ ନଚାଇ ନଚାଇ ହସି ହସି ଆରମ୍ଭ କଲା—"ବାହା ହୋଇନାହୁଁ ! ହଇ ରେ···ଆଜି ଯାଏ ସମ୍ଭାଳି ହୋଇ ଅଛୁ ? ହଁ ଭାଇ, ତୋ କଥା କଣ ? ତୋର ତ ରୋମାଣ୍ଟିକ୍ ଜୀବନ । ଆଉ ସେଇ ଯେ ଇନ୍ଦୁମତୀ ସେଇ ମ ହିଃ ହିଃ ହିଃ ! କଲେଜରେ ମ ! ଆଉ ଚାଲିଛି ନା ତା ସଙ୍ଗରେ ସେମିତି ? ନା' ଚଡ଼ିଆ ଉଡ଼ିଗଲା ? ହିଃ ହିଃ ହିଃ ! ଯାହାହେଉ, ମୋର ଭାଇ ଜୀବନରେ ଅବଶୋଷ ରହିଗଲା । କାହାକୁ ଗୋଟିଏ ଜୀବନରେ ପ୍ରେମ ଫ୍ରେମ କରିପାରିଲି ନାହିଁ । ଏଠି ବି ତୋର ସେମିତି ଚାଲିଛି ନା ! ହଁ, ତୁ ଆଉ ଗୁଡ଼ୁଥିବୁ ? ତୁ ପକ୍‌କା ଖେଲପ୍ଚା ଅଛୁ । ହିଃ ହିଃ ହିଃ !

ଏ କିଏ ବାନାମ୍ବର ମେହେର ? ମୋର ଅସହ୍ୟ ହେଲା । ଦିନେ ବି ନାରୀସମ୍ପର୍କୀୟ କଥାବାର୍ତ୍ତା ମୋର ତା' ସଙ୍ଗେ ହୋଇନାହିଁ । ସେଥିପାଇଁ ମୋର ଅନ୍ୟ ବନ୍ଧୁ ଥିଲେ । ମୋର କେତେକ ନାରୀବନ୍ଧୁ ସେତେବେଳେ ଥିଲେ, ବର୍ତ୍ତମାନ ବି ଅଛନ୍ତି । ମାତ୍ର ଅମୃତସ୍ୟ ପୁତ୍ର ବାନାମ୍ବର ମେହେର ଏ ଢଙ୍ଗରେ ଏ ଭଳି କଥା କହୁଛି, ମୁଁ ବିଶ୍ୱାସ କରିପାରିଲି ନାହିଁ । ବାନାମ୍ବର ହୁଏ ତ ଜାଣିଥିଲା ସେହିକାଳୁ ଯେ ମୁଁ ବଡ଼ ନାରୀ ଲୋଭୀ । ମାତ୍ର ସେ ସମ୍ପର୍କରେ ଏହିଭଳି ଶୈଳୀରେ କଥାବାର୍ତ୍ତା କରିବାର ସାହସ ବାନାମ୍ବର କେଉଁଠାରୁ କପରି ଲାଭ କଲା ?

ଆଉ ଅଧିକ ସମୟ ରହିବାକୁ ଇଚ୍ଛା ହେଲା ନାହିଁ । ତେଣୁ ତା'ଠାରୁ ବିଦାୟ ନେଇ କହିଲି, "ହଉ ଥାଆ ଭାଇ ! ଦେଖା ତ ହେବ ନିଶ୍ଚୟ ପ୍ରତିଦିନ । ଆଜି ଆସୁଛି । ଟିକେ ଷ୍ଟେସନ ଯିବାକୁ ହେବ ।"

"ହଉ ହଉ ଯାଆ । କିନ୍ତୁ କାଲି ସନ୍ଧ୍ୟାରେ ଟିକେ ଭାଇ ଆମ ଘରଆଡ଼େ ତୋତେ ଆସିବାକୁ ହେବ । ମୋ ସ୍ତ୍ରୀ କଳାବତୀଙ୍କୁ ତୋ କଥା ବହୁତ କହିଛି । ତୋ କଥା ଆମର ବନ୍ଧୁ ସମୟରେ ପଡ଼େ ରେ ! ମୋ ସ୍ତ୍ରୀ ଟିକେ ସାହିତ୍ୟଚର୍ଚ୍ଚା କରନ୍ତି ନା ! ତାଙ୍କ ସାଙ୍ଗେ ସାହିତ୍ୟଚର୍ଚ୍ଚା କରିବାକୁ କିଏ ଭାଇ ଏଠି ମିଳୁଛି ? ମୋ କଥା ତ ଜାଣିଥିବୁ । ସାହିତ୍ୟ କିଏ ? ଆମେ କିଏ ? ହେଁ ହେଁ ହେଁ ! ତୋତେ ସେ ଭାରି ଭଲପାନ୍ତି; ଯିବୁ ଭାଇ, ନିଶ୍ଚୟ ଯିବୁ ।"

ମୁଁ କହିଲି, "ହଉ ହଉ ଯିବା ତ ! ଏତେ ବ୍ୟଗ୍ରତା କାହିଁ ! ତୋ' ସ୍ତ୍ରୀ କପରି ଏତେ ମତେ ଭଲ ପାଇଗଲେ ? ଆଶ୍ଚର୍ଯ୍ୟ ! ମୁଁ ତ ଆଉ ସାହିତ୍ୟ ଫାହିତ୍ୟରେ ନାହିଁ । ଦଶ ବର୍ଷ ହେଲାଣି – ଲେଖାଲେଖି ବନ୍ଦ ।"

ବାନାମ୍ବର ଅପ୍ରତିଭ ହୋଇ କହିଲା, "ନାଇଁ ନାଇଁ ନାଇଁ, ସେଇ କଲେଜ ମାଗାଜିନ୍‌ରୁ ସେ ! ସବୁ ପୁରୁଣା ପତ୍ରିକା ଗୁଡ଼ାକ ମୁଁ ପାଖେ ପାଖେ ରଖିଛି ନା । ତାଙ୍କର ବି ପୁରୁଣା ପତ୍ରିକାଗୁଡ଼ାକରୁ ଗପ କବିତା ବାଛି ପଢ଼ିବାରେ ଭାରି ସଉକ । କେତେ ପୁରୁଣା ପତ୍ରିକା ଆମ ଘରେ ଜମା ହୋଇଛି – ଗଲେ ଦେଖିବୁ ।"

ହାତ ଯୋଡ଼ି କହିଲ—"କ୍ଷମା କର ଭାଇ ! ପୁରୁଣା ପତ୍ରିକାଗୁଡ଼ାକ ଆଉ ଦେଖିବାରେ ଇଚ୍ଛା ନାହିଁ । କିନ୍ତୁ ତାର ପାଠିକାଟିକୁ ଦେଖିବାକୁ ଭାରି ଇଚ୍ଛା । ଯିବି ଯେ ନିଶ୍ଚୟ କାଲି ସନ୍ଧ୍ୟାରେ ଯିବି । ତୁ ଯାଆ । ଏଭଳି କଳାବତୀ ଭାର୍ଯ୍ୟା କାହାକୁ ଭାଇ ଜୁଟେ ? ହଉ ଭାଇ ନମସ୍କାର !"

"ହଉ ଭାଇ—କାଲି ସନ୍ଧ୍ୟାରେ ନିଶ୍ଚୟ ନିଶ୍ଚୟ ନିଶ୍ଚୟ । ମୁଁ ଅପେକ୍ଷା କରିଥିବି ।" ବାନାମ୍ବର ଚାଲିଗଲା ।

ମୁଁ ତା'ର ସ୍ତ୍ରୀ କଳାବତୀଙ୍କ କଥା ଚିନ୍ତା ନ କରି ସ୍ୱୟଂ ବାନାମ୍ବର ମେହେର କଥା ଭାବୁ ଭାବୁ ଘରେ ପହଞ୍ଚିଲି । ସଂସାର ଉପରେ ରାଗ ହେଲା । ସଂସାର ! ତୁମେ ଏ କଣ କଲ ? ବାନାମ୍ବର ତୁମର କି କ୍ଷତି କରିଥିଲା ?

ତା' ପରଦିନ ସନ୍ଧ୍ୟାରେ ବାନାମ୍ବର ଘରକୁ ବାହାରିଲି । ଜାଣିଛି, ବାନାମ୍ବରର ଚାରୋଟି ସନ୍ତାନ । ସେମାନଙ୍କ ପାଇଁ କିଛି ନେବାକୁ ହେବ । ଗୋଟିଏ ବିସ୍କୁଟ ଡବା ଧରି ବାହାରିଲି । ବାନାମ୍ବରର ପିଲାମାନଙ୍କ ପାଇଁ ମୋର ସ୍ନେହୋପହାର ଦେଢ଼ୋଟି ଟଙ୍କା । ବେଶି ଖର୍ଚ୍ଚ କରିବାକୁ ଇଚ୍ଛା ଥିଲେ ବି ସାମର୍ଥ୍ୟ ନାହିଁ ।

ବାନାମ୍ବର ଘରେ ପହଞ୍ଚି ଦେଖେ ତ ବାନାମ୍ବର ଭଙ୍ଗା ଇଟା ଓ କାଦୁଅରେ ଗୋଟିଏ ଘୋଷ୍ଟ ଘର ବନାଉଛି । ମୋତେ ଦେଖି ପାଟି କରି ଉଠିଲା—

"ଆରେ ଆରେ । ଆସ ଆସ ହୋ ! ହଇ ଓ ! ଶୁଣୁଛି, ତମ କବି ଆସିଗଲେଣି । ଶୁଣୁଚ, ଆସ ହେ ଏଣେ ! ଆହେ, ବହୁ ଦିନର ବନ୍ଧୁ ଭାଇ ମ ! ଦିଅ ଦିଅ, ଗୁଆ ବସାଅ । ମୋର ଭାଇ

ଦିନକୁ ଦଶ ଥର ଚା’ଅ ଅଭ୍ୟାସ । ଚା’ କପେ ନ ହେଲେ ଘରୁ ବାହାରିବ ନାହିଁ ।”

ବାନାମ୍ବର କଥା ଶୁଣି ମନେହେଲା, ମୋତେ ଆଜି ସନ୍ଧ୍ୟାରେ ଚା ଖାଇବାକୁ ନିମନ୍ତ୍ରଣ କରିବା କଥା ବୋଧହୁଏ ତାର ମନେ ନ ଥିଲା କିମ୍ବା ଜାଣିଥିଲେ ବି ଡଆରେ କରି ସାରି ମୋର ଆସିବାକୁ ଅପେକ୍ଷା କରି ଚା କେଟଲି ଚୁଲିକୁ ଯାଇ ନ ଥିଲା ।

ମୁଁ କହିଲି—

“କେତେଟା କଣ ଢିଅରି କରୁଛୁ ବାନାମ୍ବର ? କାଦୁଅ ଆଉ ଭଙ୍ଗା ଇଟାରେ ?”

“କୁକୁଡ଼ା ଘର । ଆଉ କଣ ? ସାରବାନ୍ ଖାଦ୍ୟ ପିଲାଙ୍କୁ ଦେଇ ହେଉନାହିଁ । ମୁଁ ଯୁଆଡ଼େ ଯାଏଁ କୁକୁଡ଼ା କେଇଟି ପୋଷି ଥାଏ । ଅନୁଗୋଳରେ ଲୋକେ ବଳେ ଗୃହକର୍ଣ୍ଣ କୁକୁଡ଼ା ହୋଇ-ଥିଲେ !” ବାନାମ୍ବର ହାତରୁ କାଦୁଅ ଧୋଇଲା ।

ଟିକେ ଥଟ୍ଟା କରି କହିଲି, “କୁକୁଡ଼ା ରଖିଲୁଣି ତୁ ? ତୋ ରାମକୃଷ୍ଣ, ବିବେକାନନ୍ଦ କଣ କୁକୁଡ଼ା ରଖିବାକୁ ପରାମର୍ଶ ଦେଇଛନ୍ତି ?”

ବାନାମ୍ବର ହାତରେ ତାଳଟାଏ ମାରି କହିଲା—

“ଆରେ ଭାଇ, ରାମକୃଷ୍ଣ ସିନା ରାମପକ୍ଷୀ ରଖିବାକୁ କହି ନାହାନ୍ତି; ମୋ ବିବେକ କିନ୍ତୁ ଆନନ୍ଦରେ କହୁଛି କୁକୁଡ଼ା ପୋଷିବାକୁ । କୁକୁଡ଼ାଟା ହେଲା ଏ ଯୁଗର କାମଧେନୁ । ଗାଈ ରଖି ହେବ ନାହିଁ । ବଜାରରେ ସବୁ ଖାଦ୍ୟଦ୍ରବ୍ୟରେ ଭେଜାଲ ମିଶା; ଅଣ୍ଡାକୁ ଛାଡ଼ିଦେଲେ । ଏତେ ଅଣ୍ଡା କଣି ଖାଇପାରିବା କୋଉଠି ଆମେ ? କୁକୁଡ଼ା ରଖିଲି; ପିଲାଏ ଗୋଟାଏ ଲେଖାଁ

ଅମ୍ମା ଅନ୍ତତଃ ପ୍ରତିଦିନ ଖାଇବେ । ଘର ଗୃହସ୍ଥ ପିଲା ଘର— ସମ୍ଭାଳିବା ବଡ଼ କଷ୍ଟ ”।

ମସିଣା ପାର ବସିଲି । ବାନାମ୍ବର ଗୃହିଣୀ କଳାବତୀ ଚା ଧରି ଆସିଲେ । ସଙ୍କୁଚିତ ହୋଇ ସଂଭ୍ରମ ରଖି ନମସ୍କାର ହେଲି ।

"ବସନ୍ତୁ ।"

କଳାବତୀ ବସିଲେ । ମୋ ହାତକୁ ଚା' କପ୍ ବଢ଼ାଇ ଦେଇ ଥରେ ସେ ମୋ ମୁହଁକୁ ଚାହିଁ ମୁହଁ ତଳକୁ କଲେ । ତାଙ୍କୁ ଏ ଥର ତାଙ୍କ ଅଜାଣତରେ ଦେଖିବାକୁ ଲାଗିଲି । କଳାବତୀଙ୍କର ପ୍ରତି ଅଂଶରୁ କଳା ଝରିଲି । ଓ, ଏଇ ତେବେ କଳାବତୀ ? ହଁ, ତାଙ୍କର ଆଖିରେ କଳା ଅଛି ଓ ହାତରେ କଳା ଲାଗିଛି । ବିସ୍କୁଟ ତବାଟି ହାତରେ ଧରିଥାଏ । କଳାବତୀଙ୍କର ଆଖି ସେଇ ବିସ୍କୁଟ ତବାଟି ଉପରେ ଲାଖି ରହିଥାଏ । ସେ ତାକୁ ହିଁ ଛକିଛନ୍ତି । ମୁଁ କହିଲି —

"ନଅନ୍ତୁ । ପିଲାଏ କାହାନ୍ତି ?"

ମୋ ପାଟିରୁ ବାହାରୁ ବାହାରୁ ସେ ବିସ୍କୁଟ ତବାଟି ମୋ ହାତରୁ ଛଡ଼ାଇ ନେଲା ପରି ଧରି ଭିତରକୁ ଉଠିଗଲେ । ଅନ୍ଧାରରେ କଳାବତୀ ଲୁଚିଗଲେ । ମୁଁ ଭାବିଲି, ମାଛ ବିଲେଇଟା ମୋ ହାତରୁ ଖଣ୍ଡେ ମାଛ ଝାମ୍ପି ନେଲା, ଆଉ କୋଠିତଳକୁ ଯାଇ ସେଠି ଲୁଚିଗଲା ।

"ବାନାମ୍ବର ! ତୋର ପିଲାମାନେ କାହାନ୍ତି ?" ମୁଁ ପଚାରିଲି ।

ହଠାତ୍ ଘର ପଛପଟେ କାହାର ଚିତ୍କାର ଶୁଣାଗଲା । ଓଃ ! କି ଭୟଙ୍କର ସେ କାନ୍ଦଣା ! କିଏ ସତେ ବା କୋଉଠି ପିଲାର ତଣ୍ଟି ଚିପି ଧରିଛି ।

"କିଏ ରେ-ଏ-ଏ ??? କଣ ହେଲା ରେ ଏ-ଏ-ଏ ?

ଚିତ୍କାର କରି ଅନ୍ଦରମହଲରେ ବାନାମ୍ବର ଦଉଡ଼ିଲେ । ମିନିଟିକ ମଧ୍ୟରେ ଜଣଙ୍କର କାନ ଧରି ବାନାମ୍ବର ମୋ ପାଖକୁ ଆଣିଲେ ।

"ପଡ଼ ପଡ଼ ପାଙ୍ଗା, ଗୋଡ଼ତଳେ ପଡ଼ । ମଉସାଙ୍କ-ଗୋଡ଼ତଳେ ପଡ଼ ।"

"ଥାଉ ଥାଉ ! ଗୋଡ଼ତଳେ ଗୋଟେ ପଡ଼ିବ କଣ ? ଆହା, କଣରେ ବାପା ! ଆସ-ଆସ-ଆସରେ ପିଲାଏ—ଏଠିକି ଆସ । କଣ ? କାହିଁକି କାନ୍ଦୁଚ ? ତୁମ ନାଁ କଣ ? ମୁଁ ଗୋଟାଏ ପିଲାକୁ କୋଳକୁ ଧରି ପଚାରୁ ପଚାରୁ ବଡ଼ଝିଅଟି କାନ୍ଦି କାନ୍ଦି କହିଲା—

"ବୋଉ ମୋତେ ବିସ୍କୁଟ ଦଉନାହିଁ, ସମସ୍ତଙ୍କୁ ଦେଲା—ମୋତେ ଦେଉନାହିଁ ।"

ମୁଁ କହିଲି, "ଦେବେ ଦେବେ, ତୁମ ପାଇଁତ ସବୁ ଆସିଛି । ବୋଉ ଆଉ ତୁମକୁ ନ ଦେଇ କାହାକୁ ଦେବେ ?"

ଝିଅଟି କିନ୍ତୁ କାନ୍ଦି କାନ୍ଦି ଗଡ଼ୁଥା ଓ ବଡ଼ୀ ମାରି, ଗୋଡ଼ ହାତ ଛାଟି ମୋତେ ବ୍ୟସ୍ତ କରି ପକାଇଲା ।

"ନାଇଁ ନାଇଁ; ସେ ଜମା ଦବ ନାହିଁ । ଖାଲି କହିବ; ପୁଅକୁ ଧଅ; ଖେଳିବାକୁ ଯା'ନା । ସବୁ କଥା ଖାଲି ପୁଅକୁ ଖାଇବାକୁ ଦବ; ମୋତେ ମାରିବ ।"

ଗୁ' କପରୁ ଅଧେ ଖାଇ ସାରି ତଳେ ରଖିଥିଲି । ବାକି ଅଧକରେ ଓଠ ବଢ଼ାଇବା ପାଇଁ ତଳକୁ ହାତ ବଢ଼ାଏ ତ ଗୋଟେ ପିଲା ସେ ଗୁଆତକ କାଙ୍ଗାଳଙ୍କ ପରି ପିଇ ଲାଗିଛି । ପିଲାଟାର ନାକ ତଳେ ଦୁଇ ଧାର ସିଂଘାଣୀ; ମୁହଁସାକ ମଇଳା, ଲଙ୍ଗଳା ଦେହ, ଟୁମ୍ପୁକା ପେଟ । ଗୁଳିଚିକ୍ନ ହାତ ଗର୍ଣ୍ଣି ହୋଇ ଯାଉଛି । ଆଉ ଗୋଟେ ପୁଅ । ପେଲୁଟାକୁ ଝର୍କାରେ ଗୁଡି ଲାଗିଛି । ହଠାତ୍ ଅନ୍ୟ ପିଲାଟି ଚିତ୍କାର କରି ଉଠିଲା—

"ଆରେ ଆରେ; ଦେବା । ଇଲୋ ବୋଉ ଲୋ ! ଆଲୋ ସବୁ ପିଇ ଦେଲା ଲୋ; ଆଲୋ ! ମୋତେ ଦେଲା ନାହିଁ ଲୋ !!"

ତା'ପରେ ସବୁ ପିଲାଗୁଡ଼ାକ ଠେଲାପେଲା ହୋଇ ପରସ୍ପରକୁ ଆକ୍ରମଣ କଲେ ଓ ଚିତ୍କାର କଲେ । ଏ ଦୃଶ୍ୟ ମୋତେ ଅସହ୍ୟ ହୋଇ ଉଠିଲା । ତଥାପି ସଂଯତ ହୋଇ ମୁଁ କହିଲି—

"ବାନାମ୍ବର, ପିଲାମାନଙ୍କ ଖେଳ ଖେଳ ଶେଷ ହେଲାଣି । ସେମାନଙ୍କୁ ଖାଇବାକୁ ଦେବା ପାଇଁ କଳାବତୀଙ୍କୁ କୁହ ।"

"ଆରେ ନାହିଁ ଭାଇ; ଗୁଆ ଖାଇବା ଏମାନଙ୍କର ଗୋଟେ ବଦ୍ ଅଭ୍ୟାସରେ ପରିଣତ ହୋଇଗଲାଣି । ସବୁଦିନ ସନ୍ଧ୍ୟାରେ ଆମ ଘରେ ହାଣ୍ଡିଏ ଗୁହା ହେବ । ଏ ଛୁଆଗୁଡ଼ାକ ଏତେ ଗୁହଖୋର ହୋଇଗଲେଣି ଆଜିଠାରୁ !" ବାନାମ୍ବର କଥାଟାକୁ ଯେପରି କହିଲା; ସେଥିରେ ଚିଡ଼ି ଉଠି ମୁଁ କହିଲି—

"ହଁ, ତୋର ଅମୃତସ୍ୟ ପୁତ୍ରାଃ ଏହି ବାଲ୍ୟକାଳରୁ ଗୁହା ପାନରୁ-ଇ ଅମୃତ ପାନର ସ୍ୱାଦ ଲାଭ କରୁଛନ୍ତି । ଏହା ପ୍ରଶଂସନୀୟ ଅଭ୍ୟାସ ଅଟେ । ହଉ ଥାଅ; ଗଲିଲି । ଶ୍ରୀମତୀ କଳାବତୀଙ୍କୁ ନମସ୍କାର । ସେ କୁଆଡ଼େ ଗଲେ ?"

କଳାବତୀ ଆସିଲେ, ହସି ହସି ହାତଯୋଡ଼ି ନମସ୍କାର କଲେ ।

"କିଛି ତ ଦେଇ ପାରିଲୁ ନାହିଁ; ଖାଲି 'ଗୃ କପେ' ! କଣ ଟିକେ ଜଳଖିଆ କରିପାରିଲି ? ଇଏ ଯେଉଁଠି ଥିବେ—ନାହିଁ କରୁଛି—ଆଜି ଡାକ ନା—ମୋ ଦେହ ଭଲ ନାହିଁ ।"

ମୁଁ କହିଲି—"ହଉ ହଉ—କିଛି ନାହିଁ—ସେ ଗୋଟେ କଣ ? ଏଇ ଆପଣଙ୍କ ସଙ୍ଗେ ଦେଖାହେଲା । ଏ କଣ କମ୍ ସୌଭାଗ୍ୟ ? "

ସତେ ? ସୌଭାଗ୍ୟ ଆପଣଙ୍କର ନା ମୋର ? କଏ ଅଛି ଏଠି ? ଆପଣଙ୍କ କଥା ବହୁତ ଶୁଣିଛି ତାଙ୍କଠାରୁ । ବହୁତ ପୁରୁଣା ଲେଖା ବି ପଢ଼ିଛି ଆପଣଙ୍କର । କମ ଲୋଭି ହୋଇଛି ଆପଣଙ୍କୁ ଦେଖିବା ପାଇଁ ? ଏହିଭଳି ଅସୁଥିବେ ବରାବର । ନିଶ୍ଚୟ—ନିଶ୍ଚୟ—ନିଶ୍ଚୟ ମୋ ରାଣ !"

ବାନାମ୍ବର ହଠାତ୍ ତାଳମାରି ନାଚି ନାଚି ମୋ ଚାରିପଟେ ବୁଲି ଆସିଲା—

"ଲାଗିଲା—ଲାଗିଲା—ଆଜି ଲାଗିଲା ରେ ଶ୍ୟାମ ବନ୍ଧୁ ପ୍ରେମ ଲଟ । ମୁଁ ପରା କହୁଚି—ସାହିତ୍ୟରେ ତାଙ୍କର ଭାରି ସଉକ । ତୁ ଆସିବୁ ନିଶ୍ଚେ ଭାଇ । ଏହିଭଳି ବରାବର ଆସୁଥିବୁ । କିନ୍ତୁ ଏ ବସ୍ତୁଟି ଫିଲ୍ମଟି ଗୁଡ଼େ ଆଉ ଆଣିକୁ ନାହିଁ । ଛି—ଏସବୁ ଗୁଡ଼େ କଣ ?"

ହଠାତ୍ ତା'ର ଝିଅଟି ଆସି ମୋତେ କୁଣ୍ଢାଇ ପକାଇ ଅସ୍ତବ୍ୟସ୍ତ କରି ଅଳିକଲା—

"ଆଉ ଯେତେ ଥର ଆସିବ ମୋ ପାଇଁ ନିଶ୍ଚେ ନିଶ୍ଚେ ନିଶ୍ଚେ ବିସ୍କୁଟ ଆଣିବ ।"

ତାର ଅଳିଆ ବାଳକ ଆଉଁସି ଦେଇ ମୁଁ କହିଲି, "ହଉ ହଉ; ନିଶ୍ଚୟ ଆଣିବ ।"

ବିଦାୟ ନେଇ ଘର ମଧ୍ୟରୁ ରାସ୍ତାକୁ ଆସିଲି । ହଠାତ୍ ମୋ କାନରେ ବାଜିଲା; ବାନାମ୍ବର କହୁଛି—

"ଦେଖିଲ ? ମୁଁ କଣ କହୁଥିଲି ? ତୁମେ ସିନା ବିରକ୍ତ ହେଉଥିଲ କପେ ଚାଆ କରିବା ପାଇଁ ! ଡବାଏ ବିସ୍କୁଟ ଦେଢ଼ ଟଙ୍କାରୁ କମ୍ ହେବ ଭାବୁଛ ?

ଆଉ ଶୁଣିବାକୁ ଇଚ୍ଛାହେଲା ନାହିଁ । ଘରକୁ ଫେରି ଆସି ଭାବିଲି, ଯାହା ହେଉ ବଞ୍ଚିଗଲି ! ବାନାମ୍ବର ଘର ମଧ୍ୟରେ ମୋର ଶ୍ୱାସରୁଦ୍ଧ ହେଉଥିଲା । ହେ ଦେବ ! କି ଜନ୍ତୁଙ୍କର ଜାଲ ମଧ୍ୟରେ ପଡ଼ିଛନ୍ତି ଏଇ ଅମୃତସ୍ୟ ପୁତ୍ର ! ବାନାମ୍ବର କଳାବତୀ ଆଉ ତାର ପିଲାଗୁଡ଼ାକ !!!

ତା'ପରେ । କିଛିଦିନ ବିତିଗଲା ।

ସନ୍ଧ୍ୟାରେ ଛୋଟ ସହରଟିରେ ପ୍ରତିଦିନ ଏକାକୀ ବୁଲି ଯାଏ । ସେ ଦିନ ବି ବୁଲି ବାହାରିଛି । ଛକ ଉପରେ କେତେ ଜଣ ବନ୍ଧୁଙ୍କ ସଙ୍ଗେ ଦେଖାହେଲା । ଠିଆ ହୋଇ କଥାବାର୍ତ୍ତା ଆରମ୍ଭ କରିଦେଲୁ । ଇଚ୍ଛା ନ ଥିଲେ ବି ଅବାନ୍ତର କଥାମେଳି ସମୟ କଟାଇଦେବା ଭଲ ।

ହଠାତ୍ ଦେଖେ ତ, ବାନାମ୍ବର ଆଉ ତାର ସ୍ତ୍ରୀ କଳାବତୀ ଆମରି ଆଡ଼କୁ ମାଡ଼ି ଆସୁଛନ୍ତି । କଳାବତୀ ଆଗରେ ଚାଲିଛନ୍ତି ଓ

ବାନାମ୍ବର ନସର ପସର ହୋଇ ତାଙ୍କ ସଙ୍ଗେ ପାଦ ମିଳାଉଛି । ମୋ ସଙ୍ଗେ ଷଡ଼ଚକ୍ଷୁ ହୋଇଗଲା । କଳାବତୀ ହସିଦେଲେ । ବାନାମ୍ବର ହସିଦେଲା । ନମସ୍କାର ହେବାକୁ ବାଧ୍ୟ ହେଲି । ସେମାନେ ଆମ କଡ଼ ଦେଇ ଆଗକୁ ଚାଲିଗଲେ । ମୁଁ ଆଶ୍ୱସ୍ତି ବୋଧକଲି । ଉପସ୍ଥିମାନ ବନ୍ଧୁମାନେ କଳାବତୀଙ୍କ ଉପରେ ଅତି ଲୋଭନୀୟ ଓ ଅଶ୍ଳୀଳ ଟିପ୍ପଣୀ ଦେଲେ । କଳାବତୀ ସେ ଦିନ ବି ପ୍ରକୃତରେ ଟିକେ ଅଶ୍ଳୀଳ ଭାବେ ଲୋଭନୀୟ ଦେଖା-ଯାଉଥିଲେ । ହଠାତ୍ ବାନାମ୍ବର ଖଣ୍ଡେ ଦୂରରୁ ପଛକୁ ଫେରି ଆସି ମୋତେ ଡାକିଲା । ମୁଁ ମେଳ ମଧ୍ୟରୁ ବାହାରି ଗଲି । ଖଣ୍ଡେ ଦୂରରେ କଳାବତୀ ଆମରି ଆଡ଼କୁ କଳା ଦେଖାଇ ଠିଆ ହୋଇ-ଛନ୍ତି । ବାନାମ୍ବର ବଡ଼ ବିନୀତ ଭାବେ କହିଲା—

"ତୋ ପାଖେ ଦୋଅଣୀଟିଏ ଅଛି କି ଭାଇ ? ଆଜି ଘରେ ଆଉ ଗୁଆ ଖାଇ ଆସି ହେଲା ନାହିଁ । ଅଫିସରୁ ଫେରୁ ଫେରୁ ସାଢ଼େ ପାଞ୍ଚ । ବୁଲିବାକୁ ପ୍ରସ୍ତୁତ ହେଉ ହେଉ କଳାବତୀ ଆଉ ଗୁଆ ପ୍ରସ୍ତୁତ କରିପାରିଲେ ନାହିଁ । ପିଲାଗୁଡ଼ାଙ୍କୁ ବି ଲୁଚି କରି ଆସିଛୁ । ଦୋଅଣୀ ଅଛି ତୋ ପାଖେ ? କିଛି ମନେ କରିବୁ ନା ।"

ବାନାମ୍ବରର ଏହି କାକୁବାଣୀ ଶୁଣି ମୋର ତା' ଦାନ୍ତ ଉପରେ ବିଧା ମାରିବାକୁ ଇଚ୍ଛା ହେଉଥିଲା । ମାତ୍ର ମୁଁ ଠଙ୍କାଟିଏ ବଢ଼ାଇଦେଲି ।

"ରେଜା ନାହିଁ, ଏତେକ ନେଇ ଯା ଭଙ୍ଗେଇ ଦେବୁ ।"

ବାନାମ୍ବରଠାରୁ ମୁକ୍ତି ପାଇବାକୁ ବ୍ୟାକୁଳ ହେଉଥିଲି । ମାତ୍ର ସେ ମୋତେ ଛାଡ଼ିଲା ନାହିଁ ।

"ତୁ ଟିକେ ଘଇ ଦୟା କର ଆ । ଏଠି ତ ଆଉ ହେବେ ବଡ଼ ହୋଟେଲ ନାହିଁ ଯେ ଧୀଙ୍କୁ ନେଇ ଗୁହା ଖାଇହେବ ତୁ ଟିକେ କଳାବତୀଙ୍କୁ ନେଇ ରାସ୍ତାରେ ଆଗେ ଆଗେ ଚାଲ । ମୁଁ ଏଇ ପାଖ ଦୋକାନରେ ଠିଆ ଠିଆ ଚା ଖାଇ ଧାର ଯାଇ ତୁମ ସଙ୍ଗେ ଦଉଡ଼ି ଦଉଡ଼ି ମିଶିବ ।"

କଳାବତୀ ଅବଶ୍ୟ ସେ ଦିନ ବଡ଼ ଅଶ୍ଳୀଳ ଭାବେ ଲୋଭନୀୟ ଦେଖାଯାଉଥିଲେ । ମାଛି ତାଙ୍କ ସଙ୍ଗେ ବୁଲିଯିବାକୁ ମୁଁ ଜମା ପ୍ରସ୍ତୁତ ନ ଥିଲି ସେତେବେଳେ । କଣ କରିବ ? ତଳକୁ ମୁହଁ ପୋତି ଖାବୁଛି । କଳାବତୀ ପାଖକୁ ଲାଗ ଆସିଲେଣି ।

"ଆପନ୍ତୁ ଆଜ୍ଞା, ତଙ୍କର ତ ମୋ ସଙ୍ଗେ ବୁଲି ଆସିବାକୁ ମନ ନ ଥାଏ । ବାଟ ଚାଲୁ ଚାଲୁ ତାଙ୍କୁ ଚା' ଖାଇବାକୁ ଭଲବ ଦିଏ । ଆପଣ ଆସନ୍ତୁ । ସେ କଣ ମଣିଷ ?"

ହସି ହସି କଳାବତୀଙ୍କ ସଙ୍ଗେ ସଙ୍ଗେ ଚାଲିଲି । କିଛି କଥା ମୁଁ କହିପାରୁ ନ ଥାଏ । ଲଜ୍ଜା ପାଇଁ ନୁହେଁ; କଣ ବା କହନ୍ତ ? ଅନେକ ବାଟ ଏକାଥରକେ ଚାଲି ଅଧିଲୁଣି । କଳାବତୀ କେତେ କଣ ଗପି ଯାଉଥାନ୍ତି । ମୁଁ କିଛି ଶୁଣୁ ନ ଥାଏ । କେବଳ ପଛକୁ ଚାହୁଁ ଥାଏ । ବାନାମ୍ବର କେତେବେଳେ ଫେରିବ । ରାସ୍କେଲଟା କଣ କରୁଛି ଏତେବେଳ ଯାଏ ! ସନ୍ଧ୍ୟା ହେଲା । ଅନ୍ଧାର ହେଲ; ତଥାପି ବାନାମ୍ବରର ଦେଖାନାହିଁ । ଆମେ ପ୍ରାୟ ଦେଢ଼ ମାଇଲ ବାଟ ଚାଲି ଆସିଲୁଣି । ସିଧାସଳଖ ଲମ୍ବାରାସ୍ତା । ରାସ୍ତାର ଦୁଇ ପଟେ ଧାନବିଲ । ରାସ୍ତା ଉପରୁ ଲୋକଙ୍କ ଯିବାଆସିବା କମି ଆସିଛି । ହଠାତ କଳାବତୀ ମୋ ହାତକୁ ଧରି ପକାଇଲେ । ମୁଁ

ଚାଲିବା ବନ୍ଦ କରି ଠିଆ ହୋଇଗଲି । ଆମେ ଦୁହେଁ ମୁହାଁମୁହିଁ ଠିଆ ହୋଇଗଲୁ । ଖୁବ୍ ଦୃଢ଼ତାର ସହିତ ମୁଁ ପଚାରିଲି—

"ହଁ, କଣ କହନ୍ତୁ ।"

ସେ ମୋ ହାତ ଛାଡ଼ିଲେ ନାହିଁ; ବରଂ ଆହୁରି ଦୃଢ଼ ଭାବରେ ମୋ ହାତକୁ ଦୋହଲାଇ ଦେଇ କହିଲେ—

"ମୁଁ ଆପଣଙ୍କୁ ଭଲ ପାଏ ।"

କଳାବତୀଙ୍କ ହାତର ଉତ୍ତାପରୁ ମୁଁ ତାଙ୍କ କାମନାଦଗ୍ଧ ହୃଦୟର ବାର୍ତ୍ତା ଅନୁଭବ କଲି ।

ମାତ୍ର ହସି ହସି ଲଘୁ ଭାବରେ ମୁଁ କହିଲି—

"ନିଶ୍ଚୟ ! ମୋତେ ତ ଆପଣଙ୍କର ଭଲ ପାଇବାର-ଇ-କଥା । ସ୍ୱାମୀଙ୍କର ବନ୍ଧୁ ହିସାବରେ ଆପଣ ତ ମୋତେ ଭଲପାଇବା ନିହାତି ଉଚିତ । ତା'ଛଡ଼ା ମୁଁ ତ ଅପଣଙ୍କର କିଛି କ୍ଷତି କରିନାହିଁ ଯେ ଆପଣ ମୋତେ ଘୃଣା କରିବେ !"

"ନା, ସେଥିପାଇଁ ନୁହେଁ । ଆପଣ ତାଙ୍କଠାରୁ ସୁନ୍ଦର ଆଉ ଭଲ ।"

ଏତିକି କହି ସେ ମୋ ପାଖକୁ ଖୁବ୍ ଲାଗି ଆସିଲେ । ମୋର ବେକରେ ତାଙ୍କର ଦୁଇ ବାହୁ ଜଡ଼ାଇ ମୋଠାରୁ ଚୁମ୍ବନ ଆଶାରେ ସେ ମୋତେ ଦୃଢ଼ ଭାବରେ ଆକର୍ଷି ଧରିଲେ । ତାଙ୍କର ନିଶ୍ୱାସ ପ୍ରଶ୍ୱାସ ଖୁବ୍ ଖର ଗତିରେ ଚାଲୁଥିଲା । ମୋତେ ଦୃଢ଼ ଭାବରେ ଧରି ରଖିଥିଲେ ମଧ୍ୟ ସେ ଖୁବ୍ ଅବଶ ଜଣାଯାଉଥିଲେ ଏବଂ ତାଙ୍କର ତନୁ-ଲତାରେ କାମନାର ଲକ୍ଷ ଫୁଲ ଫୁଟିଉଠିଲା । ମୁଁ ସୌରଭ ଅନୁଭବ କଲି ।

ମାତ୍ର ମୋର ନିଶ୍ୱାସ ପ୍ରଶ୍ୱାସ ଖୁବ୍ ସୁସ୍ଥ ଓ ସାଧାରଣ ଚାଲିଲେ ରହିଥିଲା ଏବଂ ମୋର ହୃଦୟ ଧୀର ସ୍ଥିର ଭାବରେ ତାଙ୍କ ହୃଦୟର ଦ୍ରୁତ ସ୍ପନ୍ଦନ ଅନୁଭବ କରି ପାରିଲା । ତା' ପରେ ମୁଁ ଅନୁଭବ କଲି ମୋର ମୁଣ୍ଡ ଓ ବକ୍ଷ ଉପରେ ତାଙ୍କର କରାଙ୍ଗୁଳିର ଚଞ୍ଚଳ ଚଳନ ସଞ୍ଚାଳନା । ଅନୁଭବରେ ମୁଁ ସମ୍ପୂର୍ଣ୍ଣ ପ୍ରକୃତିସ୍ଥ ଥିବା ହେତୁ ତାଙ୍କୁ ଆଘାତ ନ ଦେଇ, ଅତି ସହଜ ଭାବେ ତାଙ୍କ ଜାଲ ମଧ୍ୟରୁ ନିଜକୁ ଉଦ୍ଧାର କରି ପାରିଲି । କେବଳ ନିଜକୁ ଉଦ୍ଧାର କଲି ତା' ନୁହେଁ, ମୋର ଗୁପ୍ତ ପକେଟରୁ ପୋଲିଥିନ୍ ଥଳିରେ ଥିବା ଦଶଟଙ୍କିଆ ନୋଟଟିକୁ ମଧ୍ୟ ମୁଁ ତାଙ୍କ କରକମଳରୁ ଉଦ୍ଧାର କଲି ।

ବାନାମ୍ବର ମଧ୍ୟ ଆସି ଯାଇଥିଲେ । କଥାଟା ଆଉ ଆଗେଇବା ଭଲ ନୁହେଁ । ମାତ୍ର କଳାବତୀ ଅତି ଭଦ୍ରଭାବେ ଢଙ୍ଗେଇ କଣ୍ଠରେ କହିଲେ —

"ଦେଖନ୍ତୁ, ଆପଣ କବି ହୋଇ ପାରନ୍ତି । ମାତ୍ର ଟଙ୍କା ପଇସା ରଖିବାରେ ଖୁବ୍ ସାବଧାନ ହେବେ । ଗୁପ୍ତ ପକେଟରେ ବେଶି ଟଙ୍କିଆ ନୋଟ ଏପରି ଅସାବଧାନରେ ରଖିବେ ନାହିଁ । ନୋଟଟା ଯେପରି ପଦାକୁ ବାହାରିଥିଲା, ବାଟରେ ମୁଁ ନ ଧରି-ଥିଲେ କୁଆଡ଼େ ଯେ ପଡ଼ିଥାନ୍ତା !!"

ମୁଁ କହିଲି, "ଦେଖନ୍ତୁ ଆଜ୍ଞା ! ଖାଲି ନୋଟଟା ନୁହେଁ— ଆମେ ସମସ୍ତେ ବି ପଡ଼ିଥାନ୍ତେ । ଆପଣଙ୍କୁ ଧନ୍ୟବାଦ !"

ବାନାମ୍ବର ସବୁ ଶୁଣି ମନ୍ତବ୍ୟ ଦେଲେ—

"ସେଇଟା ସବୁଦିନେ ସେମିତିର ମ !! ବଡ଼ ଝିଅଲୋ ।"। କଳାବତୀ ହସିଦେଲେ ।

ମୋର ଆଉ ଉତ୍ତର ଦେବାକୁ କିଛି ନ ଥିଲା ! ଗମ୍ଭୀର ହୋଇ ଆମେ ତିନିହେଁ ଫେରିବାକୁ ଲାଗିଲୁ । କଳାବତୀଙ୍କ ପ୍ରେମର କଳାବଜାରରୁ ମୁଁ ଯେ, ମୋତେ ଓ ମୋର ଦଶ ଟଙ୍କିଆ ନୋଟଟିକୁ ବଞ୍ଚାଇଛି ସେଥିଲାଗି ଈଶ୍ୱରଙ୍କ ଉଦ୍ଦେଶ୍ୟରେ ପ୍ରଣିପାତ ହେଲି ।

ଫେରିଲୁ, ସେଇ ପୁରୁଣା ଛକ ଉପରେ । ସେମାନେ ଭିନ୍ନ ରାସ୍ତା ଧରିବେ । ବିଦାୟ ନେବା ପୂର୍ବରୁ ମୁଁ ବାନାମ୍ବରଙ୍କୁ ଠାରି ଧୀର ଭାବେ ଜଣାଇଲି—

"ରେଜାତକ ଗ୍ଯ' ଦେକାମୀଠାରୁ ଆଣିଛ ତ ଅବଶିଷ୍ଟ ଚଉଦ ଅଣା ?"

ବାନାମ୍ବର ହଠାତ୍ ଦୁଇ ହାତକୁ ବଢ଼ାଇ ତାଳିଟାଏ ମାରି ଏଡ଼େ ପାଟିରେ ରାସ୍ତାଟା ଉପରେ ଚିତ୍କାର କଲା—

"ଆଉ ଫେର ପଇସା ମାଗୁଚୁ ହଇ ରେ ? ଗୁଆ ଖାଉ ଖାଉ କୁଆଡ଼େ ଯେ ତମେ ଗଲ, ମୁଁ ତ ଖୋଜୁଛି । କଳାବତୀଙ୍କ ସଙ୍ଗରେ ଆଜିକ ସାନ୍ଧ୍ୟଭ୍ରମଣର ଦାମ୍ କଣ ଗୋଟାଏ ଟଙ୍କା ବି ହବ ନାହିଁ ? ହେଃ ହେଃ ହେଃ !"

ଦେଖ୍ ଭାଇ ଥଙ୍ଗାରେ କହିଲି, କିଛି ଭାବିବୁ ନାହିଁ । ହିଃ ହିଃ ହିଃ ।

କଳାବତୀ ଖିଲ ଖିଲ କରି ହସିଉଠିଲେ । ନମସ୍କାର ହୋଇ ସେମାନେ ଚାଲିଗଲେ ।

ମୋର ମୁଣ୍ଡ ବୁଲାଇ ଦେଲା । ସଂସାର !! ତୁମେ କେତେ ନିଷ୍ଠୁର !! ବାନାମ୍ବର ତୁମକୁ ସ୍ନେହ କରୁଥିଲା, ଶ୍ରଦ୍ଧା କରୁଥିଲା, ବିଶ୍ୱାସ କରୁଥିଲା, ଆଜି ବି ତୁମର ଇଜ୍ଜତ ରଖିବା ପାଇଁ ତୁମକୁ-ଇ ବଞ୍ଚାଇ ରଖିବା ପାଇଁ ବାନାମ୍ବର ଚେଷ୍ଟା କରି କରି ଅସ୍ତବ୍ୟସ୍ତ ହୋଇ ଉଠିଲାଣି । ଅଥଚ ତୁମେ ତା'କୁ ଏହି ପ୍ରତିଦାନ ଦେଇଛ

ସଂସାର !

ତୁମେ କଣ ଚାହଁ ନାହିଁ ଯେ ତୁମକୁ ଶ୍ରଦ୍ଧା କରେ ସେ ମଣିଷ ହୋଇ ରହୁ ବୋଲି



## ୨ ଆଦ୍ୟ ବସନ୍ତର କାହାଣୀ

ନିଦ ଭାଙ୍ଗିଗଲାଣି । ତଥାପି ବିଛଣାରେ ପଡ଼ିରହିଛନ୍ତି ରମାକାନ୍ତ—ନରେନ୍ଦ୍ରପୁରର ନବପ୍ରତିଷ୍ଠିତ କାଗଜ କାରଖାନାର ଆସିଷ୍ଟାଣ୍ଟ ଲେବର ଅଫିସର । ରବିବାରର ଅଳସ ଅପରାହ୍ନ । କାରଖାନା ବନ୍ଦ । ଆଜି ଦିନଟି କେବଳ ବିଶ୍ରାମର, କେବଳ ଆଳସ୍ୟର, କେବଳ ଆମୋଦର । କିନ୍ତୁ ରମାକାନ୍ତ ସପ୍ତାହର ଏଇ ଦିନଟି ପ୍ରତି ବଡ଼ ବିରକ୍ତ । କାହିଁକି ଆସେ ଏଇ ବେକାର ରବିବାର ? ସପ୍ତାହକର ବ୍ୟସ୍ତ, କ୍ଷିପ୍ର, କର୍ମଚଞ୍ଚଳ ଦିନଗୁଡ଼ିକ ବରଂ ବେଶ୍ ଭଲ ଲାଗେ । କାରଖାନାର ନାନାବିଧ କାର୍ଯ୍ୟରେ ବ୍ୟସ୍ତ ରହି ନିଜ କଥା ବି ଭାବିବାକୁ ବେଳ ନ ଥାଏ । ସକାଳ ସାତଟାରୁ ଦିନ ଗୋଟାଏ, ତା'ପରେ ପୁଣି ଦିନ ଦୁଇଟାରୁ ସନ୍ଧ୍ୟା ସାତଟା । ରମାକାନ୍ତ ଚୌଧୁରୀ ବସାକୁ ଫେରି ସ୍ନାନ କରନ୍ତି ଓ ଗଣ୍ଡିଏ ଖାଇଦେଇ ନିଶ୍ଚିନ୍ତ ଭାବେ କ୍ଲାନ୍ତଦେହ ଓ ମନ ନେଇ ବିଛଣାରେ ଶୋଇପଡ଼ନ୍ତି । ପୁଣି ଭାଙ୍ଗେ ନିଦ ପରଦିନ ସକାଳ ପାଞ୍ଚଟାରେ । ପୁଣି ସେଇ ପ୍ରସ୍ତୁତି, ପୁଣି ସେଇ ଉଦ୍ୟୋଗ, ପୁଣି ସେଇ କର୍ମତତ୍ପରତା, ବ୍ୟସ୍ତତା । ବେଶ ଚମତ୍କାର, ନିଜ କଥା ଭାବିବା ଲାଗି ; ଏଇ କର୍ମସୂଚୀରେ ଆଉ ବେଳ ବା କାହିଁ ? କିନ୍ତୁ ରବିବାର ? ଇସ୍ ! ସପ୍ତାହ ଯାକର ଅବଦମିତ ଦୁଶ୍ଚିନ୍ତା; ଅଭିଯୋଗ; ନୈରାଶ୍ୟ ଓ ବ୍ୟର୍ଥତା ଯେପରି ଏକାବେଳକେ

ବାହାର ଆସନ୍ତି ଅଚେତନ ମନର ଅତଳ ଗହ୍ୱର ମଧ୍ୟରୁ ।

ରମାକାନ୍ତ ବିଛଣାରେ ପଡ଼ିରହି ନିଜ କଥା ଚିନ୍ତା କରନ୍ତି । କିନ୍ତୁ କଣ ବା ଅଛି ଚିନ୍ତା କରିବାକୁ ? କେଉଁ ସୂତ୍ରରେ ବା ଚିନ୍ତା କରିବେ ସେ ନିଜ କଥା ? ବାହାରେ ପହିଲି ଫଗୁଣର ମଧୁ-ଉତ୍ସବ । ଫୁଲେ ଫୁଲେ ଭଅଁର ଆଉ ମହୁମାଛିଙ୍କ ଭିଡ଼ । ଘର ପାଖକୁ ଲାଗି ଆମ୍ବଗଛରୁ ଝରିପଡ଼ୁଛି ଶୁଖିଲା ବଉଳଗୁଣ୍ଡ । ରମାକାନ୍ତ ଝରକା ଖୋଲିଦେଲେ । ଅନତିଦୂରରେ ନଈ ବାଲିଗୁଡ଼ି । ଅପରାହ୍ନ ହଳଦିଆ ଖରାରେ ଗୁଡ଼ିଆଡ଼େ ସେପରି କି ଖାଲି ଉନ୍ମତ୍ତ କାମନାର ରଙ୍ଗ ଉକୁଟି ଉଠୁଛି । ରମାକାନ୍ତ ମୁଣ୍ଡ ଉପର ଟେବୁଲଟି ଉପରୁ ସିଗାରେଟ ଆଣି ନିଆଁ ଲଗାଇଲେ । ସେହିପରି ଶୋଇ ଶୋଇ ସେ ଉପରକୁ ଧୂଆଁ ଗୁଡ଼ ନିରୁଦ୍ଦେଶ୍ୟ ଭାବେ ଅସଂଖ୍ୟ ଧୂମକୁଣ୍ଡଳୀ ସୃଷ୍ଟି କଲେ । କିଛି ସମୟ ପରେ ସେ ପୁଣି କଡ଼ ଲେଉଟାଇ ଶୋଇଲେ । କୋଳ ପାଖର ତକିଆ ଉପରେ ଜୋର ଦେଇ ସେ ଅସହିଷ୍ଣୁ କଣ୍ଠରେ ବ୍ୟଥାର ଚିତ୍କାର କଲେ—

"ଓଃଃଃଃଃ !"

ପାଠ ପଢ଼ାରେ, ଜୀବନର ବାଇଶିଟି ବର୍ଷ କଟିଗଲା । ବାର ବର୍ଷ ହେବ ସେ ଟିଉସନ୍ କରି ପାଠପଢ଼ା ଆରମ୍ଭ କରିଥିଲେ । ଦୁଇ ଓଳି ଟିଉସନ୍ ନ କଲେ ଦୁଇ ଓଳି ଖାଇବାକୁ ମିଳେନାହିଁ । ମାଗିଯାଚି କରି ବହି ପଢ଼ି ସେ ପରୀକ୍ଷା ଦିଅନ୍ତି, ପାସ୍ ବି କରନ୍ତି । ଚାରିଟାବେଳେ କଲେଜରୁ ଫେରି, ଜଳଖିଆ ନ ଖାଇ, ଚାଲିଚାଲି ମାଇଲଏ ବାଟରେ, ଦୁଇଟି ପିଲାଙ୍କୁ ପଢ଼ାଇ ଦେଇ ଆସନ୍ତି । ଖାଲି ଗୋଡ଼ରେ ଚାଲି ଚାଲି, ତଳିପାରୁ ଚାଲ ଛାଡ଼ୁଛି । ଦୁଇ

ମୋଗାରେ ଗୁଡ଼ାଏ ଆଙ୍ଗୁଠି ନଖଶୂନ୍ୟ ହୋଇଛି । ଛଅ ବର୍ଷ— ଦୀର୍ଘ ଛଅ ବର୍ଷର ଗଭୀର ସାଧନା—ନିର୍ମମ ତପସ୍ୟା !!

ହଁ, ତପସ୍ୟା ନୁହେଁ ତ ଆଉ କଣ ? ନେତ୍ରନା ତପସ୍ୟା !!

ରମାକାନ୍ତ ପୁଣି ଥରେ ଆଉ କଡ଼ ମାଡ଼ ଶୋଇଲେ । ତପସ୍ୟାରେ ଅଛି ସିଦ୍ଧି, ଅଛି ଆତ୍ମ-ସନ୍ତୋଷ—ଅଛି ଆତ୍ମାନୁଭୂତି, ଅଛି ଆତ୍ମତ୍ୟାଗର ଆତ୍ମନିପୀଡ଼ନର ଉଦାର ଆନନ୍ଦ, ଅଛି ଆତ୍ମୋତ୍କର୍ଷତାର ଅନନ୍ତ ବ୍ୟାପ୍ତି—ଅସୀମ ବିସ୍ତାର । କିନ୍ତୁ ଦରିଦ୍ର ଘରର ନିରୁପାୟ ନିଷ୍ଠୁର କର୍ମସାଧନା ପଛେ ପଛେ ଲାଗି ରହିଛି ଆତ୍ମପ୍ରବଞ୍ଚନା, ଦୈନ୍ୟବୋଧ, ଆତ୍ମସଙ୍କୋଚ ଓ ଆତ୍ମ-ନିଗ୍ରହର କରୁଣ ବିଫଳତା । ରମାକାନ୍ତ ବିରକ୍ତିରେ, ଶେଷ ହୋଇ ଆସିଥିବା ସିଗାରେଟଟିକୁ ନିଆଁ ଆଡ଼ୁ କାନ୍ଥରେ ଜୋର୍ କରି ମାଡ଼ି ଲିଭାଇ ଦେଲେ ।

"ନାଃ"—ଆଉ ସହିହେବ ନାହିଁ ।

ଆଉ କି ଶୋଇ ହେବ ନାହିଁ । (ବାସ୍ତବିକ ଅଳସୁଆ ମୁଣ୍ଡରେ ହିଁ ରାଜ୍ୟଯାକର ଭୂତଙ୍କର କାଣ୍ଡକାରଖାନା) ବରଂ ଖଣ୍ଡିଏ ବହି ପଢ଼ାଯାଉ ଶୋଇ ଶୋଇ । ଖଣ୍ଡିଏ ଓଡ଼ିଆ ଉପନ୍ୟାସ ସେ ଆଜକୁ ମାସେ ହେଲା ଆରମ୍ଭ କରିଛନ୍ତି, "ଅମୃତର ସନ୍ତାନ" । ବହିଟା ତ ସରୁନାହିଁ । ଚଞ୍ଚଳ କି ସରୁନାହିଁ ଏଇ କୁତ୍ସିତ, ଅଳସ, ନିର୍ଜନ ଜୀବନର ରବିବାରଟାର, ଅଳସ ଅପରାହ୍ଣ । ରମାକାନ୍ତ ବହି ଖୋଲିଲେ । ତେଷଠି ପୃଷ୍ଠା । ହଜାରେ ପୃଷ୍ଠାର ବହି । କମା ତେଷଠି ପୃଷ୍ଠା ପଢ଼ା ହୋଇଛି ? ରମାକାନ୍ତ ଯଥାସମ୍ଭବ ମନକୁ ଦୃଢ଼ କରି ସ୍ଥିରଚିତ୍ତଭଙ୍କ ଚିତ୍ତରେ ପଢ଼ା ଆରମ୍ଭ କଲେ । ମାତ୍ର

ଗୋଟିଏ ଆଉ ପଡ଼ିଛନ୍ତି କି ନାହିଁ, ତାଙ୍କର ହଠାତ୍ ମନେ ହେଲା ବହିଟିର ନାମକରଣ ଅମୃତର ସନ୍ତାନ କାହିଁକି ହେଲା ?

ସତକଥା – କାହିଁକି ହେଲା ? ଅମୃତର ସନ୍ତାନ ଅର୍ଥ କଅଣ ? ତାଙ୍କ ମନରେ ତାଙ୍କ ପିଲାଦିନର ଗୋଟିଏ ଦୃଶ୍ୟ ଖେଳିଗଲା । ସେ ନି. ପ୍ରା. ସ୍କୁଲରେ ପଢ଼ୁଥାନ୍ତି । ପ୍ରଥମେ ଯେଉଁଦିନ ସେ ଦେବତା ଓ ଅସୁରମାନଙ୍କର ସମୁଦ୍ର ମନ୍ଥନ କଥା ପଢ଼ିଲେ, ସେହି-ଦିନ ହିଁ ମାଷ୍ଟ୍ରେ ତାଙ୍କୁ "ଅମୃତ" ଶବ୍ଦର ଅର୍ଥ କହି ଦେଇଥିଲେ । ରମାକାନ୍ତ ସେଇ ଦିନୁଁ ମନେ ମନେ ଅମୃତ କି ଭଳି ଜିନିଷ, ବୁଝି ପାରିଛନ୍ତି । ଯଦିଓ କଅଣ ସେ ବୁଝିଛନ୍ତି ତାହା ବର୍ଣ୍ଣନା କରି ପାରିବେ ନାହିଁ । କିପରି କରିବେ ? "ଅମୃତ" ତ ବଡ଼ କଥା । ଚିନି କିପରି ଲାଗେ, ତାକୁ କଣ ବର୍ଣ୍ଣନା କରି ବୁଝାଇ ହେବ ? ତେବେ ଉପମାଦ୍ୱାରା-ଇ ସେ ଅମୃତର ସ୍ୱାଦ ଭଳି ଏକ ଅପୂର୍ବ ସ୍ୱାଦ ବହୁବାର ଅନୁଭବ କରିଛନ୍ତି । ସେହିଦିନ ସ୍କୁଲରୁ ଆସି ଘରେ ସେ ପାଚିଲା ଅମୃତଭଣ୍ଡା ଖାଇଥିଲେ । ତା' ଆଗରୁ ସେ ବହୁବାର ଅମୃତଭଣ୍ଡା ଖାଇଛନ୍ତି । ମାତ୍ର ସେହି ଦିନ ହିଁ ଅକସ୍ମାତ ଭାବରେ ସେ ସେଥିରୁ ଏକ ଅପୂର୍ବ ସ୍ୱାଦ ଏବଂ ଏକ ଅପୂର୍ବ ଘ୍ରାଣ ଉପଭୋଗ କଲେ । ତାହା ନିଶ୍ଚୟ ଅମୃତର ସ୍ୱାଦ ଓ ଅମୃତର ବାସନା ଭଳି ।

ସେଦିନ ଅମୃତ ଖାଇ ସେ ଏତେ ଭୋଳ ହେଲେ ଯେ, ନିଜର ସାନ ଭାଇ ଓ ଭଉଣୀମାନଙ୍କଠାରୁ ତାଙ୍କ ଭାଗ ଅମୃତଭଣ୍ଡା ବଳାତ୍କାରରେ ଛଡ଼ାଇ ସେ ଖାଇବାକୁ ଲାଗିଲେ । ଆଉ ସେମାନଙ୍କର ବିକଟ ଚିତ୍କାରରେ ଘରୁ ଭାଇ ବାହାରି ଆସି ରମାକାନ୍ତଙ୍କୁ ଠାଙ୍କେ ଛେଚିଥିଲେ । ରମାକାନ୍ତ ପ୍ରାଣ ବିକଳରେ

ଦୌଡ଼ୁ ଦୌଡ଼ୁ, ତଳେ ଝୁଣ୍ଟି ପଡ଼ିଲେ । ତାଙ୍କର ନାକ ଦଣ୍ଡା ଛିଣ୍ଡି ଯାଇଥିଲା ।

ହଠାତ୍ ସେ ନିଜ ନାକର ଅଗ୍ରଭାଗରେ ନିଜ ଅଜାଣତରେ ଥରେ ହାତ ବୁଲାଇ ଆଣିଲେ । ପଗ୍‌ଗଣ୍ଠା ସେତେବା ଆଜି ପର୍ଯ୍ୟନ୍ତ ଅଛି !!

ତେବେ ସେହିଦିନୁଁ ତାଙ୍କର ଧାରଣା ହୋଇଛି ଯେ ଏଇ "ଅମୃତ"ଟି ଜୀବନରେ ବଡ଼ ଲୋଭନୀୟ ଜିନିଷ । ସେଇ "ଅମୃତ"କୁ ପୁଣି ପରସ୍ପରଠାରୁ ଛଡ଼ାଇ କରି ଖାଇବାକୁ ହୁଏ । ଛଡ଼ାଇ ନ ଖାଇଲେ ସେଥିରୁ ଠିକ୍ ଅମୃତ-ସ୍ୱାଦ ଆସେ ନାହିଁ । ଅଥଚ ଛଡ଼ାଇ ଖାଇଲେ ହିଁ ନାକଦଣ୍ଡା ହେଉ ବା ବେକଦଣ୍ଡା ହେଉ, ଯେ କୌଣସି ସ୍ଥାନରେ ପ୍ରଚଣ୍ଡ ଆଘାତ ପାଇବାକୁ ହୁଏ । ଠିକ୍ ଯେମିତି ଦେବତା ଓ ଅସୁରଙ୍କ ଭିତରେ ଅମୃତ-ବଣ୍ଟନ ବେଳେ ରାହୁ ବେକରେ ସୁଦର୍ଶନଚକ୍ରର ଚୋଟ ବସିଥିଲା !!

ରମାକାନ୍ତଙ୍କ ମନ ଭିତରେ ବାଲ୍ୟକାଳର ଆଉ ଗୋଟିଏ କରୁଣସ୍ମୃତି ମୁଣ୍ଡ ଟେକି ଉଠିଲା । ଥରେ ସେ ଗୋଟିଏ ଧନୀ ମାରୁଆଡ଼ି ପିଲା ହାତରୁ ଗୋଟିଏ ବଡ଼ ଘିଅ ମିଠେଇ ଛଡ଼େଇ କରି ଖାଇ ଦେଇଥିଲେ । ଧନୀ ମାରୁଆଡ଼ି ପିଲାଟି କାନ୍ଦକାନ୍ଦ ତା ବାପ ଆଗରେ କହିଲା । ସଙ୍ଗେ ସଙ୍ଗେ ଦୁଇ ଚାରି ଜଣ ଲୋକ ରମାକାନ୍ତଙ୍କୁ ଶୂନ୍ୟେ ଶୂନ୍ୟେ ଟେକି ସେଇ ମାରୁଆଡ଼ି ଘରକୁ ନେଇଗଲେ । ଦାଣ୍ଡରେ ବହୁ ଲୋକ ଜମା ହୋଇଛନ୍ତି । ମାରୁଆଡ଼ିଟିର ଗୁମାସ୍ତା ଆସି ରମାକାନ୍ତଙ୍କ ଗାଲରେ ମାରିଲା ଏକ ବ୍ରହ୍ମଚାପୁଡ଼ା । ରମାକାନ୍ତଙ୍କ କାନମୁଣ୍ଡା ଭାଁ ଭାଁ ଡାକିଲା,

ମୁଣ୍ଡ ବୁଲାଇ ଦେଲା । ମାରୁଆଡ଼ିଟି ବଡ଼ ପାଟିରେ ଚିତ୍କାର କଲେ—

"ଶାଲା-- ଅସୁର କା ବଚ୍ଚା—ଅବେ, ମିଠାଇ ମାଗି କରି ଖାଇଲ୍ ନାହିଁ ? ଲୁଡ଼ୁଛୁ କାହିଁକି ?"

ଜମିଥିବା ଲୋକଙ୍କ ଭିତରୁ ଜଣେ କହିଲା—

'ଶଳା ଟୋକା, ବଡ଼ ଡାହାଣା ଅଛି ।"

ମାଡ଼ ଖାଇ, ଅପମାନ ପାଇ, କାନ୍ଦି କାନ୍ଦି ସେଦିନ ରମାକାନ୍ତ ଅର୍ପିତଙ୍କ ଘର ଘରକୁ ଫେରିଥିଲେ । ସେହିଦିନୁ ଅସୁରଙ୍କ ପ୍ରତି ତାଙ୍କର ମନରେ ଭାରି ସହାନୁଭୂତି ହେଲା । ସେ ଭାବିଲେ—ଏହି ଅସୁରଙ୍କ ବଂଶରେ ବୋଧହୁଏ ଆମ୍ଭମାନଙ୍କର ଜନ୍ମ । ଆମେ ସବୁ ସେଇ ଅସୁରକା ବଚ୍ଚା । ଏଇ ମାରୁଆଡ଼ିଙ୍କ ଭଳି ବଡ଼ଲୋକମାନେ ବୋଧହୁଏ ଦେବତା ! କିନ୍ତୁ କାହିଁକି—କାହିଁକି ସେମାନେ ଅମୃତ ଖାଇବେ ଏକା ଏକା ? ସମୁଦ୍ର ମନ୍ଥନରେ ବେଶି କାମ କରିଛନ୍ତି କିଏ ? ଆହା ବିଚରା ରାହୁ !! ସବୁ ଅସୁରଙ୍କୁ ଭୁଲାଇ, ଲୁଚାଇ, ବିଷ୍ଣୁ ଦେବତାଙ୍କୁ ଅମୃତ ଖୁଆଉଥିଲେ । ରାହୁ ବିଚରା ଜାଣିପାରି ଲୋଭରେ ତାଙ୍କ ମେଳରେ ଠିକେ ବସିଗଲା । କିଅଣ ଏପରି ଭୁଲ ହୋଇଗଲା ? ରାହୁ ଟିକିଏ ଅମୃତ ଖାଇଯାଇ ଥିଲେ କଣ ଅମୃତଭଣ୍ଡାର ସରିଯାଇଥାନ୍ତା ? ବିଷ୍ଣୁ ରାଗିଯାଇ ତା' ବେକରେ ସୁଦର୍ଶନଚକ୍ରର ଶ୍ରେଷ୍ଠ ବସାଇ ଦି ଫାଳ କରି ହାଣି ଦେଲେ । ଠିକ୍ ଯେମିତି ମାରୁଆଡ଼ି ଗୁମାସ୍ତାର ବ୍ରହ୍ମଚାପୁଡ଼ା ରମାକାନ୍ତଙ୍କ ଗାଲ ଓ କାନ ମୁଣ୍ଡାରେ !! କିନ୍ତୁ ରାହୁର ସେ ଅମୃତ କ୍ଷୁଧା ମେଣ୍ଟି ନାହିଁ ! ପୁରୁଷ ପୁରୁଷ ଧରି ଆଜି ପର୍ଯ୍ୟନ୍ତ ରାହୁ ଖାଲି ହାଇଁପାଇଁ ହେଉଛି । ଅମୃତ ଲାଗି ଉହାଳବିକଳ ହେଉଛି ।

ରମାକାନ୍ତ ମନେକଲେ ସତ, ବୋଧହୁଏ ଜନ୍ମରୁ ଏଇ ବନ୍ଧୁ କାଳାରେ ଜନ୍ମ ହୋଇଛନ୍ତି । ତେଣୁ ତାଙ୍କ ଭିତରେ ବାହାର ମେଳ ଚରିତ୍ର ଅତୃପ୍ତ ଉଦ୍‌ବେଳିତ ଅମୃତର କ୍ଷୁଧା ଦିଶି ରହିଛି । ସେ କ୍ଷୁଧା ସେ ତୃଷା ମେଣ୍ଟି ନାହିଁ; ଦିନୁଁଦିନ ବଢ଼ୁଛି କେବଳ ବଢ଼ି ଚାଲିଛି ।......

......ରମାକାନ୍ତ ତଳକୁ ମୁହଁମାଡ଼ି ଶୋଇଲେ । "ମୁଁ"— ଅମୃତ !!'

ପିଲାଦିନେ ଥରେ ତାଙ୍କ ବଡ଼ଭାଇ ଦୁଇଟି ସିଲେଟ୍ କମଳା ବଜାରରୁ କିଣି ଘରକୁ ସାନ ଭାଇଭଉଣୀମାନଙ୍କ ଲାଗି ଆଣିଥିଲେ । ମାଆ ତାଙ୍କର ଚୋପା ଛଡ଼ାଇ ଦୁଇ ଦୁଇଟି ଚରୁଡ଼ା ସବୁ ପିଲାମାନଙ୍କ ହାତରେ ଧରାଇଦେଲେ । କେଡ଼େ ନରମ ପାଖୁଡ଼ା ଭଳି ସେଇ ଚରୁଡ଼ାଗୁଡ଼ାକ ! ! କି ସୁନ୍ଦର ଅମୃତ ଭଳି ରଙ୍ଗ ! ଠିକ୍ ପାଚିଲା ଅମୃତଭଣ୍ଡା ରଙ୍ଗ ଭଳି କିମ୍ବା ତା ଠାରୁ ସୁନ୍ଦର ! କି ସୁନ୍ଦର ଅମୃତ ବାସନା ! ! ଆଉ କି ସୁନ୍ଦର ଅମୃତ ରସ ତା' ଭିତରେ ! ମନ ହୁଏ ଏକାଥରକେ ଟୋକେଇଏ ସିଲେଟ୍ କମଳାର ଚରୁଡ଼ାକୁ ପାଟି ଭିତରେ ରଖି, ଚୁପି ଚୁପି, ଆଖି ବୁଜି ଅମୃତ ରସ ପିଇଯିବାକୁ ! ମାତ୍ର ହାୟ ! ଦୁଇଟି ଚରୁଡ଼ା ମାତ୍ର ! ଏକାଥରକେ ଖାଇ ନ ଦେଲେ, ପାଟି ଭିତରେ ବହୁତ ରସ ଜମିବ ନାହିଁ । ବହୁତ ରସ ନ ଜମିଲେ ଅମୃତ ସ୍ୱାଦ ମିଳିବ ନାହିଁ । କିନ୍ତୁ ଏକାଥରକେ ପାଟି ଭିତରେ ଦୁଇଟାଯାକ ଚରୁଡ଼ା ସେ ରଖିପାରିଲେ ନାହିଁ । କାରଣ ତା' ହେଲେ, ମିନିଟିଏ ବି ଲାଗିବ ନାହିଁ ଅମୃତର ସ୍ୱାଦ ସରିଯିବାକୁ ! ଭାଇ-ଭଉଣୀମାନେ ଟିକେ ଟିକେ କରି ଚରୁଡ଼ା ଦୁଇଟିକୁ ଖାଇବାକୁ

ଲାଗିଲେ ଡାଣ୍ଡ, ଘର, ବାରଣ୍ଡା ସବୁଆଡ଼େ ବୁଲି ବୁଲି । ଦୁଇଟି କମଳା ତରୁଡ଼ାକୁ ଶେଷ କରିବାକୁ ଅଧଘଣ୍ଟାଏ ଲାଗିଗଲା । ଶେଷରେ ସରିଗଲା । ମାତ୍ର ପୁଣି ବଢ଼ିଗଲା ଅମୃତ ଭୋଗର ତୃଷା । ଶାନ୍ତ ଗୁଣ ଲୋଭରେ ରମାକାନ୍ତ ଆଉ ତାର ଭାଇଭଉଣୀ ଦୁଆରେ ପଡ଼ିଥିବା ଚୋପାଗୁଡ଼ାକ ଗୋଟାଇ ଆଣି ତାକୁ ଚୋବାଇ ଚୋବାଇ ଅମୃତ ପିଇଲେ । ସେଇ ଚୋପାଗୁଡ଼ାକ ଲାଗି ପୁଣି ଚାଲିଲା ଆପଣା ଆପଣା ଭିତରେ ପ୍ରତିଦ୍ୱନ୍ଦ୍ୱିତା, ବାଡ଼ଆବାଡ଼ି, ଛଡ଼ା ଛଡ଼ି, କନ୍ଦାକନ୍ଦି, ପିଟାପିଟି ।

ତା'ପରେ ବହୁ ଦିନ ଧରି ସେ ଆଉ କମଳାଲେମ୍ବୁ ଖାଇ ନାହାନ୍ତି । କିନ୍ତୁ ବହୁ ଜାଗାରେ ସେ ପରିତ୍ୟକ୍ତ କମଳାଲେମ୍ବୁର ଚୋପା ଲୁଚାଇ କରି ଗୋଟାଇ ଆଣିଛନ୍ତି । ଆଉ ଅନ୍ତରାଳରେ ତାକୁ ଚୋବାଇ ଚୋବାଇ ସେଥିରୁ ଅମୃତର ସ୍ୱାଦ ଭୋଗ କରିଛନ୍ତି ।

ଖାଲି ସେତିକ ନୁହେଁ, ଶୀତଦିନେ ସକାଳୁ ପଖାଳ ଖାଇ ସ୍କୁଲକୁ ଯିବା ଲାଗି ଇଚ୍ଛା ହୁଏ ନାହିଁ । ମାଆ ଉପରେ ରାଗ ରାଗ ହୋଇ ସେ ଅଖିଆ ଯାନ୍ତି ସ୍କୁଲକୁ । କିନ୍ତୁ ଶେଷ ପିରିଅଡ଼୍ ଆଡ଼କୁ ପେଟରେ ନିଆଁ ଜଳେ । ଘରୁ ପଇସାଟିଏ ଚୋରି କରି ଆଣିଥାନ୍ତି ସଙ୍ଗରେ । ଚିନାବାଦାମ କିଣନ୍ତି । ପଇସାକର ଚିନାବାଦାମ କେତେଯାଏ ବା ହେବ ! ଭୋକିଲା ପେଟରେ ରମାକାନ୍ତ ବକଳରେ ଚିନାବାଦାମ୍ ଚୋବାନ୍ତି । ଠିକ୍ ଅମୃତ ପରି ଲାଗେ । ଅମୃତ ଖାଉ ଖାଉ ରମାକାନ୍ତ ଅମୃତ ଚୋପାକୁ ମଧ୍ୟ ଅମୃତ ସାଥିରେ ମିଶାଇ ଚୋବାନ୍ତି । ଚିନାବାଦାମର ଶସ ଆଉ ଚୋପା ସେ ଏକ ଅପୂର୍ବ

ସୁଆଦ ! ଦେଶକର ପେଟରେ ମିଳା ଭଳି ଅମୃତର ସ୍ୱାଦ ମିଳେ !!!...

ଅମୃତ ନା ଛେନା !!! ଇସ୍, ବଡ଼ କଦର୍ଯ୍ୟ ! ବଡ଼ କୁତ୍ସିତ ! ବଡ଼ ଦୟନୀୟ !! କି ଲୋକ ଏହିଭଳି ବଞ୍ଚି ରହିବାରେ ଏଇ ଧରଣୀ ଉପରେ ? ଏ ଜୀବନ ବଞ୍ଚିକି କପର ଏତେଦିନ !! କାହିଁକି ବା ବଞ୍ଚିଲି ? ରମାକାନ୍ତ ବିଛଣା ଉପରେ ଅସ୍ଥିରଭାବେ ଗଡ଼ିଲେ, ଗୋଡ଼ ଗୁଡ଼ିଲେ, ହାତ ବାଡ଼େଇଲେ ।

"ହୁଃଉଃଃଃ" କୁନ୍ଥେଇ କୁନ୍ଥେଇ ପାଟିବାଟେ ନିଶ୍ୱାସ ଗୁଡ଼ିଲେ ।

ଖାଲି କଣ ସେଇ ଏକା ବଞ୍ଚିଛନ୍ତି ? ତାଙ୍କର ପରି ଆଉ ପାଞ୍ଚଟି ଭାଇଭଉଣୀ ବି ଅମୃତର ଶେପା ଖାଇ ଖାଇ ଏପର୍ଯ୍ୟନ୍ତ ବଞ୍ଚି ରହିଛନ୍ତି । ବଡ଼ ଭାଇ ଗ୍ରାମ ହାଇସ୍କୁଲର ଶିକ୍ଷକ । ସାନ ଭାଇଟି କଲେଜରେ ପଢୁଛି । ନ ପଢ଼ି ସେ..କଣ କରିବ ? ଘରେ ତା' ପାଇଁ କି କାମ ଅଛି ? ୧୫ ବର୍ଷରେ ମାଟ୍ରିକ୍ ପାସ କଲା । କି ଚାକରି କରିବ, ସେ ପିଲାଲୋକ ? ଅମୃତର ଶେପା ଖାଇ ଖାଇ ସେ ବଢ଼ୁଛି । ସଜନାଖାଡ଼ ପରି ହାତ ଗୋଡ଼ କାଉଁରିଆ କାଠି । ପାଠ ପଢ଼ିବା ଛଡ଼ା ଆଉ ଉପାୟ ନାହିଁ । ଦୁଇଟି ଭଉଣୀ ଗୁରି ପାଞ୍ଚ ବର୍ଷ ଧରି ବିବାହଯୋଗ୍ୟା ହୋଇ ଘରେ ରହିଲେଣି । କିନ୍ତୁ କପରି ବିଭା ହେବେ ?

ହଁ, କପରି ବିଭା ହେବେ ?? ରମାକାନ୍ତ ଦୁଇ ପାପୁଲିରେ କପାଳଟାକୁ ଗୁପି ଧରିଲେ । ଘରୁ ମାଆ ପାଖରୁ ଘନ ଘନ ଛିଟି ଆସୁଛି । କୋଉଠି କିଛି ଠିକଣା କଲୁ ରମାକାନ୍ତ ? କେତେଦିନ

ଆଉ ଏମାନଙ୍କୁ ଶିଖାଇବ ? ଝିଅ ଝିଅ । ଘରେ ଝିଅ ନାହିଁ ସତ, କାଂଭୁ ଝିଅ ତ ଅଛନ୍ତି !

କିନ୍ତୁ ଠିକଣା ବୁଝିଛନ୍ତି ବହୁତ । ଠିକଣା କରିପାରି ନାହାନ୍ତି ରମାକାନ୍ତ ..।

ବଡ଼ ଭାଇ । ବୃଦ୍ଧିଗି ପାଖାପାଖି ହେଲାଣି ବୟସ । ଭଉଣୀ-ମାନଙ୍କୁ ବାହା ନ ଦେଲା ପର୍ଯ୍ୟନ୍ତ ରହିବାଲାଗି ଉପଯୋଗୀ ଦୁଇ ବଖରା ଘର ତୋଳି ନ ପାରିବା ପର୍ଯ୍ୟନ୍ତ ନିଜେ ବିବାହ କରିବେ ନାହିଁ ବୋଲି ପଣ କରି ଯାଇଛନ୍ତି । ତାଙ୍କରି ପଣ ରହୁଛି । କିନ୍ତୁ ବରପଣ ଯୋଗାଡ଼ ହୋଇ ପାରି ନାହିଁ । ସାରା ଜୀବନ ସେ ବୋଧହୁଏ ଏହିଭଳି ରହିଯିବେ । ତାଙ୍କ ଦ୍ୱାରା ଏକାକୀ ପଣରକ୍ଷା ହୋଇପାରିଲା ନାହିଁ ।- ବର୍ତ୍ତମାନ ସେଇ ପଣ ସ୍ୱୟଂ ରମାକାନ୍ତଙ୍କ ଉପରେ ବି ପଡ଼ୁଛି । ବଡ଼ ଭାଇଙ୍କ ପ୍ରତି ଶ୍ରଦ୍ଧାରେ ଭକ୍ତିରେ ସହାନୁଭୂତିରେ ଅନ୍ତର ପୂରିଯାଏ, ହୃଦୟ ତରଳି ଯାଏ ।

କିନ୍ତୁ ଆଜି-!! ସେହି "ପଣ" ନିଜ ଉପରେ ପଡ଼ୁଛି । ଭଉଣୀମାନେ ଆଗ ବାହାହେବେ । ତା' ପଛେ ପଛେ ଘର ତୋଳାଯିବ । ତା' ପରେ ବାହାହେବେ ବଡ଼ଭାଇ । ସବା ପଛକୁ ପଡ଼ିବ ତାଙ୍କ ପାଳି । ରମାକାନ୍ତଙ୍କର ମନେ ହେଲା ସେ, ଆଉ ତାଙ୍କ ବଡ଼ଭାଇ ସତେ ଅବା ଦୁଇଟି ବଳଦ ! ଆଉ ତାଙ୍କ ଦୁହିଁଙ୍କ କାନ୍ଧରେ ଲଦି ହୋଇ ପଡ଼ିଛି ଏହି ସଂସାରର ଜୁଆଳି । ତାଙ୍କ ପରିବାରର ସେଇ ଲଙ୍ଗଳ ଉପରେ ଟାଣ ହାତମୁଠା ପକାଇ ସେପରି କି ଗୋଟିଏ ପାହାଡ଼ିଆ ଭୂମି ଉପରେ ହଳ କରୁଛି । ତାଙ୍କର ଦମ୍ ବନ୍ଦ ହୋଇ ଆସିଲା । ସେ ନିଃଶ୍ୱାସ ନେବାରେ ହଠାତ୍ କଷ୍ଟ ଅନୁଭବ କଲେ ।

"ଉଃ କି କଷ୍ଟ !!

ମାସକୁ ଦେଢ଼ ଶତ ଟଙ୍କା ରୋଜଗାର ।

ପଚାଶଟି ଟଙ୍କା ସେ ପଠାନ୍ତି କଲେଜରେ ପଢ଼ୁଥିବା ସାନ ଭାଇଟି ପାଖକୁ । ଘରେ ଗୁଣ୍ଠେ ବୋଲି ଜମି ନାହିଁ । ଘରକୁ ପଠାନ୍ତି କୋଡ଼ିଏଟି ଟଙ୍କା ବଡ଼ଭାଇଙ୍କ ଉପାର୍ଜନ ସଙ୍ଗେ ମିଶି ଘରେ ସମସ୍ତଙ୍କୁ ଦାନା କନା ଯୋଗାଇବାରେ ବି ଏତିକି ଟଙ୍କା କୁଳାଏ ନାହିଁ । କିନ୍ତୁ କୁଆଡ଼ୁ ଆସିବ ଆଉ ଟଙ୍କା ??

ବୟସ ଆସି ତିରିଶ ପାଖାପାଖି ହେଲାଣି । ଏତେଦିନ ଧରି ଖାଆଲି ବ୍ୟର୍ଥତା, ଖାଆଲି ଗ୍ଳାନି, ଖାଆଲି ଅନୁତାପ ।

ଦିନେ ଦିନେ ରାତି ଅଧରେ ଅକାରଣ ଅଶ୍ରୁନିଦ ଭାଙ୍ଗିଯାଏ । ଯେତେ ଚେଷ୍ଟା କଲେ ବି ଆଉ ନିଦ ହୁଏ ନାହିଁ । ଗୁମ୍ଫ ଦମ୍ ଦମ୍ ମନେହୁଏ । ଦେହ ସାରା କମ୍ପି ଉଠେ । ଭିତରର ଶିରାଗୁଡ଼ାକ ଟାଣି ଉଠନ୍ତି । ସଙ୍ଗେ ସଙ୍ଗେ ମନଟା ବି ମାତି ଉଠେ । କବାଟ ଖୋଲି ବାହାରକୁ ଆସନ୍ତି । ଚାରିଆଡ଼େ ଜହ୍ନ-ଆଲୁଅର ଲହଡ଼ୀ ଖେଳୁଛି । ଅଳ୍ପ ଦୂରରେ ବରଗଛ ଗୋଳୁଣ୍ଡାଗଛ ଉପରେ ଦିନ ଭ୍ରମରେ କାଉଗୁଡ଼ାକ କାଆ କାଆ କରୁଚନ୍ତି । ଘରକୁ ଲାଗି ଶ୍ରମିକପଲ୍ଲୀ । ସାନ୍ତାଳ ଯୁବକ ଓ ଯୁବତୀଙ୍କର ନାଚ ଗୀତରେ, ବାଜା ଶବ୍ଦରେ ଜହ୍ନ ଆଲୁଅ ଥରି ଉଠୁଛି । ଦିନଯାକ ହାଡ଼ଭଙ୍ଗା ଖଟଣୀ । ରାତିଯାକ ନାଚ, ଗୀତ ଆଉ ହାଣ୍ଡିଆ । ପବନରେ ଭାସିଆସୁଛି ନାରୀ ଆଉ ପୁରୁଷକଣ୍ଠର ମିଳିତ ହାସ ପରିହାସର ପ୍ରମତ୍ତ ମୂର୍ଚ୍ଛନା । ଜ୍ୟୋତ୍ସ୍ନା ରାତିର ହାଲୁକା ବାୟୁ ମଣ୍ଡଳରେ ମିଶି ରହିଥାଏ ଯେପରି ଆଦିମ ସ୍ତ୍ରୀ ପୁରୁଷଙ୍କର ମିଳନ ତୃଷା !! ରକ୍ତକୁ ଉତ୍ତେଜିତ କରିବାର, ଶିରାକୁ ଉତ୍ତପ୍ତ

କହିବାର ଆଉ ମନରେ ସ୍ପୃହା ଜାଗ୍ରତ କରିବାର ଏକ ଦୁର୍ବାର ଆବେଗ, ପ୍ରଚଣ୍ଡ ଉନ୍ମାଦନା !!! ଏହିଭଳି ଜହ୍ନରାତିରେ ଏକା ଶୋଇ ହୁଏ ନାହିଁ । ଏକା ବୁଲି ହୁଏ ନାହିଁ । ଏକା ଏକା ଉଜାଗର ବି ରହି ହୁଏ ନାହିଁ । ଖାଆଲି ଉହନକବକଲ ଖାଆଲି ତୃଷା । ରମାକାନ୍ତ ଢୋକେ ଥଣ୍ଡା ପାଣି ପିଇ କାନମୁଣ୍ଡାରେ ଥଣ୍ଡା ପାଣି ମାରି ପୁଣି ବିଛଣା ଉପରକୁ ଆସନ୍ତି···।

କିନ୍ତୁ ବିବାହ ? ଅସମ୍ଭବ !!! ଜୀବନରେ ଯେତେ ଯାହା ଆବଶ୍ୟକ ସବୁ ଅସମ୍ଭବ !!

ବିବାହ କଣ ଜୁଟୁ ନାହିଁ ? ପ୍ରତି ମାସରେ ଗୋଟାଏ ଲେଖା ନୂଆ ପ୍ରସ୍ତାବ । କେତେ ଝିଅ ବାହା ନ ହୋଇ ପାରି ବର୍ଷ ବର୍ଷ ଧରି ଅପେକ୍ଷା କରି ରହିଛନ୍ତି । ବର ମିଳୁନାହିଁ । ବର ମିଳିଲେ ବି କନ୍ୟାପିତା ବା କନ୍ୟାଭାଇର ବରପଣ ଦେବାକୁ ଶକ୍ତି ନାହିଁ, ସାମର୍ଥ୍ୟ ନାହିଁ । ସଙ୍ଗେ ସଙ୍ଗେ ରମାକାନ୍ତ ନିଜ ଭଉଣୀମାନଙ୍କ କଥା ଭାବି ବସନ୍ତି । ସହାନୁଭୂତିରେ ମନ ତରଳି ଯାଏ । ଭାବପ୍ରବଣ ହୃଦୟରେ ସେ ମନେ ମନେ ସ୍ଥିର କରିପକାନ୍ତି, ନାଃ—ଆଉ ନୁହେଁ । ଯେ କୌଣସି ପ୍ରକାରେ ଏଇ ଅବିବାହିତ ବିବ୍ରସ୍ତ ଦରିଦ୍ର ଝିଅମାନଙ୍କ ମଧ୍ୟରୁ ଜଣକୁ ଉଦ୍ଧାର କରିବାକୁ ହେବ । ସେ ସୁନ୍ଦରୀ ହେଉ କିମ୍ବା ବାନ୍ଦରୀ ନହେଉ । କିନ୍ତୁ ପୁଣି ମନ କଠୋର ହୋଇଉଠେ । କେତେ ଭାଇ ତ ପୁଣି ବାହା ହୋଇପାରୁ ନାହାନ୍ତି, ଭଉଣୀମାନଙ୍କୁ ବାହା ଦେଇ ପାରୁ ନାହାନ୍ତି ବୋଲି !! ଘରଟିଏ ତୋଳି ପାରୁନାହାନ୍ତି ବୋଲି !! ସେ କଣ ସବୁ ଝିଅଙ୍କୁ ଉଦ୍ଧାର କରିପାରିବେ ? ସେ କଣ ସବୁ ଭାଇଙ୍କ ମୁଣ୍ଡରୁ ଚିନ୍ତାର ବୋଝ ଖସାଇ ନେଇ

ପାରିବେ ?? ସେ କଣ ଏକା ଏକା ଦେଶ ତମାମ୍ ଏହି ସମସ୍ୟାର ସମାଧାନ କରିଦେଇ ପାରିବେ ?

ବାଜେ କଥା । ସେ ମୋଟେ ଉପରେ କିଛି କରିପାରିବେ ନାହିଁ । ତାଙ୍କ ଦେହାନ୍ତ ଖଡ଼ା ବି ସିଝିବ ନାହିଁ ।...

କିନ୍ତୁ କେବଳ ଖଡ଼ା ହିଁ ସିଝାଇବାକୁ ପଡ଼ିବ ଜୀବନ ଯାକ । ରମାକାନ୍ତ ବିଛଣା ଉପରୁ ବସି ପଡ଼ିଲେ । ନାଃ—କିଛି ଭଲ ଲାଗୁନାହିଁ । କେବଳ ନୈରାଶ୍ୟ, କେବଳ ବ୍ୟର୍ଥତା । ବାହାରେ ବାସନ୍ତୀ ଅପରାହ୍ଣର ନିଳନ୍ଦିଆ ଖରା । ଗଛର ଉପରେ ଚାରି ଦୁଇଟି ଘୂମୁରୁଛନ୍ତି । କିନ୍ତୁ ରମାକାନ୍ତଙ୍କ ମନ ଭିତରେ ଘୂମୁରୁଛି ଖାଲି ବ୍ୟର୍ଥତା—ଅସନ୍ତୋଷ, ଆଉ ନିରାଶିଲ ଚିନ୍ତା—ପରାଜିତ ବ୍ୟକ୍ତିତ୍ୱ ।

ଅବସ୍ଥାକୁ ବଦଳାଇ ଦେବାଲାଗି, ସମାଜକୁ ଓଲଟାଇ ଦେବାଲାଗି, ମନ ଭିତରେ ଆଉ ବିପ୍ଳବ ନାହିଁ । କିନ୍ତୁ ବିପ୍ଳବ ଥିଲା । ପାଞ୍ଚ ବର୍ଷ ତଳୁ ଟିଉସନ କରି ପାଠ ପଢ଼ିବାବେଳେ, ଯେତେବେଳେ ମୁଠାଏ ଜଳଖିଆ ଖାଇବାକୁ ମିଳୁ ନ ଥିଲା—ଖଣ୍ଡିଏ ବଢ଼ି ଲୁଗା ପିନ୍ଧିବାକୁ ମିଳୁ ନ ଥିଲା, ପାଦଲାଗି ହଳେ ଚଟି ବି ମିଳୁ ନ ଥିଲା, ଖଣ୍ଡିଏ ବହି କିଣ୍ଟିନ୍ତରେ ପଢ଼ିବାକୁ ମିଳୁ ନ ଥିଲା—ସେତେବେଳେ ନିଜର ଦୁର୍ଭାଗ୍ୟ ଓ ଦୁରବସ୍ଥା ସଙ୍ଗେ ସମାଜର ମୁଷ୍ଟିମେୟ କିଣ୍ଟିନ୍ତ ସୁଖି, ଧନୀ, ଶୋଷକ ସମ୍ପ୍ରଦାୟଙ୍କର ସୌଭାଗ୍ୟ ସୃଷ୍ଟି ଓ ବିଳାସକୁ ତୁଳନା କରି ସେ ଈର୍ଷା ଓ ହିଂସାରେ କୁହୁଳିବାକୁ ଲାଗିଲେ । କୁହୁଳି କୁହୁଳି ସତକୁ ସତ ଦିନେ ସେ ନିଆଁ ଭଳି ଜଳିଉଠିଲେ । ତା' ପରେ ରମାକାନ୍ତ ଟେବୁଲ ପିଟିଲେ ସଭାରେ ଉତ୍ତେଜନା ସୃଷ୍ଟି କରି

ବକ୍ତୃତା ଝାଡ଼ିଲେ—ପ୍ରସ୍ତାବ ଆଣିଲେ—ଚତ୍କାର ଗୁଡ଼ିଲେ ।
ନିଜେ ଜାଣି ଅନ୍ୟ ଗାଁ ଜଣକୁ ଡାକେଇଲେ—ମନେଇଲେ ।

କିନ୍ତୁ ସେ ଥିଲା ଯୌବନସୁଲଭ ଉତ୍ତେଜନାର ଚଣ୍ଡ ପ୍ରକାଶ, ତା' ମୂଳରେ ଚିନ୍ତା ନ ଥିଲା—ଯୁକ୍ତି ନ ଥିଲା । ନିଷ୍ଠା ହୁଏ ତ କିଛି କିଛି ଥିଲା; ମାତ୍ର ସେ ନିଷ୍ଠା ଟା ବି ଥିଲା ଆବେଗ-ପ୍ରସୂତ । ସେ ନିଷ୍ଠାରେ ନ ଥିଲା ଚିନ୍ତାର ଦୃଢ଼ତା ସୁଚିନ୍ତିତ ଯୋଜନା ବା ସୁନିର୍ଦ୍ଦିଷ୍ଟ କର୍ମପନ୍ଥା । ତେଣୁ ସେତେବେଳେ ଧନିକ; ଶୋଷକ ବୁର୍ଜୋୟା ସମାଜ ବିରୁଦ୍ଧରେ ବିପ୍ଳବ ଘୋଷଣା ମଧ୍ୟରେ ପ୍ରକାଶ ପାଉଥିଲା କେବଳ ଉଦ୍ଦାମ ଯୁବକସୁଲଭ କ୍ଷିପ୍ର ଚଞ୍ଚଳ ଉତ୍ତେଜନା । ଯେଉଁମାନଙ୍କ ବିରୁଦ୍ଧରେ ସେ ଯୁଦ୍ଧଘୋଷଣା କରୁଥିଲେ—ଦୈବାତ୍ ରମାକାନ୍ତ ଯଦି ସେଇ ସବୁ ପରିବାରରେ ଧନୀପୁତ୍ର ହୋଇ ଜନ୍ମ ହୋଇଥାନ୍ତେ—ତେବେ ସେ ହୁଏ ତ କାର, ପାର୍ଟି, ସିନେମା, କ୍ରିକେଟ ଓ ନାରୀ ସମ୍ପର୍କୀୟ ବ୍ୟାପାରରେ ନିଜର ଏହି ଯୁବକୋଚିତ ଉଦ୍ଦାମ ଉତ୍ତେଜନାଟାକୁ ପ୍ରକାଶ କରିଥାନ୍ତେ ।

ଉତ୍ତେଜନା ବେଶିଦିନ ରହେନାହିଁ ! ରହିଲା ବି ନାହିଁ । ଫଳରେ ଏହି କ୍ଷଣିକ ଉତ୍ତେଜନା ତାଙ୍କର କର୍ମଜୀବନରେ ଠିଆହେଲା ବିରାଟ ପ୍ରତିବନ୍ଧକ ରୂପେ । ସେ ନିଜର ସମସ୍ତ କ୍ଷମତା ସତ୍ତ୍ୱେ ପ୍ରତିଦ୍ୱନ୍ଦ୍ୱିତାରେ ସମସ୍ତଙ୍କୁ ପଛରେ ପକାଇଦେଇ ଯିବା ସତ୍ତ୍ୱେ ନିଜେ ପଛରେ ପଡ଼ିଯିବାକୁ ବାଧ୍ୟ ହେଲେ । ସେଇ ଯୋଜନାହୀନ, ଶାନ୍ତିଶୂନ୍ୟ କ୍ଷଣିକ ଉତ୍ତେଜନା ଲାଗି ବହୁକାଳ ତାଙ୍କ କପାଳରେ ସମାଜବିରୋଧୀ ଶାନ୍ତିଭଙ୍ଗକାରୀର କଳଙ୍କ ଲାଗିରହିଲା ।······

ହାୟ୍-ହାୟ୍ ! ସେ ଉତ୍ତେଜନାଟା ବି ଆଜି କୁଆଡ଼େ ଗଲା ? କୁଆଡେ଼ ଗଲା ସେଇ ଆବେଗ ? ସେଦିନ ମନେ ତାହା ଗଳ୍ପ -- କ୍ଷଣସ୍ଥାୟୀ କଳ୍ପନା ବିଳାସ !! କିନ୍ତୁ ସେଥିରେ ଜୀବନ ଥିଲା— ଉତ୍ତାପ ଥିଲା—ଥିଲା ଗତି ।

ରମାକାନ୍ତ ହଠାତ୍ ଖୁବ୍ କ୍ଲାନ୍ତ ବୋଧକଲେ, ଦିନରେ ଶୋଇଥିବା ଯୋଗୁଁ ଦେହଟା କର କର ଲାଗୁଛି । ହାତ ଗୋଡ଼ରେ ସତେ ବା ଆଉ ଟିକେ ଜୋର୍ ନାହିଁ !! ଦେହର ସମସ୍ତ ସ୍ନାୟୁମଣ୍ଡଳୀ ଯେମିତି ଥକ୍କା ହୋଇ ଆସିଲାଣି । ସେ ଦୁଇ ପାପୁଲିର ଦଶଟିଯାକ ଆଙ୍ଗୁଳି ଫୁଟାଇଲେ । ତଥାପି ଜଡ଼ତା କଟିଲା ନାହିଁ । ଗୋଡ଼ ଦୁଇଟି ଝିମ୍ ଝିମ୍ ଲାଗୁଛି । ହାତ ଦିଟା ସତେ ବା ଜମା ନାହିଁ । ଦେହଟା ବଡ଼ ଓଜନ ଲାଗୁଛି । ଆଖିରେ ନିଦ ନାହିଁ । ତଥାପି ଆଖି ଦି'ଟା ଲାଲ ପଡ଼ି ଯାଉଛି । ଆଉ ସବୁବେଳେ ବୁଜି ରଖିବାକୁ ଇଚ୍ଛା ହେଉଛି । ଜଙ୍ଘ, ବାହୁ ଓ ଗ୍ରୀବାର ମାଂସପେଶୀ ମଝିରେ ମଝିରେ ଦପ୍ ଦପ୍ କରି ଉଠୁଛି । ମନରେ ଅବସାଦ—ଦେହରେ କ୍ଲାନ୍ତି । ଏହା ସ୍ନାୟବିକ ଦୁର୍ବଳତା ନୁହେଁ ଆଉ କଣ ? ନିଶ୍ଚୟ ସ୍ନାୟବିକ ଦୁର୍ବଳତାର ପୂର୍ବ ଉପସର୍ଗ !!

ନାଃ - ଉତ୍ତାପ ଦରକାର, ଉତ୍ତେଜନା ଦରକାର—ଦରକାର ତାଜା ସ୍ନାୟୁ, ତାଜା ମନ, ଆଉ ତାଜା ଜୀବନ ।

ରମାକାନ୍ତ ଟ୍ରଙ୍କ ଖୋଲିଲେ । ବାହାର କଲେ ଗୋଟାଏ ଅଧସେରିଆ ବୋତଲ । ବୋତଲଟିକୁ ଦେଖି ଦେଖି ରମାକାନ୍ତ ଉତ୍ଫୁଲ୍ଲ ହୋଇ ଉଠିଲେ । ଦୁଇ ତିନି ଥର ବୋତଲଟିକୁ ହଲାଇ ସାରି ରମାକାନ୍ତ ମନକୁ ହସି ହସି କହିଲେ —

ବାଃ ବାଃ ବାଃ—ଆୟୁର୍ବେଦ ଗଗନର ରସାୟନ ଭାସ୍କର—ମୃତସଞ୍ଜିବନୀ ସୁରା !! ନିୟମିତ ବ୍ୟବହାର କଲେ କୋଷ୍ଠବଦ୍ଧତା, ଅଜୀର୍ଣ୍ଣ, ସ୍ନାୟବିକ ଦୁର୍ବଳତା, ଶିର ଘୂର୍ଣ୍ଣନ, ମୂର୍ଚ୍ଛା ଓ ଧ୍ୱଜଭଙ୍ଗାଦି ଯାବତୀୟ ରୋଗ ଦୂର କରି ଦେହ ଓ ମନରେ ଅଭିନବ ବଳ ଓ ଅମିତ ତେଜ ସଂଚାର କରେ । ସ୍ୱୟଂ ସୁଭାଷ ବୋଷ ମଧ୍ୟ କୁଆଡ଼େ ଅବସାଦ କଟାଇବା ଲାଗି ଏହାକୁ ନିୟମିତ ପାନ କରୁଥିଲେ ।

ରମାକାନ୍ତ ଢକ ଢକ କରି ଅଳ୍ପ ପାଣି ସହ ମିଶାଇ ସାନ ଔଷଧ ଗ୍ଲାସରେ ତିନି ଗ୍ଲାସ ପିଇଗଲେ । କଣ୍ଠନାଳୀ ଓ ଗ୍ଲଣ୍ଡ ଭିତରେ ସତେ ବା କିଏ ନିଆଁ ଲଗାଇ ଦେଲା !! ତା’ ପରେ ଆଉ ଖଣ୍ଡେ ସିଗ୍ରେଟ ଲଗାଇ ବାରଣ୍ଡାରେ କ୍ୟାନ୍‌ଭାସ ଚଉକିଟି ଉପରେ ବସି ଧୂଆଁ ଛାଡ଼ିଲେ । ପାଞ୍ଚ ମିନିଟ ପରେ ସେ ଅନୁଭବ କଲେ ତ୍ୱରିତ ତାଙ୍କ ଦେହ ମଧ୍ୟରେ ବେଶ୍ କିଛି ଉତ୍ତାପ ସଞ୍ଚାରିତ ହୋଇଗଲାଣି ଏବଂ ସ୍ନାୟୁମଣ୍ଡଳୀ ବେଶ୍ ତାଜା ହୋଇ ଉଠିଲାଣି । ଦେହଟା ବି ଖୁବ୍ ହାଲୁକା ବୋଧହେଉଛି । ରମାକାନ୍ତ ଆଉ ଖଣ୍ଡେ ସିଗ୍ରେଟରେ ନିଆଁ ଲଗାଇଲେ, ରମାକାନ୍ତଙ୍କ କଳ୍ପନାରେ ବି ନିଆଁ ଲାଗିଗଲା— ।

ଅତି ପାଖରେ ନଈ ଦିଶୁଛି । ନଈବାଲି ଉପରେ ହଳଦିଆ ଖରା କ୍ରମେ ମଳିନ ପଡ଼ି ଆସୁଛି । ଟିକିଏ ଆଗକୁ କାରଖାନାର ବଡ଼ସାହେବଙ୍କ କୋଠି । କୋଠି ଆଗରେ ସୁନ୍ଦର ବଗିଚା । ନାନା ଜାତିର ଫୁଲ ଫୁଟିଛି । ନାନା ଜ୍ୟାମିତିକ କ୍ଷେତ୍ର ମଧ୍ୟରେ ଶୀତକାଳୀନ ବିଦେଶୀ ଫୁଲଗୁଡ଼ିକ ନିଇତି ପାଣି ପାଇ ବେଶ୍ ସତେଜ ରହିଛି । ବଗିଚାର ଚାରିକଡ଼େ ସୁକର୍ତ୍ତିତ କାମିନୀ ଗଛର

ଅଳ୍ପ ଉଚ୍ଚ ସବୁଜ ବାଡ଼ । ବଗିଚାର ଚାରି କଣରେ ଲାଲ ଓ ହଳଦିଆ ବଡ଼ବଡ଼ ଗେଣ୍ଡୁ ଫୁଲଗୁଡ଼ାକ ଧୀର ପବନରେ ଲହଡ଼ ଭାଙ୍ଗୁଛନ୍ତି ।

ତାର ପାଖେ ପାଖେ ଟିକେ ଦୂରରୁ ବୃତ୍ତାକାରରେ ସଜ୍ଜିତ ହୋଇଛି ଗୋଲାପକୁଣ୍ଡ ସବୁ । ଅସଂଖ୍ୟ ଲାଲ ଗୋଲାପ ଫୁଟିଛି । ତଳେ ପାଣି ଛିଞ୍ଚା ହୋଇ କଅଁଳ ନୂଆ ନୂଆ ସବୁଜ ଘାସ । ଚାରିଆଡ଼େ ଖାଲି ଲାଲ ସବୁଜ ଆଉ ହଳଦିଆ ରଙ୍ଗର ପ୍ରାଚୁର୍ଯ୍ୟ ପ୍ରଦର୍ଶନୀ । ରମାକାନ୍ତ ମୁଗ୍ଧ ଚକିତ ଆଖିରେ ଚାହିଁ ରହିଛନ୍ତି ସେହିଆଡ଼େ । ବଗିଚା ଉପର ଦେଇ ସ୍ନିଗ୍ଧ ସ୍ନିଗ୍ଧ ମଳୟ ବହି ଆସି ତାଙ୍କ ଦେହରେ ଏକ ଅପୂର୍ବ ଶିହରଣ ଖେଳାଇଲା । ସେ ଦେଖିଲେ, କେତୋଟି ଭଅଁର, ମହୁମାଛି ଆଉ ପ୍ରଜାପତି ସେଇ ବଗିଚା ଆଡ଼କୁ ଉଡ଼ି ଯାଉଛନ୍ତି—ଉଡ଼ି ଆସୁଛନ୍ତି । ରମାକାନ୍ତ ଭାବିଲେ—ଏଇ ହାଲୁକା ପବନରେ ହାଲୁକା ଦେହ ନେଇ ଏଥର ଉଡ଼ି ଚାଲିଲେ କ୍ଷତି କଣ ?

ବଗିଚା ଭିତରେ ଗୋଲାପକୁଣ୍ଡ ପାଖରେ ଆସି ଠିଆ ହେଲାଣି ବଡ଼ସାହେବଙ୍କର ସେଇ ଡେଙ୍ଗୀ ହୋଇ ସୁନ୍ଦରୀ ତନୁପାତଳୀ ଗୋରୀ ଝିଅଟି । ଲାଲ ଶାଢ଼ୀଟିର ହାଲୁକା ଅଞ୍ଚଳ ଧୀର ପବନରେ ପଛରେ ଉଡ଼ୁଛି । ସ୍ପଷ୍ଟଭାବେ ଦିଶୁ ନାହିଁ ମୁହଁଟି । (କିନ୍ତୁ ସେଥିପାଇଁ କେବଳ ଦୂରରୁ ସେ ଦର୍ଶକର କଳ୍ପନାରେ ଡେଣା ଲଗାଇ ଦେଇପାରେ ) । ସେ ଗୋଲାପ ତୋଳୁଛି; ଗୋଲାପ ଦେଖୁଛି । ଲାଲ ଗୋଲାପରେ ସେ ସୁନ୍ଦର ମୁହଁଟିକୁ ଛୁଆଁଉଛି, ଓଳାଉଛି, ବଗିଚା ଭିତରେ ଭଉଁରୀ ଖେଳୁଛି, ଡେଉଁଛି, ହସୁଛି, ଶାଢ଼ୀ ଉଡ଼ାଉଛି, ଦେହ ହଲଉଛି । ସେ

ହେଉ କି କାଶ୍ମୀରର ଭୂମଧ୍ୟସାଗରୀୟ ଜଳବାୟୁରେ ବଢ଼ିଥିବା କୌଣସି ବନୋଦ୍ୟାନର ବଉଳା ମୁଖରା ଲାଲ୍ ବୁଲ୍ ବୁଲ୍ । ଡାଳରୁ ଡାଳ ଡେଇଁ, ଫୁର୍ କିନା ଉଡ଼େ, ଟୁଉଁ ଉଁ, ଟୁଉଁ ଉଁ ଟୁଇକ୍ ଟୁଇକ୍ କରି ଗୀତ ଗାଏ, ଲାଞ୍ଜ ହଲାଏ, ଅଙ୍ଗୁର ଟେଣ୍ଡାରେ ଥଣ୍ଟ ମାରେ, ରସ ଝରାଏ, ରସ ପିଏ ।

କାରଖାନାର ପଞ୍ଜାବୀ ବଡ଼ ସାହେବଙ୍କର ସୁନ୍ଦରୀ ତନୁ-ପାତଳୀ ଝିଅଟି ଲାଲ ଶାଢ଼ୀ ପିନ୍ଧି ବଗିଚା ଭିତରେ ଖାଲି ଖାଲି ଦାଉ ଦାଉ ହୋଇ ଜଳୁଛି ।

ହଠାତ୍ ଝଲକାଏ ପବନରେ ସେଇ ନିଆଁର ଉତ୍ତାପ ଆସି ରମାକାନ୍ତଙ୍କ ଦେହକୁ ତତାଇ ଦେଲା ।

ରମାକାନ୍ତ ଚଉକୀ ଉପରେ ଡେରି ହୋଇ ବସିଲେ ଏବଂ ଖୁବ୍ ଦୃଢ଼ ଦୃଷ୍ଟିରେ ସେ ଦୃଶ୍ୟଟିକୁ ଚାହିଁ ରହିଲେ ।

ହାୟ-ହାୟ ! ସୂର୍ଯ୍ୟ କେତେ ଦୂରରେ !! ଅଥଚ ତାର ଉତ୍ତାପରେ ଶିଝୁଛି କେତେ ତନେ, କେତେ ତନିଆ ମଣିଷ !!

ହାୟ ହାୟ ! କେତେ ଦୂରରେ ନିଆଁ ! ଆଉ କେତେ ଦୂର ଯାଏ ମାଡ଼ି ଆସୁଛି ତାର ତାତ !! ତାର ଧାସ !!

ରମାକାନ୍ତ ଏଇ ତାଣ୍ଡବରେ ଶିଝିଲେ—ଲୁହୁଲିଲେ ।

ହଠାତ୍ ସେ ଶୁଣିପାରିଲେ ଗୋଟିଏ ମଧୁର ରାଗିଣୀ । ନଈବାଲିରୁ ଭାସିଆସୁଛି କେନ୍ଦେରାର ମୂର୍ଚ୍ଛନା । ରମାକାନ୍ତ ନଈ ଭିତରକୁ ଚାହିଁଲେ । ଗୋଟିଏ ସାନ୍ତାଳ ଯୁବକ ସାନ୍ତାଳ ଯୁବତୀକୁ ପାଖରେ ନଗାଇ କେନ୍ଦେରା ବଜାଉଛି । ରମାକାନ୍ତ ଯୁବକଟିକୁ ଚିହ୍ନିଲେ । କାରଖାନାର ଦିନ୍ ମଜୁରିଆ ଏକୋଇଶି ବାଇଶି ବର୍ଷର ଭେଣ୍ଡିଆ ସାନ୍ତାଳୀ କଳା । ମଚ ମଚ ଚିକ୍କଣରୂପ;

ବଳିଷ୍ଠ ବାହୁ, ବିସ୍ତୃତ ଗ୍ରୀବା, ବୃଷଭ ସ୍କନ୍ଧ ଭଳି ବିରାଟ କାନ୍ଧ । ପୁରୁଷ ମୁହଁ, ଗୋଟାଏ ଷଣ୍ଢ । ଆଉ ତା' ପାଖକୁ ଲାଗିକରି ନାଚୁଛି ଯେଉଁ ଯୁବତୀଟି, ସେ ସାନ୍ତାଳ ଟୋକାଟିର ନବବିବାହିତ ପତ୍ନୀ । ଏଇ କେତେଦିନ ଧରି ସେ ଦୁହିଁଙ୍କୁ ଯୋଡ଼ି ଯାଉଳି ହୋଇ ବୁଲିବାର ଦେଖିଛନ୍ତି; ଖେଳିବାର ବି ଦେଖିଛନ୍ତି । ନୂଆ ନୂଆ ପୀରତି । କେହି କାହାକୁ ଦଣ୍ଡେ ବି ଛାଡ଼ି କରି ରହିପାରୁ ନାହାନ୍ତି । ଦିନରେ ଏକାଠି, ରାତିରେ ଏକାଠି । କାମରେ ଏକାଠି, ନାଚରେ ଏକାଠି ।

ରମାକାନ୍ତଙ୍କ ମନରେ ଯୁଗପତ୍ ଈର୍ଷା ଓ ମମତା ଜାଗି ଉଠିଲା ।

ବାଃ ବାଃ ! ବେଶ୍ ତ !! ଏଇ କାଆଲି ବୁଲୁଥିଲା ଏକୁଟିଆ ଏଇ ଟୋକାଟା ଜମ୍ବୁରାଇ । ମୁଣ୍ଡ କୁଣ୍ଡେଇ ଜାମା ପିନ୍ଧି ଫୁଲମାଳା ପକାଇ ଏକା ଏକା ନାଗର ସାଜୁଥିଲା, ବଂଶୀ ଫୁଙ୍କୁଥିଲା । ଟୋକା ମେଳରେ ରସିକତା କରି ହୁଣ୍ଡାପଣରେ ଧଷେଇ ପଶୁଥିଲା । ଟୋକାଙ୍କଠାରୁ ମାଡ଼ ଖାଉଥିଲା । ଅଶ୍ଳୀଳ ଗାଳି ଶୁଣୁଥିଲା । ସେମାନଙ୍କ ନାମରେ ଯୌନଭାବ ସମ୍ବଳିତ ଗୀତ ଫାନ୍ଦି ବୋଲି ସେମାନଙ୍କୁ ଚଳାଉଥିଲା, ବଳାଉଥିଲା ।

ଆଉ ଆଜି !! ସେଇ ସାନ୍ତାଳ ଟୋକା ଜମ୍ବୁରାଇ ଭଲ ମାଇପଟିଏ ପାଇଛି । ମୁଁଣ୍ଡରେ ଶକ୍‌କଣି ବାଙ୍କ ଜୁଡ଼ା ପାରି ତା ଉପରେ ଧଳାଫୁଲ ଖୋସି ଜମ୍ବୁରାଇ ଘରଯା, ତା ଉପରେ ଲଦିହୋଇ ପଡ଼ୁଛି । ଯୌବନର ନିଶାକୁ ବଢ଼େଇ ଦେଉଛି ହାଣ୍ଡିଆର ନିଶା । ଜମ୍ବୁରାଇ ଭଳି ମରଦ ତା' ମନକୁ ବେଶ୍ ପାଇଛି । ସେ ତାକୁ ପରଖି ସାରିଛି । ତା' ମରଦପଣିଆକୁ ମାପି

ଯାଉଛି । ଗଛରେ ମାଟିମାଳ ବନରେ ତାର ଦାମ୍ ଦେଉଛି ଯୁବତୀଟି । ହାକୁଣୀ ମନକୁ ହାଣ୍ଡିଟି ଠିକ୍ ପାଇଯାଇଛି । ଜମ୍ମୁରାଇ ନିଶାରେ ଝୁଲୁଛି । ଅଣ୍ଟାଭାଙ୍ଗି କେବେ ବା ତଳେ ନଇଁ କେବେ ବା ଉପରକୁ ସିଧା ଖାଡ଼ା ହୋଇଯାଇ, କେବେ ବା ସ୍ତ୍ରୀ ଗ୍ରୀତ ଉପରକୁ ପୁଣ ମୁହଁ ପଟେ ଆଉଜି ଯାଇ ଜମ୍ମୁରାଇ ଚେଙ୍ଗଦେରା ବଜାଉଛି, ନାଚୁଛି । ତା' ସ୍ତ୍ରୀ ଖାଲି ହସି ହସି ଗଡ଼ି ଯାଉଛି, ଗୀତଗାଇ ଲେଟିଯାଉଛି, ଢଳି ଯାଉଛି, ବୋହି ଯାଉଛି ।

ରମାକାନ୍ତ ଦେଖି ଦେଖି ଉତ୍ତେଜିତ ହେଲେ ।
ଜମ୍ମୁରାଇ ନାଚୁଛି ନା ପୁରୁଷ ନାଚୁଛି ?
କମ୍ମୁରାଇ ଭରଯା ହସୁଛି ନା ଯୌବନ ହସୁଛି ?
ଚେଙ୍ଗଦେରା ବାଜୁଛି ନା ଜୀବନ ବାଜୁଛି ?

ବଡ଼ସାହେବଙ୍କ ତନୁପାତଳୀ ସୁନ୍ଦରୀ ଗୋରା ଝିଅଟି ନାଲି ଶାଢ଼ୀ ପିନ୍ଧି ବଗିଚାରେ ନାଚି ନାଚି ଉପରକୁ ଗୋଣ୍ଡୁ ଫୁଲ ଫିଙ୍ଗୁଛି, ଫୁଲ ଧରୁଛି, କୁଦୁଛି, ଡେଉଁଛି ।

ବଡ଼ସାହେବଙ୍କ ଝିଅ ଡେଉଁଛି ନା ନିଆଁ ଡେଉଁଛି ?

ରମାକାନ୍ତ ଚଞ୍ଚଳ ହୋଇ ଉଠିଲେ । ନାଃ, ଆଉ ନୁହେଁ ଆଉ ଜମା ନୁହେଁ । ମନରେ ନିଆଁ ଲାଗି ଲାଣି । ଦେହରେ ତାତି ଜମିଲାଣି । ସେ ମଧ୍ୟ ଡେଇଁବେ, ନାଚିବେ, ଆଉ ଜୀବନକୁ ବଜାଇବେ ।

ଚେୟାରରୁ ଭୁସ୍‌କିନା ଉଠିପଡ଼ି, ସ୍ଥାନକାଳ ଭୁଲି ବଡ଼ ପାଟିରେ ସାନ୍ତାଳ ଯୁବକଟିର ନାମଧରି ରମାକାନ୍ତ ଡାକିଲେ

"ହେଇଏ—ଏଯୂ-ଜମ୍ବୁରାଇ-ଜମ୍ବୁରାଇ-ଇ ·ଇ—"

ଜମ୍ବୁରାଇ ଆସିଲା । ସଂଗେ ସଂଗେ ତାର ସ୍ୱାସ୍ଥ୍ୟବତୀ ଯୁବତୀ ହାସ୍ୟଚପଳା ଘଇଁଯା ବ । ଜମ୍ବୁରାଇ ଘଇଁଯାର ବକ୍ଷଦେଶରେ କନ୍ଦର୍ପ ଦୁଇଟି ହରାଠ ତମ୍ବୁ ଟେକାଇ ଲୁଚି ରହିଛନ୍ତି । ଆଉ ତାର ପୃଥୁଳ ଜଘନ ଦୁଇଟି ଯେଉଁ ତମ୍ବୁର ସଦେତେବା ଦୁଇଟି ତୋରଣ ସ୍ତମ୍ଭ ! !' ଜମ୍ବୁରାଇ ତାର ହାତ ଧରିଛି । ପରିପୁଷ୍ଟ ସ୍ୱାସ୍ଥ୍ୟ—ଉଜ୍ଜ୍ୱଳ ଓ ଅଥୟ ଯୌବନ—ଆଉ ଉଚ୍ଛଳ ଜୀବନର ପ୍ରାଣବାନ୍ ଧାରା ସେମାନଙ୍କ ଶିରା ପ୍ରଶିରାକୁ ଉତ୍ତେଜିତ କରି, ଯେପରିକି ଫାଟିପଡ଼ି ତଳେ ବହିଯିବ ! !

କାହିଁକି ଡାକିଲୁ ବାବୁ !"

ଜମ୍ବୁରାଇ ଖୁସି ଆଖିରେ ରମାକାନ୍ତଙ୍କୁ ଚାହିଁ ରହିଲା । ତାର ଘଇଁଯା ମଧ୍ୟ ତୀକ୍ଷ୍ଣ ଭଂଗୀରେ ରମାକାନ୍ତଙ୍କୁ ଚାହିଁ ରହିଛି । କିନ୍ତୁ ଏଇ ତୀକ୍ଷ୍ଣଭଂଗୀ ତାର ଜୀବନୋଚ୍ଛଳ ଉତ୍ଫୁଲ୍ଲ ଲାଲ ଆଖି ଦୁଇଟିର—ନା ତାର ଉନ୍ନତ, ଉନ୍ନତ ଯୌବନୋଦ୍ଧତ, ପୀନସ୍ତନ ଦୁଇଟିର—ତାହା ରମାକାନ୍ତ ସ୍ଥିର କରି ପାରିଲେ ନାହିଁ । କାରଣ ସାନ୍ତାଳ ଯୁବତୀଟିର ଆଖିର ତୀକ୍ଷ୍ଣତା ଅପେକ୍ଷା, ବକ୍ଷ ଦେଶର ତୀକ୍ଷ୍ଣତା ଟାଇ ରମାକାନ୍ତଙ୍କ ଦୃଷ୍ଟିକୁ ବେଶୀ ଟାଣୁଥିଲା । ରମାକାଂତ ଆଖି ଫେରାଇ ତାର ସେଇ ରକ୍ତବର୍ଣ୍ଣର ମାତାଲ ଆଖି ଦୁଇଟିକୁ ସମ୍ମୋହିତ ହୋଇ ଚାହିଁ ରହିଲେ । ସାନ୍ତାଳ ଯୁବତୀର ଲାଲ ମାତାଲ ଆଖି ଦୁଇଟିରୁ କାମନା ଓ ଲାଳସାର ଉଷ୍ଣ ବାଷ୍ପ ଉଠି ରମାକାନ୍ତଙ୍କ ଆଖି ଦୁଇଟାକୁ ମଧ୍ୟ ନିଶାରେ ରଂଗେଇ ଦେଲା ସଂଗେ ସଂଗେ ରମାକନ୍ତ ଉନ୍ମାଦ ଭଳି ଜମ୍ବୁରାଇକୁ କହିଲେ—

"ନେ-ତେ-ତେଲୁ ତୋର ସେଇ କେନ୍ଦେରଟା ମୁଁ ବଜାଏଁ ।"

ଜହ୍ନରାତି ମହାଖୁସିରେ କେନ୍ଦେରଟା ବଜାଇ ଦେଲା । ବଡ଼ ସାହେବଙ୍କ ଜନୁଆଳୀ ଗୋଛା ଫୁଟିଥିବା ଫୁଲ ଦେଖନ୍ତି ଗୁଣ୍ଡି ବଗିଚାରେ ସବୁଜ ଘାସ ଉପରେ ମୁହଁ ମାଡ଼ି ଶୋଇଛନ୍ତି । ଧୀର ଭାବେ ମୁହଁ ମାଡ଼ି ଶୋଇ ସେ ଦାନ୍ତରେ ଘାସ ଖୁଣ୍ଟୁଛନ୍ତି । ଦୁଇଟି ସୁନ୍ଦର ଲମ୍ବା ବେଣୀ ଦୁଇ କାନ୍ଧକୁ ଲମ୍ବି ହୋଇ ଶାନ୍ତ ଭାବେ ପଡ଼ି ରହିଛି । ସବୁଜ ଘାସ ଉପରେ ସେ ସତେ ବା ଗୋଟାଏ ଲମ୍ବ ସୁନ୍ଦର ନାଲି ସାପ ।

ରମାକାନ୍ତ କେନ୍ଦେରଟି ନେଇ ତା' ଉପରେ ଧନୁ ଚଳାଇଲେ । କେନ୍ଦେରାରେ ନାଗେଶ୍ୱରୀ ବଜାଇ, ଆଗ ସେ ସେଇ ନାଲି ସାପଟିକୁ ବଗିଚାରୁ ଉଠାଇବେ । ସେ ତେକା ଗୁଣ୍ଡି, ଫଣା ଟେକ ଉପରକୁ ଉଠି ବଗିଚାରୁ ବାହାରି ଆସିଲେ ତା' ପରେ ଯାଇ ସେ ପୁରଣା ରାଗିଣୀରେ ତାକୁ ନଚାଇବେ ଓ ନିଜେ ନାଚିବେ । ବାସ୍, ଏତିକ ଚଟାପଟ୍ ଭାବ ନେଇ ସେ ଖୁବ୍ ଚଞ୍ଚଳ କେନ୍ଦେରାର ତାର ଉପରେ ଧନୁ ଚଳାଇଲେ । ବାରମ୍ବାର ଧନୁ ଚଳାଇଲେ ।

ମାତ୍ର ଧୁତ୍ । ସେ ଯାହା ଭାବୁଛନ୍ତି କେନ୍ଦେରାରୁ ସେ ସୁର ବାହାରୁ ନାହିଁ । କେନ୍ଦେରଟା ଖାଲି କୁଁ କେଁ କାଁ ହେଉଛି, ଏଣୁ ତେଣୁ ଗୁଡ଼ାଏ ଗୋଳମାଳିଆ ସୁର ବାହାରୁଛି ।

ରମାକାନ୍ତ ବିରକ୍ତ ହୋଇ କେନ୍ଦେରାର ମୁଣ୍ଡ ପାଖସରୁଟିକୁ କାଖ ପାଖେ ଖୁବ୍ ଜୋରରେ ଚୁପି ଧରିଲେ ଏବଂ ଧରିଥିବା

ଧନୁଟିରେ କେନ୍ଦେଇର ତାର ଗୁଡ଼ିକୁ ଜୋରରେ ଘଷି ଘଷି ବଡ଼ ପାଟିରେ ଚିତ୍କାର କଲେ ନାଗେଶ୍ୱର ତାଳ—

କୁଇଁ—କୁଇଁ
କୁଇଁକୁ—କୁଁ—କୁଁ—କୁଁ ।
କୁଇଁ କୁଇଁ
କୁଇଁକୁ କୁଁକୁଁକୁଁ ।

ଧୁତ୍‌ତେରି ! କେନ୍ଦେଇଟା ଆଦୌ ଯେମିତି ବାଜୁନାହିଁ । ତାଙ୍କର ଜିଦ୍ ବଢ଼ିଗଲା । ସେ ଫେରେ ଦୁଇ ଗୁଣ ଜୋର ଖଟାଇଲେ ଏବଂ ହାତକୁ ଖୁବ୍ ବେଗରେ ଚଞ୍ଚଳ କରି— କେନ୍ଦେଇ ତାରରେ ଧନୁ ଘଷି, ବଡ଼ ପାଟିରେ ତାଳ ଧରିଲେ ।—

କୁଇଁ—କୁଇଁ
କୁଇଁକୁ—କୁଁକୁଁ—କୁଁ ।

ଓଃ ନାଃ—କେନ୍ଦେଇଟା ବୋଲମାନିବାକୁ ଏକଦମ୍ ନାରାଜ । ଶେଷଥର ଲାଗି ବିଫଳ ହୋଇ ବିରକ୍ତିରେ ସେ କେନ୍ଦେଇଟାକୁ ରାଗରେ ତଳେ କଚାଡ଼ି ଦେଲେ । ଆଉ କ୍ରୋଧ ଓ ବିଫଳତାରେ ସିଁ ସିଁ ହୋଇ ସେ ଚିତ୍କାର ଛାଡ଼ିଲେ—

"ବାଜେ କେନ୍ଦେଇଟିଏ ଆଣିଚୁ ତୁ ଜମ୍ବୁରାଇ । ଜମା ବାଜୁନାହିଁ । ବାଜେ ଲୋକଗୁଡ଼ାକ ତୁମେ ସବୁ । ବାଜେ ବାଜେ ସବୁ ବାଜେ । ବିଲ୍‌କୁଲ୍ ବାଜେ ।"

କେନ୍ଦେଇଟା ସିମେଣ୍ଟ ଚଟାଣ ଉପରେ ପଡ଼ି ତାର ମୁଣ୍ଡ ପାଖ ମାଟି ସରାଟା ଏକଦମ୍ ଚୂନା ହୋଇଗଲା । ଜମ୍ବୁରାଇ ନେଇ ଭଙ୍ଗା କେନ୍ଦେଇଟାକୁ ତଳୁ ଗୋଟାଉ ଗୋଟାଉ ଆଶ୍ଚର୍ଯ୍ୟ ହୋଇ ପଚାରିଲା—

"କେନ୍ଦେରାଟାକୁ ଭାଙ୍ଗି ଦେଲୁ କାହିଁକି ବାବୁ !"

"ଭାଙ୍ଗିବି ନାହିଁ ? ବାଜେ ଲୋକଗୁଡ଼ାକ !! ବାଜେ; କେନ୍ଦେରାଗୁଡ଼ାଏ ଆଣି କେଁ କେଁ କରୁଚ । ଜମା ବାଜୁ ନାଇଁ, ମୁଁ ଭାଙ୍ଗି ଦେବି, ହଁ ହଁ ଭାଙ୍ଗିଦେବି ସବୁ ଭାଙ୍ଗି ଦେବି— ଯେତେ ବାଜେ କେନ୍ଦେରା ଦେଖିବି ସବୁ ଭାଙ୍ଗିଦେବି ।"

ଉତ୍ତେଜନାରେ ରମାକାନ୍ତ ଥରୁଛନ୍ତି । ପାଟି ଖଣ୍ଡେ ମାଡ଼ି ଯାଉଛି । ଗୋଡ଼ ଭୂଇଁ ଉପରେ ଟଳ ଟଳ ହେଉଛି । ଦେହ ଶିତେଇ ଉଠୁଛି, ଗୁଣ୍ଡ ଜମି ଯାଉଛି ।

ସେ ଉତ୍ତପ୍ତ, ସେ ଉତ୍ତେଜିତ, ସେ ଉଚ୍ଚାଟିତ, ସେ ଉନ୍ମତ୍ତ ।

କେଉଁ ବାଟ ଦେଇ ତାଙ୍କର ଶିରା ଓ ସ୍ନାୟୁ ଭିତର ଏଇ ଉତ୍ତାପ ଖସି ଆସିବ ?? ତାଙ୍କର ଉତ୍ତେଜନା ଗୁଡ଼ିକର ମୁକ୍ତି— ଗୁଡ଼ିକ ସଫଳତା, ଗୁଡ଼ିକ ଚରମ ପରିଣତି, ନିଜକୁ ଚୁପୁଡ଼ି ମହା ଆନନ୍ଦରେ ଢାଳି ଦେବାରେ—ତା'ପରେ କ୍ଳାନ୍ତିରେ— ବିଶ୍ରାମରେ ଆଉ ମହାଶାନ୍ତିର ଗହନ ନିଦ୍ରା ଭିତରେ ।

କିନ୍ତୁ କାହିଁ ? ସବୁ ବିଫଳ—ସବୁ ବ୍ୟର୍ଥ, ସବୁ ଅକାରଣ । ଅକାରଣ ତାତି ଯାଇ, ପୁଣି ଅକାରଣ ଶୀତଳ ହୋଇ, ଏ ଦେହରୁ ଦିନେ ସବୁ ତାତି ଖସି ପଡ଼ିବ । ସନ୍ନିପାତ ଘୋଟିଯିବ ଅକାଳରେ । ଅସମୟରେ ଦିନେ ଏଇ ଭୋକ ବି ମରିବ, ଶୋଷ ବି ମରିବ, କାରଣ ଭୋକ ଆଉ ଶୋଷକୁ ବି ଅହାର ଦେଇ ବଞ୍ଚାଇ ରଖିବାକୁ ହୁଏ ।

ବିଫଳତାର ବେଦନାରେ ରମାକାନ୍ତ ଖୁବ୍ ଜୋରରେ ଥରିବାକୁ ଲାଗିଲେ । ଆଉ ଥରେ ଥର ଥର ଗଳାରେ ଖନା ପାଟିରେ ପୁଣି ଚିତ୍କାର କଲେ—

"ଯାଅ, ଯାଅ ମୋର ସବୁ ବାଜେ ଲୋକ ଏଠି ଜୁଟି ହୋଇଛ । ବାଜେ କେନ୍ଦେରାଗୁଡ଼ାଏ ଆଣି କେଁ କେଁ କରୁଛ, ଯାଅ ଯାଅ ପଳାଅ ଏଠୁ ।"

ଜମ୍ବୁରାଇ ସ୍ତ୍ରୀ ସବୁ ବୁଝି ପାରିଛି । ଧରି ପାରିଛି ଠିକ୍ ଭାବେ ରମାକାନ୍ତଙ୍କର ଦୁର୍ବଳତା । ସେ ଜାଣେ ଏଇଭଳି ବାବୁଗୁଡ଼ାକ ଭଲ ଶିକାରୀ ନୁହନ୍ତି । ଶିକାର ଦେଖିଲେ ଏମାନଙ୍କର ଏହିଭଳି ଦେହ ଥରେ । ତେଣୁ ସେ ହସି ହସି ପରିହାସ କଣ୍ଠରେ କହିଲା—

"କେନ୍ଦେରାଟା କାଇଁକି ବାଜେ ହବ ବାବୁ ତୁ ତ ଜମା ବଜାଇ ପାରିଲୁ ନାହିଁ । କେନ୍ଦେରାଟାର ଦୋଷ କାହିଁକି ଦଉଛୁ ମିଛରେ ? ତତେ ତ ଜମାରୁ ବଜାଇ ଆସେ ନାହିଁରେ ବାବୁ !"

ଭଙ୍ଗା କେନ୍ଦେରାଟା ଧରି ଜମ୍ବୁରାଇ ତାର ଭାର୍ଯ୍ୟାର ଅଣ୍ଟା ଧରି ପେଲି ପେଲି ଆଗକୁ ଟାଣି ନେଇଗଲା ।

ଜମ୍ବୁରାଇ ଭାରିଯା ହସି ହସି ଗଡ଼ି ଯାଉଛି ।

ବଡ଼ ସାହେବଙ୍କର ସେହି ତନୁପାତଳୀ ନାଲ୍ ଶାଢ଼ୀ ପିନ୍ଧା ଗୋଟା ଝିଅଟି ବଗିଚା ଭିତରେ ପୁଣି ଝାଡ଼ଝୁଡ଼ି ହୋଇ ଉଠି ତାର ପୋଷା କଉଡ଼ିକିଆ ବିଲାତି କୁକୁରଟି ସଙ୍ଗେ ଲୁଚକାଳି ଖେଳିଲାଣି ।

ରମାକାନ୍ତ ବ୍ୟର୍ଥତାରେ, ଅପମାନରେ, ପରାଜୟରେ ଅଭ ଆତ୍ମଗ୍ଲାନିରେ କ୍ଳାନ୍ତ ହୋଇ ଠେଲୁ ଠେଲୁ, ଥରୁ ଥରୁ, ଆରାମ ଚଉକୀ ଉପରେ ନଥିକନା ବସିପଡ଼ିଲେ ।

ଦେହରେ ଝାଳ ଜମିଗଲାଣି । ନିଃଶ୍ୱାସ ସୁଁ ସୁଁ ହୋଇ ବାହାରୁଛି । ସଞ୍ଜ ପୂର୍ବର ଥଣ୍ଡା ପବନରେ ସେ ଆଖି ବୁଜି ଘୁମାଇ ପଡ଼ିଲେ ।

# କୁମାରୀ ଲଳିତା ମିଶ୍ର

ଆପଣ କୁମାରୀ ଲଳିତା ମିଶ୍ରଙ୍କୁ ଜାଣନ୍ତି ? ତାଙ୍କ ନାମ ଶୁଣି ନାହାନ୍ତି ଆପଣ ? ଯାଃ — କଣ ଆଉ ତେବେ ଆପଣ ଜାଣିଛନ୍ତି ? ଏଇ ସହରରେ ଲଳିତା ମିଶ୍ରଙ୍କୁ ନ ଜାଣିଚି କଏ ? ରେକ୍ସାବାଲା ଠାରୁ ଆରମ୍ଭକରି ସୂର୍ଯ୍ୟମଲ୍ଲ ଅଗ୍ରୱାଲଙ୍କ ପର୍ଯ୍ୟନ୍ତ ଓ କମେଣ୍ଡ ଷେହମୋହନଙ୍କଠାରୁ ଆରମ୍ଭକରି ଶାନ୍ତିନିକେତନର ଗୁଣ୍ଡ ଶ୍ରୀମାନ୍ ଶୁଭକାନ୍ତ ପରିଡ଼ାଙ୍କ ପର୍ଯ୍ୟନ୍ତ—ଡାକ୍ତର ପି. କେ ସାମଲଙ୍କ ଠାରୁ ଆରମ୍ଭକରି ବାରିଷ୍ଟର ଶଙ୍କର୍ଷଣ ଗଡ଼ତିଆଙ୍କ ପର୍ଯ୍ୟନ୍ତ ଓ ସେକ୍ରେଟାରିଏଟ ପିଅନ ମାୟାଧର ଦାସଙ୍କଠାରୁ ଆରମ୍ଭକରି ଉପମନ୍ତ୍ରୀ ଶ୍ରୀଯୁକ୍ତ ବାଞ୍ଛାନିଧି ମହାପାତ୍ରଙ୍କ ପର୍ଯ୍ୟନ୍ତ କୁମାରୀ ଲଳିତାଙ୍କୁ କଏ ନ ଜାଣିଛି ?" ଟ୍ରାମେ, ବାସେ, ଦୋକାନେ, ବନ୍ଦରେ, ବଜାରେ, ସହରେ ଯେଉଁଠି ଗୁନ ସେଠି 'ଗୁ' ନୟ—ସେଠି କୁମାରୀ ଲଳିତା ମିଶ୍ର ।" ପବନପାଇଁ ଅବରୋଧ ଅଛି—ମାତ୍ର ଲଳିତାଙ୍କ ପାଇଁ ଅବରୋଧ ନାହିଁ । ସେ ସର୍ବତ୍ର ସଞ୍ଚାରିଣୀ—ସର୍ବତ୍ର ବିହାରିଣୀ ଏଇ କୁମାରୀ ଲଳିତା ମିଶ୍ରଙ୍କୁ ଯଦି ଆପଣ ନ ଜାଣନ୍ତି—ତେବେ ମୁଁ କହୁଛି—ଶୁଣନ୍ତୁ— ।

ଆମ ସହରରେ ଟେଲିଫୋନ ଏକ୍ସଚେଞ୍ଜ ଅଫିସରେ ଯେତୋଟି ଝିଅ କାମ କରୁଥିଲେ ତା ମଧ୍ୟରେ ଲଳିତା ମିଶ୍ରଥିଲେ ଅସାଧାରଣ । ସେ ଯେ ଖୁବ୍ ସୁନ୍ଦରୀ ଥିଲେ, ତା ନୁହେଁ । କେତେକ କହନ୍ତି, ରଙ୍ଗମଞ୍ଚରେ ଅଭିନୟ କରିବାରେ ତାଙ୍କର ଖୁବ୍ ଦକ୍ଷତା

ଥିଲି ଓ ସେ ଭଲ ଗୀତଗାଇ ପାରୁଥିଲେ । ମାତ୍ର ତାଙ୍କର ଏଇଗୁଣ ପାଇଁ ମୁଁ ତାଙ୍କୁ ମୋ ଗଳ୍ପର ନାୟିକା ହିସାବରେ ମୂଲ୍ୟ ଦେଉନାହିଁ ।

କୁମାରୀ ଲଳିତା ମିଶ୍ର ଥିଲେ ଅତ୍ୟାଧୁନିକା, ଆଉ ଖୁବ୍ ମେଳାପି ଝିଅ ! କଥାବାର୍ତ୍ତାରେ ତାଙ୍କର ରୁଚି ଜ୍ଞାନ ତ ଥିଲା— ଥିଲା ମଧ୍ୟ ଏକ ବିଶିଷ୍ଟ କଳା —ଗୋଟାଏ ସୁନିୟନ୍ତ୍ରିତ ଆବେଗ— ଆଉ ପରକୁ ଆପଣାର କରି ପାରିବାରେ ଏକ ଅସମ୍ଭବ ସମ୍ମୋହନ ଶକ୍ତି ! ସେଥିଲାଗି ସହରର ବହୁ ଯୁବକଙ୍କ ସଙ୍ଗେ ତାଙ୍କର ପରିଚୟ ଥିଲା – ବନ୍ଧୁତ୍ୱ ଥିଲା, ଭାବଥିଲା । ଆଉ କେତେକଙ୍କ ସଙ୍ଗେ ଏହାଠାରୁ ଅଧିକ ବି କିଛିଥିଲା । ସେ ରହୁଥିଲେ ତାଙ୍କ ଅଫିସଠାରୁ କିଛି ଦୂରରେ ଗୋଟାଏ କୋଠାର ଦୋମହଲା ଉପରେ ମେସ କରି । ଯେମାନଙ୍କ ମେସ୍‌ରେ ଅଭିନେତ୍ରୀ ଥିଲେ, ଶିକ୍ଷୟିତ୍ରୀ ଥିଲେ, ଆଉ କିରାଣୀ ବି ଥିଲେ । ମୋଟରେ ଆଠଟି ତରୁଣୀଙ୍କୁ ନେଇ ତାଙ୍କ ମେସଟି ଚାଲୁଥିଲା । ସକାଳୁ ରାତିଯାଏ ବହୁ ପୁରୁଷ ସେ ଘରକୁ ଯା'ଆସ କରନ୍ତି । ଛାତ୍ର, କିରାଣୀ, ଡାକ୍ତର, କଣ୍ଟ୍ରାକ୍ଟର, ଅଧ୍ୟାପକ, ଓକିଲ, ବ୍ୟବସାୟୀ ଆଦି ବହୁ କିସମର ଲୋକ । ମୁଁ ସେତେବେଳେ ସମ୍ପାଦକର ଜୀବନ ଅତିବାହିତ କରୁଥିଲି । ତେଣୁ ବହୁ ଶିଷ୍ଟ, ଅଶିଷ୍ଟ ବ୍ୟକ୍ତିମାନଙ୍କ ସଙ୍ଗେ ମୋତେ ମିଶିବାକୁ ପଡ଼ୁଥିଲା । ମୁଁ ଥିଲି ସେହି ସହରଟି ପାଇଁ ଏକ ବିଶିଷ୍ଟ କାଗଜର ଏକମାତ୍ର ପ୍ରତିନିଧି । ତେଣୁ ପାନ-ଦୋକାନୀଠାରୁ ଆରମ୍ଭକରି ମନ୍ତ୍ରୀଙ୍କ ପର୍ଯ୍ୟନ୍ତ ସବୁଠାରେ ମୋର ପରିଚୟ ଓ ସମ୍ମାନଥିଲା । ନାନା ବ୍ୟବସାୟରେ ମାସିକ ବହୁ ଅର୍ଥ ଉପାର୍ଜନ କରୁଥିବାରୁ ଏବଂ ମୋର ବ୍ୟକ୍ତିତ୍ୱ ଆଉ ମାମଲତକାରୀ

ଗୁଣ ଯୋଗୁ, ମୋର ମନ ମନ୍ଦିରରେ ଗୋଟାଏ ସମ୍ମାନକର ପ୍ରତିପତ୍ତି ମଧ୍ୟ ଥିଲା ।

କୁମାରୀ ଲଳିତା ମିତ୍ରଙ୍କ ସହିତ ମୋର ଯେଉଁ ପରିଚୟ ହେଲା, ତାହା ଗଳ୍ପ ମଧ୍ୟରେ ଗୋଟିଏ ଅଯଥା ନାଟକୀୟ ସନ୍ଦର୍ଭ ସୃଷ୍ଟି କଲେ ବି ମୋ ଚିତ୍ତରେ ତାହା କୁଣ୍ଠିତ ଅଥଚ କରୁଣ ପ୍ରତିକ୍ରିୟା ସୃଷ୍ଟି କରିଛି ।

ଅଳ୍ପଦିନର କଥା । ସେ ଏକ ଶୀତର ହାଲୁକାକର ଗୋଧୂଳି । ମୁଁ ସାଇକେଲରେ ଫେରୁଛି ମୋର ଘରକୁ, ହଠାତ୍ ସେଇ ମେସ୍ ଆଗରେ ସାଇକେଲରେ ବ୍ରେକ୍ ମାରିବାକୁ ବାଧ୍ୟ ହେଲି । ଆଗରେ ମୋର ଘୋର କୋଳାହଳ । ରାସ୍ତାକୁ ଅବରୋଧ କରି ଗୋଟିଏ କ୍ଷୁଦ୍ର ଜନତା ଆନନ୍ଦ ଉତ୍ତେଜନାରେ ଉଦ୍ଭ୍ରାନ୍ତ ହୋଇ ହାତ ହଲାଇ ନାଚିବାକୁ ଆରମ୍ଭ କରି ଦେଇଛନ୍ତି । ଆଉ ଚିତ୍କାର କରୁଛନ୍ତି—"ହଃ-ହଃ—ହଃ—ଡ଼ଃ-ଡ଼ଃ-ଃ-ଡ଼ଃ ।"

ଗୋଟିଏ ତରୁଣୀ ବ୍ୟତିବ୍ୟସ୍ତ ଭାବେ ଆର୍ତ୍ତଚିତ୍କାର କରି ସେଇ ଜନତା ବେଷ୍ଟିତ ବୃତ୍ତଟି ମଧ୍ୟରେ ଏ ପଟୁ ସେପଟକୁ ପ୍ରାଣ ବିକଳରେ ଦୌଡ଼ି ଲାଗିଛି, ଆଉ ତା ପଛରେ ଗୋଟିଏ ଷଣ୍ଢ଼ ଲାଞ୍ଜ ଟେକି କମଳ ଦୋହଲାଇ ଦୋହଲାଇ ଶିଙ୍ଗ ଦୁଇଟା ଆଗକୁ ସିଧା କରି ଗୋଡ଼ାଇଛି ତରୁଣୀଟିକୁ ଭୂଷିବ ବୋଲି । ନିଃସହାୟା ପଳାୟନ ତତ୍ପରା—ତରୁଣୀଟିର କେଶବାସ ବିପର୍ଯ୍ୟସ୍ତ । କଟୀ ସଲଗ୍ନ ଶ୍ଳଥ ଶାଢ଼ୀ ଓ ସାୟାକୁ ଏକାଠି ଜାକିଧରି ଦୌଡ଼ୁ ଦୌଡ଼ୁ ସେ ଅତି କରୁଣ ଚିତ୍କାର କରୁଥିଲା ଏବଂ ପ୍ରାଣହାନି ଓ ସମ୍ମାନ-ହାନିର ମିଳିତ ଆଶଙ୍କାରେ ସେ ଏପରି ମୁହ୍ୟମାନ ହୋଇପଡ଼ିଥିଲା

ଯେ, ତା ଚାରିଟିରୁ ଗୋଟିଏ ଅକ୍ଷରରେ ଅର୍ଦ୍ଧସ୍ଵର ମୂର୍ଚ୍ଛନା ଛଡ଼ା ଆଉ କିଛି ବାହାରୁ ନ ଥିଲା। ଉନ୍ମତ୍ତ ଜନତା ଏଇ ବିବଜ୍ଞ ଦୃଶ୍ୟଟିକୁ ଉପଭୋଗ କରିବା ଲାଗି ଷଣ୍ଢଟିକୁ ଉତ୍ତେଜିତ କରୁଥିଲେ ଏବଂ ନିଜର ପାଶବିକ ପ୍ରବୃତ୍ତିକୁ ଚରିତାର୍ଥ କରିବାଲାଗି ସେମାନେ ଏହି ଦୃଶ୍ୟଟିକୁ ନିଜର ଆଟୋପ ମଧ୍ୟରୁ ଅଦୌ ଛାଡ଼ିଦେଉ ନଥିଲେ। କେତେକ ଭେଣ୍ଡିଆ ଷଣ୍ଢଟିକୁ ଦୂର କରିଦେବାକୁ ଛଳନା କରି ଷଣ୍ଢଟିକୁ ପିଟୁଥିଲେ, କିନ୍ତୁ ତାକୁ ପଳାଇବାଲାଗି ବାଟ ଛାଡ଼ୁ ନଥିଲେ, ଏ ଦୃଶ୍ୟ ମୋର ଅସହ୍ୟ ହେଲା। ମୁଁ କାଳ ବିଳମ୍ବ ନକରି ଜନତାର ଭଡ଼ଠେଲା ଆଟୋପ ମଧ୍ୟରେ ଧସେଇ ପଶିଲି ଏବଂ ତରୁଣୀଟିର ହାତଧରି ପୁରୁଷୋଚିତ ସାହସ ଆଉ ଉନ୍ମାଦନାରେ ତାଙ୍କୁ ବାହାରକୁ ଭିଡ଼ିଆଣି ତାଙ୍କ ମେସ ବାରଣ୍ଡା ଉପରକୁ ଉଠିଗଲି। ଷଣ୍ଢ ଚାଲିଗଲା— ଜନତା ବି ଛିନ୍ନଛତ୍ର ହେଲେ। ତରୁଣୀଟି ସେଇ ବାରଣ୍ଡା ଉପରେ ଅଚେତ ହୋଇ ପଡ଼ିଗଲେ। ମୁଁ ତାଙ୍କୁ ଟେକି ନେଇ ତାଙ୍କ ମେସ୍ ଭିତରକୁ ଗଲି। ତିନି ଚାରୋଟି ତରୁଣୀ ମୋ ଚାରିପଟେ ଘେରିଗଲେ ଏବଂ ଉପଯୁକ୍ତ ଉପଚାର ପ୍ରୟୋଗ ପରେ ସେ ଆଖି ମେଲାଇ ଚାହିଁଲେ। ମୁଁ ତାଙ୍କ ଖଟ ପାଖେ ଗୋଟିଏ ଚୌକିରେ ବସି ତାଙ୍କର ସୁନ୍ଦର କେଶରାଶି ଗୁଡ଼ିକୁ ମୋର ଅଂଗୁଳିରେ ସାଉଁଳୁଥିଲି। ମନ ମଧ୍ୟରେ ମୋର ସେଇ କୁତ୍ସିତ ପାଶବିକ ଦୃଶ୍ୟଟିର ମନ୍ଥନ ଚାଲିଥାଏ ଏବଂ ମୋର କାର୍ଯ୍ୟଲାଗି ଭିତରେ ମୁଁ ଏକ ମଧ୍ୟଯୁଗୀୟ ବୀରତ୍ଵପୂର୍ଣ୍ଣ ନାଟକୀୟ ଆମୋଦ ଅନୁଭବ କରୁଥାଏ।

ହଠାତ୍ ସେ ଆଖି ମେଲେଇ ମୋ ଆଡ଼କୁ ଚାହିଁ ରହିଲେ। ଅବଶ୍ୟ ଦୃଷ୍ଟି ତାଙ୍କର ଅର୍ଦ୍ଧ ନିମିଳିତ। କ୍ଳାନ୍ତି, ଅବସାଦ, ଅପମାନ ଲଜ୍ଜା ଓ ନିଃସହାୟ ଅନୁଭୂତିର ଏକ ମିଶ୍ରିତ କାଳିମା ତାଙ୍କ

ମୁଖମଣ୍ଡଳରେ ଲକ୍ଷ୍ମୀ ଚ୍ଛିହ୍ନ ରହିଛି । ହଠାତ୍ ମୋର ହୃଦୟ ନରମ ହୋଇ ଆସିଲା ଏବଂ ତାଙ୍କର ସେଇ ମୂର୍ତ୍ତିଟି ମୋର ହୃଦୟ-ବୀଣାର ସବୁଠାରୁ କ୍ଷୀଣ ଓ କରୁଣ ତାରଟିକୁ କମ୍ପିତ କଲା । ମୁଁ ସବୁ ଭୁଲିଗଲି । ମମତାପୂର୍ଣ୍ଣ ହୃଦୟରେ ତାଙ୍କର ମୁଖଚନ୍ଦ୍ରଟିକୁ ମୁଁ ମୋର ଆଙ୍ଗୁଳିରେ ସାଉଁଳି ଦେଲାବେଳେ ସେ ମୋର ହାତଧରି ପକାଇ ଟିକିଏ ହସିଦେଲେ । ମୋର ମନେହେଲା—ତାଙ୍କର ଆହତ କ୍ରନ୍ଦନଶୀଳ ଆତ୍ମା ତାଙ୍କର ଆଖିର ଲୋତକରେ ପ୍ରକାଶିତ ନ ହୋଇ ସତେ ବା ତାଙ୍କ ଅଧରର କମ୍ପନରେ ହିଁ ପ୍ରକାଶ ପାଉଛି । ସତେ ବା ସେଇ ହସଟି ତାଙ୍କ ହୃଦୟର ବେଦନା ପ୍ରକାଶ ଲାଗି ଏକ ଅଭିନବ କଳାକୌଶଳ ।

ମୁଁ ପଚାରିଲି—'କପରି ଲାଗୁଛି ?' 'ବେଶ ଭଲ—ଟିକିଏ ପାଣି ଦିଅନ୍ତୁ ।' ବେଶ ଆସ୍ଥାଶୀଳ କଣ୍ଠରେ ସେ ମତେ ଆଦେଶ ଦେଲେ । ପାଣି ପିଇସାରି ସେ ମୋର କହୁଣୀଠାରୁ ପାପୁଲି ପର୍ଯ୍ୟନ୍ତ ଅଙ୍ଗଟିକୁ ନିଜର କୋମଳ ପାପୁଲିରେ ଅନେକ ଥର ଆଉଁଷିଲେ । ତା ପରେ ହଠାତ୍ ଉଠିପଡ଼ି ସେ ମୋତେ କହିଲେ—

"ଚାଲନ୍ତୁ ମୋର କୋଠରୀକୁ—।" ତାଙ୍କ କୋଠରୀରେ ମୁଁ ତାଙ୍କୁ ବିଛଣାରେ ଶୋଇବାକୁ କହିଲି । ଇଙ୍ଗିତ ପାଇ ମୁଁ ତାଙ୍କ ପାଖରେ ବସିଲି । ଅନେକ ମିନିଟ ଧରି ଆମ୍ଭେମାନେ ନୀରବ ରହିଲୁ । କୋଉଠୁ କିଣ ବା କଥା ଆରମ୍ଭ କରିବି, ମୁଁ ଜାଣିପାରୁ ନ ଥିବାରୁ ଏବଂ ଏକ କରୁଣ ପରିବେଶରେ ମୁଁ ଅଭିଭୂତ ଥିବାରୁ ମୋ ଭଳି ପ୍ରଗଲ୍‌ଭ, ମୂକ ହେବାକୁ ବାଧହୋଇ ପଡ଼ିଥିଲି । କେତେକ ଘଣ୍ଟା ପୂର୍ବରୁ ଯାହା ଘଟିଛି ସେ ବିଷୟରେ କିଛି ପଚାରିବା ଲାଗି ମୋର ସାହସ କୁଳାଉ ନ ଥିଲା । ସେ କିନ୍ତୁ ଆରମ୍ଭ କଲେ—

ମୁଁ ଆପଣଙ୍କୁ ଭଲଭାବେ ଜାଣେ···

"ଆପଣ ଶ୍ରୀଯୁକ୍ତ·········?" ମୁଁ କହିଲି···"ହଁ ହଁ, ଆପଣ ଠିକ ଜାଣିଛନ୍ତି···ମୁଁ ବି ଆପଣଙ୍କୁ ଜାଣିଛି···କେବଳ ପରିଚୟ ନ ଥିଲା।"

ଜ୍ୟୋତି ଲଳିତା ତାଙ୍କ ଓଢ଼ଣୀ ଉପରେ ଟିକିଏ ଲଘୁ ଚପେଟାଘାତ କରି ଆଶ୍ଚର୍ଯ୍ୟ ହେବା ଭଳି କଲେ···

"ପରିଚୟ ହୋଇନାହିଁ ?? ଆଶ୍ଚର୍ଯ୍ୟ କଲେ ଆପଣ । ଏ ସହରରେ ମୋ ସଙ୍ଗେ ପରିଚୟ ହୋଇନାହିଁ ଏପରି ଶିକ୍ଷିତ ଯୁବକ ମୁଁ ଏଠି ଆପଣଙ୍କୁ-ଇ ଦେଖୁଛି । ମୋର ତ ମନେହୁଏ, ନିଶ୍ଚୟ କୌଣସି ଗୋଟେ ପରିସ୍ଥିତିରେ ଆମେ ଦୁହେଁ ଅଳ୍ପସମୟ ଲାଗି ହେଉ ପଛେ ଦି'ପଦ କଥାବାର୍ତ୍ତା ନିଶ୍ଚୟ ହୋଇଥିବା । ସେ ଯାହାହେଉ···ଆପଣ ମୋର ବହୁତ ଉପକାର କରିଛନ୍ତି । ନ ହେଲେ, ସେମାନେ ତ ମୋର ସମ୍ମାନତକ ନେଇ ସାରିଥିଲେ; ବାକି ଜୀବନଟା ଥିଲା—ନିଶ୍ଚୟ ଷଣ୍ଢ ସେଠାକୁ ନେଇ ଯାଇଥାନ୍ତା । କହନ୍ତୁ, ମୁଁ ଆପଣଙ୍କର ପ୍ରତିବଦଳରେ କଣ ଉପକାର କରିପାରେ ?

ମୁଁ ଏଭଳି ପ୍ରଶ୍ନରେ ବଡ଼ଲଜ୍ଜିତ ହେଲି ଏବଂ ଅଳ୍ପ ହସି କହିଲି—ନା, ସେମିତି କିଛି ଉପକାର ମୁଁ ଆପଣଙ୍କ ଠାରୁ କଣ ବା ଆଶା କରିବି ? ଆଉ ଆପଣ ବା କଣ କରିପାରିବେ ? ସେ ସବୁ କଥା ଛାଡ଼ନ୍ତୁ । ଆପଣଙ୍କର ସେଇ ଦୁରବସ୍ଥା ଲାଗି ବାସ୍ତବିକ ମୁଁ ଦୁଃଖିତ ।

ସେମାନେ କିନ୍ତୁ ବେଶ୍ ସୁଖୀ । ଦେଖନ୍ତୁ ମୋ ସଙ୍ଗେ କେବଳ ପରିଚିତ ହୋଇ ପାରିଲେ-ଇ ବହୁ ଯୁବକ ସେମାନଙ୍କ କାମନା ଅନୁସାରେ ମୋ ପଛରେ ଷଣ୍ଢ ଲଗାଇ ସେମାନଙ୍କର

କୃତଜ୍ଞତା ଜଣାନ୍ତି । ଆପଣ ଶୁଣିବେ ? କୁମାରୀ ଲଳିତା ବନ୍ଧଣା ଉପରେ ଉଠି ବସିଲେ ।

"ଶୁଣନ୍ତୁ ପିଲାଦିନେ ଇଂରାଜୀ ସ୍କୁଲରେ ପାଠ ପଢ଼ି, ମୁଁ ଟିକେ ଆମ ଦେଶୀ ଝିଅଙ୍କଠାରୁ ବେଶି ଆଗଚଲା ହୋଇ ଉଠିଥିଲି । ହିନ୍ଦୀ, ବଙ୍ଗଳା ଆଉ ଇଂରାଜୀ ଭାଷାରେ ଭଲ ଗୀତ ବି ମୁଁ ଗାଇ ପାରୁଥିଲି । ସହରରେ ବହୁବାର ବିଭିନ୍ନ ରଙ୍ଗମଞ୍ଚରେ ବିଭିନ୍ନ ନାୟିକା ଭୂମିକାରେ ଅଭିନୟ କରି ମୁଁ ପ୍ରଶଂସା ଅର୍ଜନ କରିଛି । କଥାବାର୍ତ୍ତା କରିବାର କାୟଦା, ହାସ୍ୟ ବା ବ୍ୟଙ୍ଗ ସୃଷ୍ଟିରେ କଳା ଓ ମାନା ଜ୍ଞାନ ଥିବାଯୋଗୁଁ ଏବଂ ନିଃସଙ୍କୋଚରେ ବହୁ ପୁରୁଷଙ୍କ ସଙ୍ଗେ ମିଶି ପାରୁଥିବାରୁ କ୍ରମେ ବହୁ ଲୋକ ମୋର ପରିଚିତ ହେଲେ । ପ୍ରଥମେ କେବଳ ଭଲ ଲାଗୁଥିଲା ବୋଲି ମୁଁ ପୁରୁଷମାନଙ୍କ ସଙ୍ଗେ ବେଶ୍ ଫୁର୍ତ୍ତି କରୁଥିଲି । ମୋର ନାରୀ ବନ୍ଧୁମାନେ ମୋର ଏଇ ପ୍ରତିଭାକୁ ଈର୍ଷା କରୁଥିଲେ । ସେମାନଙ୍କର ମଧ୍ୟ ଏଇ ପୁରୁଷମାନଙ୍କ ସଂଗେ ମିଶି ଆଡ୍ଡା ଦେବାକୁ ଓ ଫୁର୍ତ୍ତି କରିବାକୁ ଭିତରେ ଭିତରେ ଖୁବ୍ ଇଚ୍ଛା ଥିଲା । ମାତ୍ର ସେ ଗୁଡ଼ାକ ବଡ଼ ସାଆନ୍ତ । ପେଟରେ ଭୋକ, କିନ୍ତୁ ମୁହଁରେ ଲାଜ । ମୋର ପାରିବାରିକ ଅସୁବିଧା ଓ ଅର୍ଥନୈତିକ ସଙ୍କଟ ହେତୁ ମୋତେ ଏଠି ଚାକିରି କରିବାକୁ ପଡ଼ିଲା । ମଝିରେ ମୋର ଜଣଙ୍କ ସଙ୍ଗେ ବିବାହ ପ୍ରସ୍ତାବ ଉଠିଥିଲା । ଆମେ ଦୁହେଁ ଅନେକଟା ପ୍ରେମରେ ମଧ୍ୟ ପଡ଼ିଥିଲୁ । ମାତ୍ର ମୋର ବହୁ ପୁରୁଷବନ୍ଧୁଙ୍କୁ ଦେଖି ସେ ମୋର ଚରିତ୍ରରେ ସନ୍ଦେହ କରି ମୋତେ ବିବାହ କରିବାକୁ ଅମଙ୍ଗ ହେଲେ । କିନ୍ତୁ ଦେଖନ୍ତୁ ମହାଶୟ ! ସେଇ ଭଦ୍ରଲୋକ ମୋର ବହୁ ପୁରୁଷବନ୍ଧୁ ଥିବାର ଜାଣି ମଧ୍ୟ ମୋତେ ଆଜୀବନ ପ୍ରେମ କରିବାକୁ ଅମଙ୍ଗ

ନ ଥିଲେ । ବଜାରରେ କେବଳ 'ସଣ୍ଟିଲ'ର ଆବଶ୍ୟକତା ଅଛି—ପ୍ରେମରେ କୁଆଡ଼େ 'ସଣ୍ଟିଲ' ନ ଥିଲେ ବରଂ ଚଳେ । ଆମେ ଆଠ ଜଣ ଏଇ ମେସ୍‌ରେ ଥାଉଁ । ଆପଣ ତ ଦେଖି ସାରିଛନ୍ତି—ଏଇ ଆଠଟି ଯାକ ତରୁଣୀ ସମସ୍ତେ ମୋ ଠାରୁ ସୁନ୍ଦରୀ । ମୋର ସୌନ୍ଦର୍ଯ୍ୟ ନାହିଁ । କିନ୍ତୁ ଏଇ ବୋକା ପୁରୁଷଗୁଡ଼ାକ ଯେତେବେଳେ ପ୍ରେମ କରିବାକୁ ଆସନ୍ତି, ସେମାନେ ରୂପର ସୌନ୍ଦର୍ଯ୍ୟଟାକୁ-ହିଁ ପ୍ରେମକର ବସନ୍ତି । ସେଗୁଡ଼ିକ ଏଡ଼େ ହତଭାଗ୍ୟ—ଯେଉଁମାନେ ସେମାନଙ୍କୁ ଠକନ୍ତି, ସେମାନଙ୍କୁ ବୋକା ବନାଇ ସ୍ୱାର୍ଥସାଧନ କରି ନିଅନ୍ତି—ଏଗୁଡ଼ାକ ସେଇମାନଙ୍କ ପଛରେ "ପ୍ରେମ" ଲାଗି ଦୌଡ଼ାଇଥାନ୍ତି । ସେମାନେ ଶୁଣି କହନ୍ତି, "ପ୍ରେମ ପରମ ଦୁର୍ଲଭ ପଦାର୍ଥ ।"

ଏଇଠି ମୁଁ କଥାରେ ତାଙ୍କର ବାଧା ଦେଇ କହିଲି—"ନା-ନା-ହଁ,-ଠିକ୍ ଠିକ୍ ଲଳିତାଦେବୀ ! ପ୍ରଣୟ ବଜାରରେ କେବଳ ରୂପର ପଦାର୍ଥକୁ ସମ୍ବଳ କରନ୍ତି ଯେଉଁ ତରୁଣୀଗଣ, ସେମାନେ କ୍ୱଚିତ ପ୍ରେମ କରି ପାରନ୍ତି । ତାର କାରଣ, ରୂପର ଐଶ୍ୱର୍ଯ୍ୟଲାଭ କରି ସେମାନେ ଏତେ ମୂଢ଼ ଆଉ ନିଶ୍ଚିନ୍ତ ହୋଇ ପଡ଼ନ୍ତି ଯେ ହୃଦୟ-ବୃତ୍ତିର ଅଭାବକୁ ପୂରଣ କରିବା ଲାଗି ସେମାନେ ଆଦୌ ଚେଷ୍ଟା ବି କରନ୍ତି ନାହିଁ । ତେଣୁ ପ୍ରେମ ବେପାରରେ ଦେବାଳିଆ ହୋଇ ହାର ମାନନ୍ତି ଶେଷରେ ସେଇମାନେ-ହିଁ । ମୁଁ ତ କ୍ୱଚିତ୍ ସୁନ୍ଦରୀ ତରୁଣୀ ଦେଖିଛି—ଯେଉଁମାନେ "ପ୍ରେମିକା" ହେବାର ଯୋଗ୍ୟତା ହାସଲ କରିଛନ୍ତି । ଆଉ ପ୍ରକୃତ ପ୍ରେମଟା ହିଁ ଅଧିକାଂଶରେ ହୃଦୟର ହିଁ ବ୍ୟାପାର ।

କୁମାରୀ ଲଳିତା ମୋର କଥାରେ ବାଧାଦେଇ କହିଲେ—"କିନ୍ତୁ ଆପଣଙ୍କର ଏଇ ପୁରୁଷଜାତିଟା ସେଇ ହୃଦୟଟାକୁ

ରୂପବନ୍ତୀମାନଙ୍କ ପାଖରେ ହୃଦୟ ଦାବକର ବସନ୍ତି । ସେମାନେ ଏତେ ବୋକା । ସେମାନେ ହୃଦୟର ସୌନ୍ଦର୍ଯ୍ୟ ନ ଖୋଜି, ସୌନ୍ଦର୍ଯ୍ୟ ମଧ୍ୟରୁ ହୃଦୟକୁ ଖୋଜନ୍ତି । ଆକାଶରେ ଚନ୍ଦ୍ର ନ ଖୋଜି, ଚନ୍ଦ୍ର ମଧ୍ୟରେ ଆକାଶକୁ ଖୋଜିଲେ କି ଆକାଶ ମିଳେ ? × ×

ଶୁଣନ୍ତୁ; ହଁ, କେଉଁଠି କହୁଥିଲି ? ହଁ, ଏଇ ଆମ ମେସ୍‌ରେ ଆମେ ଆଠ ଜଣ ଅଛୁ । ସକାଳୁ ସଞ୍ଜଯାଏ ଏଠାକୁ ବହୁ ପ୍ରେମିକ ଆସନ୍ତି । ବହୁ ଧରଣର ପ୍ରେମିକ । ସେମାନେ ଏଠାକୁ ଆସିବା ପୂର୍ବରୁ ମୋ ସଂଗେ ପରିଚୟ କରିନଥାନ୍ତି ! କାରଣ ସେଇଟା ସବୁଠାରୁ ସୋଜା କଥା । ସେମାନେ ମୋ ସଙ୍ଗେ ମିଶନ୍ତି, ଥଟ୍ଟା ପରିହାସ କରନ୍ତି, ଘଣ୍ଟା ଘଣ୍ଟା ଧରି ମୋ ରୁମରେ ବସି ମୋତେ ଗୀତ ଫରମାସ୍ କରନ୍ତି, ମୋ ଲାଗି ଚକୋଲେଟ ଆଣନ୍ତି, ଶାଢ଼ୀ ଆଣନ୍ତି, ବ୍ଲାଉଜକନା ଆଣନ୍ତି, ବହୁ ଧରଣର ଉପହାରରେ ମୋର ଘର ପୂର୍ଣ୍ଣ କରି ଦେଇଛନ୍ତି । ଟଙ୍ଗାଲ୍ ଚଙ୍ଗାଲୁ ସେମାନଙ୍କ ମଧ୍ୟରୁ କେତେକଙ୍କୁ ପ୍ରକୃତରେ ମୁଁ ଭଲପାଇ ବସିଥିଲି । ସେମାନଙ୍କ ଆସିବା ବେଳକୁ ଉତ୍କଣ୍ଠା ଆଉ ଉଦ୍‌-ବେଗରେ ଅପେକ୍ଷମାନା ହୋଇ ରହୁଥିଲି । କାହାର କୋଟ୍‌ରେ ଫୁଲ୍ ଖୋସିଦେଉଥିଲି । କାହା ଲାଗି ରୁମାଲ ତିଆରି କରି ଦେଉଥିଲି । କିନ୍ତୁ ଏତେ ବୋକା ସେମାନେ ? ଏତେ କୃତଘ୍ନ ସେମାନେ ? ଏତେ ସଇତାନ ନିମକହାରାମ୍ ସେଗୁଡ଼ାକ !

କୁମାରୀ ଲଳିତା କିଛି ସମୟ ନୀରବ ହେଲେ । ତା'ପରେ ଖୁବ୍ କ୍ଳାନ୍ତିଜନକ ନିଶ୍ୱାସ ଛାଡ଼ି ପୁଣି ଚକଆ ଉପରକୁ ଆଉଜି ଗଲେ ।

"ଏତେ ହୃଦୟହୀନ ପଶୁ ସେଗୁଡ଼ାକ ! ସେମାନେ ମୋତେ ପ୍ରେମର ସମ୍ମାନ ଦେଇ ନାହାନ୍ତି । ସେମାନେ ବାହାରେ ମୋର

ନିନ୍ଦା କରନ୍ତୁ, ମୋ ନାଁରେ କୁତ୍ସାରଚନା କରନ୍ତୁ, ମୋତେ ନେଇ ନାନା କୁତ୍ସିତ ଆଉ ଅଶ୍ଳୀଳ ଗୁଜବ ସୃଷ୍ଟି କରନ୍ତୁ, ଆଉ ଶେଷରେ ଏଇ ମେସ୍‌କୁ ମୋ ଛଡ଼ା ଆଉ ଆଠଟି ତରୁଣୀଙ୍କ ମଧ୍ୟରେ ଯାହାକୁ ହେଲେ ଜଣଙ୍କୁ ପ୍ରେମ କରି ବସନ୍ତୁ । ମୋ ସଙ୍ଗରେ ପରିଚୟ କରିସାରି—ମୋ ଯୋଗୁଁ ମୋ ସଖୀମାନଙ୍କ ସଙ୍ଗେ ସେମାନେ ପରିଚିତ ହୁଅନ୍ତୁ । ତା'ପରେ—ତା'ପରେ ଆଉ ସେମାନେ ମୋର ଦୁଆର ମାଡ଼ନ୍ତୁ ନାହିଁ । ଏଇ ଢଙ୍ଗରେ ଥାଇ ମୁଁ ଦେଖେ । ସବୁ ମୋ ଆଖିରେ ପଡ଼େ, ସବୁ ମୋ କାନ ଶୁଣେ । ମୋର ସଖୀମାନେ ଭାବନ୍ତି, ମୁଁ ବୋକା । ସେଇ ଟୋକାଗୁଡ଼ାକ ବି ସେଇଆ— । ସେମାନେ ବାହାରେ ମୋର ଗୁଣ ଗାଆନ୍ତି । ମୁଁ ଡାହୁକ—ମୋତେ ମନେଇ ପିଞ୍ଜରାରେ ରଖି ଫାନ୍ଦ ପାତିଲେ ସହସ୍ର ଡାହୁକ ଆପେ ଧରାଦେବେ । ମୁଁ କୁଆଡ଼େ ଦୂଷ୍ଟା—ଷୋଳସହସ୍ର ଗୋପୀ କୃଷ୍ଣଙ୍କୁ ଯୋଗାଇବାଲାଗି ଏଠାରେ ମୁଁ ଫାନ୍ଦ ମେଲିଛି । ମୋତେ ପହିଲୁ ଧରିପାରିଲେ, ହାତକରି ପାରିଲେ, ଏମାନଙ୍କ ମଧ୍ୟରୁ ଯାହାକୁ ଇଚ୍ଛା ଗୋଟେ ପ୍ରେମ କରି ହେବ । ଏଇ ପଶୁଗୁଡ଼ାକ ମୂଳରୁ ମୋତେ ଘୃଣା କରନ୍ତୁ - ଚୁମା ଖାଆନ୍ତୁ—ଆଲିଂଗନ ଦିଅନ୍ତୁ—କିନ୍ତୁ—କିନ୍ତୁ—

କୁମାରୀ ଲଳିତାଙ୍କ କଣ୍ଠ ବସି ଆସିଲା । ତାଙ୍କ ଆଖି ଛଳଛଳ ହୋଇ ଉଠିଲା ।

"କିନ୍ତୁ—କିନ୍ତୁ—ମୁଁ କଣ ଜାଣୁଥିଲି ସେଗୁଡ଼ାକ ସବୁ ଦୃଷ୍ଟାର ଉପଗ୍ରହ ? ପ୍ରେମିକାର ହୃଦୟ ନେଇ ମୁଁ ସେମାନଙ୍କୁ ଭକ୍ତି କରୁଥିଲି, କିନ୍ତୁ ସେମାନେ ମୋତେ ଦୃଷ୍ଟାର ଆସନରେ ରଖି ବଶ କରୁଥିଲେ । ପ୍ରେମିକାର ଉନ୍ମାଦନାରେ ସେମାନଙ୍କୁ ମୁଁ ଚୁମା

ଘୂଅାଉଥିଲି । କିନ୍ତୁ ଦୂଷ୍ଟର ଲଞ୍ଛନା ଦେଇ ସେମାନେ ମେତେ ଦୟା କରୁଥିଲେ । ବନ୍ଧୁ ପୁରୁଷଙ୍କ ପାଖେ ମୁଁ ଏହିପରି ଠକିଛି ମହାଶୟ ! କିନ୍ତୁ ପୁରୁଷ ମୋତେ ଏମିତି ଠକି ଯାଇଛନ୍ତି । ମୋର ଆଗରେ ସେମାନେ ଯୋଡ଼ି ଯୋଡ଼ି ହୋଇ ସିନେମା ଯା'ନ୍ତି । ରାତି ବାରଟାରେ ସିନେମାରୁ ଫେରନ୍ତି—ବୁଲିଯା'ନ୍ତି—ଗୀତ ଗାଆନ୍ତି । ଶୁଣନ୍ତୁ, ସେଗୁଡ଼ାକ ସମସ୍ତେ ପାଜି, ସମସ୍ତେ ପଥର, ସମସ୍ତେ ବୋକା, ସମସ୍ତ ସଯ଼ତାନ । ମୋର ସଖୀମାନେ କେହି ପୁରୁଷ ଏଠାରେ ନ ଥିବାବେଳେ ସେମାନଙ୍କ କଥା କୋଇ ମିଳିତ ଉପହାସ କରନ୍ତି । ସେମାନଙ୍କ କଥାର—ସେମାନଙ୍କ ଗୃହରୁ —ସେମାନଙ୍କ ଆବେଗର, ସେମାନଙ୍କ ବୋକାମିର, ଆଉ ଶେଷରେ ସେମାନଙ୍କ ମନବ୍ୟାଗର, ଅତି କଦର୍ଯ୍ୟ ସମାଲୋଚନା ସେମାନଙ୍କର ଅନୁପସ୍ଥିତିରେ ହୁଏ । ହାସ୍ୟର ରୋଳ ଉଠେ, ଗୃଲେ ସେମାନଙ୍କୁ ନେଇ ପ୍ରହସନ । ହାୟ ! ବୋକାଗୁଡ଼ାକ ପୁଣି ସେମାନଙ୍କ ପାଖେ ହୃଦୟ ଖୋଜିବୁଲନ୍ତି ! ! !

କୁମାରୀ ଲଳିତା ତାଙ୍କ ତକିଆ ଖୋଳର ଏମ୍ବ୍ରଏଡରୀ ଉପରେ ଅଂଗୁଳି ଚଳାଇ ପୁଣି କହିଲେ—

'ବହୁଦିନ ଅବଶ୍ୟ ଲଗିଲା ମୋତେ ସେମାନଙ୍କ ପ୍ରତାରଣା ବୁଝିବାକୁ । କ୍ରମେ ମୁଁ ଚଲାଖ ହେଲି । ଆଉ କୌଣସି ପୁରୁଷ ସଙ୍ଗେ ମୁଁ ସମ୍ପର୍କ ରଖିଲି ନାହିଁ । କାହାକୁ ଆଉ ପରିଚୟର ସୁଯୋଗ ଦେଲିନାହିଁ । କାହାରି ସଙ୍ଗେ ବି ଆଉ ରଖିଲି ନାହିଁ ଆନ୍ତରିକତା । ଦିନକୁ ଦିନ ମୁଁ ଗମ୍ଭୀର ହେଲି । ସଂଯତ ହୋଇ— ମୁହଁ ଶୁଖାଇ ମୁଁ ସେମାନଙ୍କ ସଙ୍ଗେ ବ୍ୟବହାର କଲି । କେତେ ପୁରୁଣା ଲୋକ ଏ ମେସ୍‌ରୁ ବିଫଳ ହୋଇ ଫେରିଛନ୍ତି । କେତେ

ନୂଆ ଲୋକ ଆସିଛନ୍ତି ଏଠାକୁ ନୂଆ ସଂକଳ୍ପ ନେଇ । କିନ୍ତୁ ମୁଁ କାହାକୁ ଆଉ ମୋ ପାଖେ ପଶିବାକୁ ପ୍ରଶ୍ରୟ ଦେଲିନାହିଁ । ନିଜର ଲୁକ୍ୟାୟିତ ପ୍ରବୃତ୍ତି, ନିଜର କାମନା, ନିଜର ପ୍ରେମ ପ୍ରବଣତାକୁ ଦମନ କରି 'ଦୂତୀ'ର କାର୍ଯ୍ୟ କରିବାକୁ । ନା-ନା ମହାଶୟ ! ମୁଁ ନାରୀ— ଅତି ସାଧାରଣ ଭାବେ ମୁଁ ନାରୀ ।......

କିନ୍ତୁ ଏଇ ବୋକା ଲୋକଗୁଡ଼ାଙ୍କର କଣ ଧାରଣା ହୋଇ ଯାଇଛନ୍ତି ? ସେମାନେ ଭାବିଲେ—ଲଳିତା ମିଶ୍ର ଏଥରକ ତା କାର୍ଯ୍ୟ ଲାଗି ଟଙ୍କା ଚାହେଁ । ଅନେକେ ବି ପ୍ରେମିକା ଜୁଟାଇବା ଲାଗି ମୋତେ ଖୋଲାଖୋଲି ଟଙ୍କା ଆଉ ଅଳଙ୍କାର ଆଦି ଯାଚିବାକୁ ଆରମ୍ଭ କଲେ । ଅପମାନରେ ମୁଁ ଜଳିଯାଉଥିଲି । ଅନୁତାପରେ ମୁଁ ତାତି ଯାଉଥିଲି । ଥରେ ଗୋଟେ ଟୋକା ମୁହଁକୁ ତାରସ୍ଲେଟ ନୋଟ୍ ବଣ୍ଡାଟି ରାଗରେ ଫିଙ୍ଗିଦେଲି । ସେ ଆମ ମେସ୍‌ର ମାଧବୀ ରାୟ ସହିତ ସମ୍ପର୍କ ରଖିବାକୁ ଚାହୁଁଥିଲା । ଟୋକାଟାର ମୁହଁ ଲାଲ୍ ପଡ଼ିଗଲା । କିଛି ନ କହି ସେ ଏଠାରୁ ଚାଲିଗଲା । ମହାଶୟ, ପାନ ଦୋକାନୀ ବି ଶେଷକୁ ମୋତେ ହାତ କରିବାକୁ ଟଙ୍କା ଯାଚିଛନ୍ତି ; ସେମାନଙ୍କୁ ମୁଁ ତାଙ୍କ ମନୋମତ ନାୟିକା ଜୁଟାଇଦେବି ବୋଲି । ସମସ୍ତଙ୍କୁ ନିରାଶ କଲି । ସମସ୍ତେ ମୋ ପାଖରୁ ଅପମାନିତ ହୋଇ ବିଫଳ ମନରେ ଫେରିଲେ । ଆଉ ମୋ ନାମରେ ବେଶି ବେଶି କୁତ୍ସାରଟନା କଲେ । ମୋ ନାମରେ ଅଶ୍ଳୀଳ ଆଉ ଅଶ୍ରାବ୍ୟ ଭାଷାରେ କାନ୍ଥ ବାଡ଼ ପୂରିଗଲା । ମୋତେ ଦେଖିଲେ ସୁଖୁରା ବାଜେ, ଗଳାରୁ ଝଙ୍କାର ବାହାରେ, କଣ୍ଠରୁ ସଂଗୀତ ଝରେ, ଜଣାପଡ଼ିଲା ରେ, ଜଣାପଡ଼ିଲା ରେ ବଣା ମୃଗାକ୍ଷୀ ତୋ ଚାଲି ।

ତା'ପରେ କ୍ରମେ କ୍ରମେ ମୋ ଅଲକ୍ଷ୍ୟରେ ମୋ ଶାଢ଼ୀ ଉପରେ ପାନଛେପ ପଡ଼ିଲା, ମୋ ଯିବା ବାଟରେ ନକଲି

ବନ୍ଧ୍‌କ ପୁଡ଼ିଲି; ମୋ ଉପରକୁ ସୁଉକ୍ତା ଦୋଅଣି ଫିଙ୍ଗାଗଲା । ଆଜି ଆଉ ମୋର ପତ୍ନୀମାନଙ୍କର ବୃତ୍ତାନ୍ତ କାଣ୍ଡ ଆପଣ ନିଜେ ଦେଖିଲେ ଭଲ କଲା । ୧ ଷଣ୍ଢ ଆଜି ମୋତେ କୁଟି ମାରିଥାନ୍ତା । ମୋର ମଲାପରେ କାନ୍ଦୁ ଏ ଷଣ୍ଢଟା ପାଗଳା ହୋଇ ଥାନ୍ତା ଆଉ ଭୁକିବାକୁ ଗୋଡ଼ାଇଥାନ୍ତା ଆପଣଙ୍କର ଏହି ଆଧୁନିକ ସମାଜସଂସ୍ଥାକୁ ।

କୁମାରୀ ଲଳିତା ଏତିକି କହି ତାଙ୍କ ଟେବୁଲ ଉପରେ ରଖାଯାଇଥିବା କାଚ ପୋଗାଇରୁ ପାଣି ଢାଳି ପିଇଲେ । ମୁଁ ମୋ ରୁମାଲରେ ମୋ କପାଳରୁ ଝାଳ ପୋଛିଲି । କୁମାରୀ ଲଳିତାଙ୍କର ଏଇ କୁତ୍ସିତ କାହାଣୀ ଶୁଣିସାରି ମୁଁ ଅତି ସମ୍ବେଦନଶୀଳ କଣ୍ଠରେ କହିଲି, ମୁଁ ଆଜି ଏ ଖବର ନିଶ୍ଚୟ ଖବର କାଗଜରେ ବାହାର କରୁଛି । ବଦ୍‌ମାସଗୁଡ଼ାଙ୍କୁ ମୁଁ ଦଣ୍ଡିତ କରି ପାରେ ।

କୁମାରୀ ଲଳିତା ଉତ୍ତେଜିତ କଣ୍ଠରେ କହିଲେ—

'ନା-ନା-ମହାଶୟ ! ଏ ଖବର ଆପଣ ଆଦୌ ପ୍ରକାଶ କରିବେ ନାହିଁ । ଅବଶ୍ୟ ନାରୀହରଣ, ନାରୀଧର୍ଷଣ ଭଳି ଚମକପ୍ରଦ ଖବରଟିଏ ଖବର କାଗଜର କାଟତି ପାଇଁ ଖୁବ ସାହାଯ୍ୟ କରିଥାଏ । ମାତ୍ର ତା' ଦ୍ୱାରା ନାରୀଙ୍କର ଦୁଃଖ ଯାଏ ନାହିଁ, ବରଂ ବଢ଼େ । ଏହିଭଳି ଖବରଗୁଡ଼ିକୁ ପ୍ରକାଶ କରିବାରେ ଆପଣଙ୍କ ଖବର କାଗଜବାଲାମାନେ ଯେଉଁ ଶୈଳୀ ଓ ଭାଷା ବ୍ୟବହାର କରନ୍ତି, ତାହା ବରଂ ସମାଜର ପଶୁପ୍ରବୃତ୍ତିକୁ ଉତ୍ତେଜିତ କରିବାରେ ବେଶ୍ କାମ ଦିଏ । ଆପଣଙ୍କର କର୍ତ୍ତବ୍ୟ ହେଉଛି—ଆପଣ ଭଲ ପିଲ୍‌ଟିଏ ପରି ଏଠୁ ଘରକୁ ଯାଇ ନିଜ ସ୍ତ୍ରୀଙ୍କ ଆଗେ ଆପଣଙ୍କର ଆଜିକାର ପୌରୁଷପୂର୍ଣ୍ଣ ବୀରତ୍ୱ ଗାଥା

ବନ୍ଦୋବସ୍ତ କରନ୍ତୁ । ଦେଖି ମୁଗ୍ଧ ନୟନରେ ସେ ଆପଣଙ୍କୁ ଚାହିଁ ରହିଥିବେ ।

ତାଙ୍କ କଥାରେ ଆହତ ହୋଇ ମୁଁ ଉଠି ଠିଆ ହେଲି ଏବଂ ବିଦାୟ ନେବା ପୂର୍ବରୁ ମୋର ଶେଷ ଉପଦେଶଟି ଦେଇ ଆସିବାକୁ କର୍ତ୍ତବ୍ୟ ମନେକରି ମୁଁ କହିଲି—

'ତା ହେଲେ ଆପଣମାନେ ଏ ମେସ୍ ଫେସ୍ ଭଳି ଅନ୍ୟ କିଛି ସୁବିଧା କରନ୍ତୁ ଲଳିତାଦେବୀ ! ଏ ସବୁ ମେସ୍‌ଜୀବନ ଆପଣମାନଙ୍କ ଲାଗି ନୁହେଁ । ଆମ ଦେଶ ସଭ୍ୟତାରେ ଏତେଦୂର ଆଗେଇ ନାହିଁ । ହଉ ଥାନ୍ତୁ ; ମୁଁ ଆସୁଛି—'

କୁମାରୀ ଲଳିତା ଉନ୍ମାଦ ରାଗିଣୀ ଭଳି ହସିଉଠିଲେ ଏବଂ ମୋତେ ନମସ୍କାର ଜଣାଇବାକୁ ହାତଯୋଡ଼ି ଠିଆ ହୋଇ କହିଲେ—

'ଆପଣ ବୁଝିଲେ ଛେନା, ଗୁଡ଼, ଆଉ ପାଚିଲା କଦଳୀ । ଆପଣ ଆଉ ଏତେଦିନ ଧରି କି ସମ୍ବାଦ ଦେଶରୁ ସଂଗ୍ରହ କରୁଛନ୍ତି ? ଆପଣ କଣ ଜାଣନ୍ତି ନାହିଁ ଯେ ଆମେ କେତେକ ହସ୍‌ପିଟାଲରେ ଜନ୍ମ ହେବୁ, ଅଫିସରେ ଅର୍ଥ ଉପାର୍ଜ୍ଜନ କରିବୁ, ମେସ୍‌ରେ ରହିବୁ, ହୋଟେଲରେ ଖାଇବୁ, ସିନେମା ହଲ୍‌ରେ ପ୍ରେମ କରିବୁ ଆଉ ଶେଷରେ ସେଇ ହସ୍‌ପିଟାଲରେ ପୁଣି ମରିବୁ ବୋଲି ? ଆମର ସଭ୍ୟତା ଆମ ଲାଗି ଯେ ଏତେ ବ୍ୟବସ୍ଥା କରିଛି, ସେଥିଲାଗି ଆମ ସମାଜ ଆଉ ସଭ୍ୟତାର ଜିନ୍ଦାବାଦ୍ !'

ମୁଁ ବିଦାୟ ନେଲି । ସେ କବାଟ ଦେଲେ ।

---

# ଗପ ଲାଗି ଘଟଣାଟିଏ

ସ୍ତ୍ରୀଙ୍କ ମନେଙ୍କ କଜଆ କରି ପଞ୍ଚାନନ ଷ୍ଟେସନ ଯିବାକୁ ଜିନିଷ-ପତ୍ର ସଜାଡିଲେ ।

ଦୁଇ ବର୍ଷ ହେଲା ବିବାହ । ସଂସାରରେ ବର୍ଷକର ପୁଅଟିଏ, ମୋଟ ପାଞ୍ଚ ଜଣଙ୍କର କୁଟୁମ୍ବ । ଉପାର୍ଜିତ ଅର୍ଥରେ ଅବଶ୍ୟ ସଂସାର ଚଳିଯାଉଛି । ମାତ୍ର ପଞ୍ଚାନନ ତ ଆଉ ପାଞ୍ଚ ଜଣଙ୍କ ପରି ସଂସାରୀ ନୁହନ୍ତି ! ସେ ଗାଳ୍ପିକ । ସଂସାର ଅବଶ୍ୟ ସେ କରୁଛନ୍ତି । ମାତ୍ର ଯେଉଁ ସଂସାରଜାଲଟି ବୁଢ଼ିଆଣୀ ପରି ସେ ଫାନ୍ଦୁଛନ୍ତି, ସେଥିରେ ନିଜେ ବନ୍ଧ ହୋଇ ଜୀବନ-ସମାଧି ବରଣ କରିବା ପଞ୍ଚାନନଙ୍କର ପ୍ରକୃତି ନୁହେଁ । ତେଣୁ ପରିବାରରେ ସ୍ତ୍ରୀ ହ୍ଲାଦିନୀ ଦେବୀ ପଞ୍ଚାନନଙ୍କୁ ସୁଖରେ ରଖିବା ପାଇଁ ଯେତେ ଚେଷ୍ଟା ଓ ଆୟୋଜନ କଲେ ବି ପଞ୍ଚାନନଙ୍କ ମନ ଆଉ ଘର ଧରୁ ନାହିଁ । ସେ କେବଳ ଅତୀତର ମୁକ୍ତଜୀବନକୁ ସ୍ମରଣ କରି କରି ଭିତରେ କ୍ଷୁବ୍ଧ ହେଉଛନ୍ତି । ଭିତରେ ପ୍ରବଳ ଇଚ୍ଛା—କିପରି ଏହି ବନ୍ଧନ, ଏଇ ନାଗପାଶ ମଧ୍ୟରୁ ମୁକ୍ତି ମିଳନ୍ତା !!

ତେଣୁ କାର୍ଯ୍ୟକ୍ଷେତ୍ରରୁ ଫେରିଆସି କ୍ଲାନ୍ତ ମନରେ ସେ ଯେତେବେଳେ ଆରାମଚୌକି ଉପରେ ଗୋଡ଼କାତ ମେଲେଇ ପୁଅକୁ କୋଳରେ ଧରି ଗେଲକରି ବସିଲେ ଓ ସ୍ତ୍ରୀ ତାଙ୍କ ଗୋଡ଼ରୁ ଯୋତା ଓ ମୋଜା ବାହାର କରିବାକୁ ଆରମ୍ଭ କଲେ, ସେତେବେଳେ ସେ ହଠାତ୍ ଅତି ବିରକ୍ତିରେ ବି ଗାଇ ଉଠିଲେ ସଚ୍ଚି ରାଉତରାଙ୍କର—

ଆପଣା ସୃଷ୍ଟିର ଜାଲେ ମାୟାମୁଗଧ ଊର୍ଣ୍ଣନାଭ ସମ,
ହୋଇବାକୁ ବନ୍ଦୀ ଚିରଅଭିଳାଷ ନାହିଁ ଥିଲେ ମମ’’ (ତେଣୁ)
ଯାହା ମୁଁ ଗଢ଼ିଛି ନିଜେ ହେଲେ ତାହା ଦେଇପାରେ ଦଳି······

ଏତିକି କହି ପଞ୍ଚାନନ ଗୋଡ଼ଟାକୁ ଖୁବ୍ ଜୋରରେ ଝଟକେ ଟେକିଦେଲେ ଏବଂ ତାଙ୍କ ଯୋତାର ଗୋଇଠିଟା ସ୍ତ୍ରୀଙ୍କ ନାକରେ ଜୋରରେ ବାଜିଯିବାରୁ ସ୍ତ୍ରୀଙ୍କ ନାକରୁ ସଙ୍ଗେ ସଙ୍ଗେ ଝର ଝର ରକ୍ତ ବହିବାକୁ ଆରମ୍ଭ କଲା ।

ସ୍ତ୍ରୀ ଭାଗ୍ୟବତୀ ହଠାତ କହିଁ କହିଁ ହୋଇ କାନ୍ଦିଉଠିଲେ । କଣ ହୋଇଛି ସ୍ୱାମୀଙ୍କର ! ! ଘରେ ପଶୁ ପଶୁ ମୂର୍ତ୍ତି ବଦଳି ଯାଉଛି ! ଯେତେକ୍ଷଣ ବାହାରେ ଅଛନ୍ତି—କେଶ୍ ତ ହସ ଖୁସି ! ଘରେ ପଶିଲେ-ଇ ମଥା ଖରାପ ! ! ଭଗବାନ ତ ଦୁଃଖେସୁଖେ ନାବଟି ଚଳାଇଛନ୍ତି । ସ୍ୱାମୀଙ୍କ ମୁଣ୍ଡକୁ ତ କାହିଁ ଚିନ୍ତା ମୁଁ ଦେଇ ନି । ତେବେ କାହିଁକି ? କାହିଁକି ଏ ଦିନକୁ ଦିନ ଏମିତି କ୍ଷୀଣ ହୋଇ ପଡ଼ୁଛନ୍ତି ?

"ତୁମକୁ କଣ ଘର ଭଲ ଲାଗୁନାହିଁ ? ନ ଲାଗୁଛି ଯଦି ଘରକୁ ବା ଆସୁଛ କାହିଁକି ?" ଭାଗ୍ୟବତୀଦେବୀ କହିଁ କହିଁ ସ୍ୱରରେ ମନର କ୍ରୋଧ ପ୍ରକାଶ କଲେ ।

"ନା, ପ୍ରକୃତରେ ଭଲ ଲାଗୁନାହିଁ । ତୁମେ ବୋଧହୁଏ ଭାବିବ—ତୁମର ସ୍ୱାମୀ ଗୋଟାଏ ଗୃହପାଳିତ ପଶୁ । ତାର ଦୁଇଟି ହାତ ଓ ଦୁଇଟି ଗୋଡ଼ । ସେ ଅର୍ଥ ଉପାର୍ଜନ କରେ । ସନ୍ଧ୍ୟାବେଳେ ବ୍ୟାଗ୍ ଧରି ବଜାର କରେ ଓ ସନ୍ଧ୍ୟା ପୂର୍ବରୁ ଶାନ୍ତଶିଷ୍ଟ ଭାବେ ଗୃହକୁ ପ୍ରତ୍ୟାବର୍ତ୍ତନ କରି ତୁମ ଖୁଣ୍ଟରେ ବନ୍ଧା ହୋଇ ଖାଏ, ପିଏ ଓ ଶୁଏ । କିନ୍ତୁ କ୍ଷମାକର; ମୋତେ ଏ ଜୀବନ ବଡ଼ ଅସହ୍ୟ ବୋଧହେଲାଣି ।

"କଣ ? ମୋତେ ଏଇ ଦୁଇ ବର୍ଷ ଭିତରେ ? ତୁମ ଭାଗ୍ୟକୁ ଯଦି ପ୍ରତିମା ପରି ଗୋଟାଏ ଚଣ୍ଡୀ ମିଳିଥାନ୍ତା, ତେବେ କେତେ ଫାଜିଲମୀ ବାହାର କରନ୍ତ, ଦେଖନ୍ତ ଯେ !!"

"ତା' ବରଂ ଭଲ ହୋଇଥାନ୍ତା ହ୍ଲାଦନୀ ! ପ୍ରତିମା ସଙ୍ଗେ ସଂସାର କରିଥିଲେ ସେଥିରେ ଥାନ୍ତା ସଂଘର୍ଷ; ଅବିରତ ସଂଗ୍ରାମ । ଦୁଇଟା ଜନ୍ତୁଙ୍କ ଲାଞ୍ଜକୁ ଦୁଇ ପଟେ ବାନ୍ଧି ଦିଆଯାନ୍ତା; ଦୁଇଟାଯାକ ଦୁଇ ବିପରୀତ ଦିଗକୁ ପରସ୍ପରକୁ ଟାଣନ୍ତେ । କେତେବେଳେ ମୁଁ ତାଙ୍କୁ ଅନେକ ଦୂରକୁ ଟାଣି ନିଅନ୍ତି ତ କେତେବେଳେ ସେ ମଧ୍ୟ ମୋତେ ତାଙ୍କ ବଳରେ ଅନେକ ଦୂର ଟାଣିନିଅନ୍ତେ । ଏଇ ଟଣାଟଣିରେ ଜୀବନଟା ବିସ୍ତାରିତ ହୁଅନ୍ତା । କିନ୍ତୁ ତୁମେ ? ନାଁ ନାଁ ! ଗୋଡ଼ରେ ରସି ବାନ୍ଧି ପଡ଼ିଆରେ ଚର ଏବଂ ପୁଣି ଫେରିଆସ ଗାନ୍ତ ବଳଦଟି ପରି । ଏଥିରେ ଜୀବନରେ ବୈଚିତ୍ର୍ୟ କାହିଁ ? ଆଚ୍ଛା କୁହ ଭଲା, ତୁମକୁ ବାହା ହେବାର ଦୁଇ ବର୍ଷ ଭିତରେ ଏଇ ପୁଅ ଜନ୍ମ କରିବା ଛଡ଼ା ଆଉ ଦ୍ୱିତୀୟ ଘଟଣା କିଛି ତୁମେ ଘଟାଇଛ କି ? ଦେଖ, ମୁଁ ଗାଳ୍ପିକ । ଜୀବନରେ ଘଟଣା ନ ଘଟିଲେ ମନରୁ କେତେ କଳ୍ପନା କରି ଗଳ୍ପ ଲେଖିବି ? ସେ ମନଟା ପୁଣି କ୍ରମେ କ୍ରମେ ଜଡ଼ ହୋଇ ଆସିଲାଣି । ନା, ତୁମେ ଗୋଟାଏ ଅଥର୍ବ, ତୁମ ଭଳି ଲୋକ ମୋ ଜୀବନରେ ତରଙ୍ଗ ସୃଷ୍ଟି କରିପାରିବ ନାହିଁ । ଏହାଦ୍ୱାରା ମୋର ତ କ୍ଷତି; ସର୍ବୋପରି ଓଡ଼ିଆ ସାହିତ୍ୟର ମଧ୍ୟ କ୍ଷତି । ହଉ ଥାଅ, ମୁଁ ଚାଲିଲି । କାହିଁ ? ମୋ ବ୍ୟାଗ୍ କାହିଁ ?"
ସ୍ତ୍ରୀ ପରିବା ବ୍ୟାଗଟି ଆଣି ଥୋଇଦେଲେ ।

ଆହେ ନାହିଁ ହେ ! ପରିବା ବ୍ୟାଗ୍‌ଟା ଆଣିଦେଲ ! ଆଜି ଆଉ ଆମ୍ଭେ ପରିବା କିଣିଯାଇ ପାରିବୁ ନାହିଁ । ମୋର ଘଟଣା ଦରକାର । ଏ ପରିବା ବ୍ୟାଗ୍‌ରେ ଘଟଣା ପଶିବ ନାହିଁ ସ୍ତ୍ରୀ ହ୍ଲାଦିନୀ ସ୍ୱାମୀଙ୍କର ବ୍ୟାଗ୍ ଓ ବିଛଣା ସଜାଡ଼ିଲେ । ନାକରୁ ତଥାପି ରକ୍ତବୋହୁଛି । ଧୀରସ୍ଥିର ଭାବରେ ସେ ସ୍ୱାମୀଙ୍କର

ଆଦେଶ ପାଳନ କଲେ । ସେ ଜାଣନ୍ତି, ପଞ୍ଚାନନ ନାମଧେୟ ଏହି ସ୍ୱାମୀଟି ତାଙ୍କର ଗୋଟିଏ ବିଚିତ୍ର ଜୀବ । ପାଞ୍ଚ ମୁହଁରେ ପାଞ୍ଚ ପ୍ରକାର କଥା କହିବା ତାଙ୍କର ଅଭ୍ୟାସ । ସବୁବେଳେ ଏପରି ଗୁଡ଼ାଏ କଥା କହିବେ ବା କରିବେ, ଯାହାର ପରସ୍ପର ସଙ୍ଗେ କିଛି ସମ୍ପର୍କ ନାହିଁ । ସ୍ୱଭାବ ମଧ୍ୟ ବିଚିତ୍ର । କେତେବେଳେ ଯଦି କହିବେ ଆଜି ସେ ପାଷଣ୍ଡ ମଦନକୁ ଭସ୍ମ କରିବି—ପୁଣି ଆଉ ଘଣ୍ଟେକ ପରେ ଗେଟହେଲ ହୋଇ ଆସି ଉପରେ ପଡ଼ି ଗେଟହେଲ କହିବେ—ତୁମକୁ ମୁଁ ମୁହୂର୍ତ୍ତେ ଛାଡ଼ି ପାରୁନାହିଁ ଗୌରୀ—ମୁଁ ଅର୍ଦ୍ଧ—ନାରୀଶ୍ୱର । ହ୍ଲାଦିନୀ ଆଉ ମଧ୍ୟ ଜାଣନ୍ତି ଯେ, ଏଇ ବଳଦଟିକୁ ଖୁଣ୍ଟରୁ ଫିଟାଇଦେଲେ ଆଉ କିଛି ବିଶେଷ କ୍ଷତି ନାହିଁ । ଯେଉଁ ଗୋଠରେ ରହିଲେ ବି ସେ ଖାଲି ଉହୁଁକିବ । ଆଉ ଅଧିକ କିଛି କରିବା ଏହାର ସାଧ୍ୟାତୀତ । ଏହି ଉହୁଁକିବା ପାଇଁ ସେ କେବଳ ଏତେ ବ୍ୟାକୁଳ । ଏଇଥିରୁ ଟିକେହେଲେ ସେ ପୁଣି ଘରକୁ ଫେରିଆସି କଣ ଏଣୁ ତେଣୁ ଗୁଡ଼ାଏ ଲେଖିବ, ଯାହାର ଜୀବନ ସଙ୍ଗେ ମେଳ ଖୁବ୍ କମ୍ । ଆହା ବିଚରା ! ହ୍ଲାଦିନୀଙ୍କ ହୃଦୟ ସହାନୁଭୂତିରେ ଟିକେ ତରଳି ଗଲା । ନାକରୁ ରକ୍ତ ବୋହିବା କଥା ବି ସେ ଭୁଲିଗଲେ । ଲୁଗାପଟା ସଜାଡ଼ି ସେ ସ୍ୱାମୀଙ୍କର ବିଛଣାଟି ମଧ୍ୟ ସଜାଡ଼ି ଦେଲେ । ଯାଆନ୍ତୁ, ଦେଶଟାଏ ବୁଲି ଆସନ୍ତୁ, ମନର ପରିବର୍ତ୍ତନ ହେବ । ହ୍ଲାଦିନୀଙ୍କୁ ମଧ୍ୟ ବିରକ୍ତ ଲାଗିଲାଣି । ଲୋକଟା ସବୁବେଳେ ଅସନ୍ତୁଷ୍ଟ, ସବୁବେଳେ ବଦ୍‌ରାଗୀ । ସେ ଏପରି ନ ଥିଲେ । ବିବାହର ଛଅ ମାସ ପର୍ଯ୍ୟନ୍ତ ସେ ଖୁବ୍ ଭଲଲୋକ ଥିଲେ । ଘର ଛାଡ଼ି କୁଆଡ଼େ ଯାଆନ୍ତି ନାହିଁ । କେଡ଼େ ଧୀର ସ୍ଥିର ଶାନ୍ତଶିଷ୍ଟ, ବାଳକଟିଏ ସେ ନ ଥିଲେ ! କିନ୍ତୁ ଆଜ ? ହ୍ଲାଦିନୀ ଦୀର୍ଘ ନିଶ୍ୱାସ ଛାଡ଼ିଲେ । ମୋଟେ ଦୁଇଟି ବର୍ଷ ହୋଇଛି । ଭବିଷ୍ୟତର

ସ୍ୱର୍ଗ ଜୀବନ ଆଖି ଆଗରେ । ରାସ୍ତାଟା କେତେ ଦୀର୍ଘ ! ଏଇ ଲୋକ-ଟିକୁ ନେଇ ଭବିଷ୍ୟତରେ ଏଇ ଦୀର୍ଘ ପଥ ଶାନ୍ତିରେ ଅତିକ୍ରମ କରି ହେବ ତ ?' ସେ ଯା ହେଉ × × ହ୍ଲାଦିନୀ ଯୁଅକୁ କୋଳକୁ ଆଣିଲେ ।

ପଞ୍ଚାନନ୍ ଗ୍ଭଲିଛନ୍ତି । ପଛରେ ଲୋକଟିଏ ବିଛଣା ଓ ବ୍ୟାଗ୍ ଧରି ଗ୍ଭଲିଛି । ବାଟରେ ସହକର୍ମୀ ରଙ୍ଗାଧର ବାବୁଙ୍କ ସଙ୍ଗେ ଦେଖାହେଲା । ରଙ୍ଗାଧରବାବୁ ଭଲ ଲୋକ । ନୀରବ ଓ ଶାନ୍ତ ସଂସାର । ଜୀବନରେ ଅଯଥା ଉତ୍ତେଜନା ନାହିଁ—ଅର୍ଥର ବା ଭାବର ଅକାରଣ ଅପବ୍ୟୟ ନାହିଁ । କର୍ତ୍ତବ୍ୟନିଷ୍ଠ ଭଦ୍ରବ୍ୟକ୍ତି । ତାଙ୍କ ସଂସାରରେ ଅବଶ୍ୟ ସମସ୍ୟା ଅଛି । ଏକଥା ନିଶ୍ଚୟ ଯେ ରଙ୍ଗାଧରବାବୁ ଜୀବନରେ ଆଶାଆକାଙ୍‌କ୍ଷାହୀନ ନୁହନ୍ତି । ମାତ୍ର ପଞ୍ଚାନନଙ୍କ ମତରେ ରଙ୍ଗାଧରବାବୁଙ୍କ ସମସ୍ୟାଗୁଡ଼ିକ ସଂସାରର ସ୍ଥୂଳ ସମସ୍ୟା । ଏଥିରେ ଜୀବନର ସୂକ୍ଷ୍ମ·····ଗ୍ଭଞ୍ଚଲ୍ୟ ନାହିଁ । ତେଣୁ ରଙ୍ଗାଧରବାବୁଙ୍କ ଜୀବନ-ନିର୍ବାହ ପ୍ରଣାଳୀ ଶୃଙ୍ଖଳିତ ଓ ସୁଖକର ହେଲେ ବି ପଞ୍ଚାନନ କହନ୍ତି—ଏ ଜୀବନ ମୋ ପକ୍ଷେ ଲୋଭନୀୟ ନୁହେଁ । ରଙ୍ଗାଧରବାବୁ ତାଙ୍କର ଦୁଇଟି ସନ୍ତାନକୁ ଠେଲାଗାଡ଼ିରେ ବସାଇ ରାସ୍ତା ଉପରେ ବୁଲୁଛନ୍ତି । ପୃଥୁଳ ଦେହଟି ଝୁଲି ଝୁଲି ଠେଲା ଗାଡ଼ି ସଂଗେ ତାଳ ପକାଇ ରାସ୍ତା ଉପରେ ଗତି କରୁଛି ।

"କହୋ ପଞ୍ଚାନନବାବୁ, ହଠାତ୍ ଏପରି— କୁଆଡ଼େ ? କଥା କଣ ? କୁଆଡ଼େ ବାହାରିଛନ୍ତି ?"

"ଏଇ ଆପାତତଃ ଷ୍ଟେସନ ଅଭିମୁଖେ—"

"ତା'ତ ବୁଝିଛି—ମାତ୍ର ଯାଉଛନ୍ତି କୁଆଡ଼େ ? କଟକ ? ପୁରୀ ? ବାଲେଶ୍ୱର ?"

"ତା' ଅବଶ୍ୟ ମୁଁ ଏ ପର୍ଯ୍ୟନ୍ତ ଠିକ୍ କରିନାହିଁ । ଆପାତତଃ ଇଚ୍ଛା, ଷ୍ଟେସନରେ ଯେଉଁ ଟ୍ରେନ୍ ଥିବ ତାକୁ ଧରିବା । ସେ ଟ୍ରେନ୍ ଯେଉଁ ଦିଗକୁ ଗଡ଼ୁ କରୁ । ବଡ଼ ବିରକ୍ତ ଲାଗିଲାଣି ଏ ଜୀବନ ଗଙ୍ଗାଧରବାବୁ ! ଏଭଳି ନିରୁପଦ୍ରବ ଜୀବନ, ଏଭଳି ବନ୍ଧ୍ୟା ଜୀବନ ମରଣଠାରୁ ବି ସାଂଘାତିକ । ଟିକେ ବୁଲିଆସିବା !"

"ହଁଅ, ନିଶ୍ଚୟ, ଯାଆନ୍ତୁ । କାହିଁକି ନ ବୁଲିବେ ? ଈଶ୍ୱର ଆପଣଙ୍କୁ ସବୁ ଦିଗରୁ ସେ ସୁବିଧା ଦେଇଛନ୍ତି । ଉପରେ ବାପା, ତଳେ ଶ୍ୱଶୁର ଆଉ ମଝିରେ ଆପଣ । ସୁଖୀ ପ୍ରକୃତରେ ଆପଣ-ହିଁ ପଞ୍ଚାନନବାବୁ ! ବୁଲିବେ ନାହିଁ କାହିଁକି ? ଆପଣଙ୍କର ତ ଆଉ ପଇସା ପାଇଁ ଚିନ୍ତା ନାହିଁ ? କିନ୍ତୁ କାଲି ଶନିବାର ଥିଲା, ଗଲେ ନାହିଁ କିଆଁ ? ଆଜି ରବିବାର—ପୁଣି ସନ୍ଧ୍ୟାଟାରେ ବାହାରିଲେ ଯେ କାଲି ପୁଣି କାର୍ଯ୍ୟକ୍ଷେତ୍ରକୁ ଫେରିବାକୁ ହେବ ।"

"ଦେଖନ୍ତୁ ଗଙ୍ଗାଧରବାବୁ, ଆପଣ ହେଲେ ଖାଣ୍ଟିମତ ସଂସାରୀ । ଏତେ କଥା ଭାବିଚିନ୍ତି କଲେ ଅବଶ୍ୟ ଭଲ । ମୁଁ କଣ ଜାଣେନାହିଁ ଯେ "ବୁଝି ବିଚାରି କାର୍ଯ୍ୟକଲେ, ପ୍ରମାଦ ନ ପଡ଼ଇ ଭଲେ ।" ମାତ୍ର ମୁଁ ସେ କଥା ଗ୍ରହେଁ ନାହିଁ । ସେ ସବୁ କଥା ଆପଣମାନଙ୍କ ପରି ଅନାଗତବିଧାତାମାନଙ୍କୁ ସାଜେ । ସେଥିରେ ବିପଦ ନାହିଁ । ମାତ୍ର ସେ ଜୀବନରେ ସୁଆଦ କାହିଁ ? ମୋ ଜୀବନ ପ୍ରତ୍ୟୁତ୍ପନ୍ନମତିର ଜୀବନ ; ବିପଦ ସଙ୍ଗେ ମୁଖାମୁଖି ହେଉ । ଦେଖାଯାଉ, ଗୋଟେ ସଂଘର୍ଷ ହେଉ ।

ହେଁ-ହେଁ-ହେଁ-ହେ !—ପଞ୍ଚାନନ ହସିଲେ ।

"ଆଗରୁ ପ୍ଲାନକରି ଯାଇଥିଲେ ସେ ଯାତ୍ରାଟା ହୁଅନ୍ତା ଗୋଟାଏ ଛାଞ୍ଚ୍‌ମ ସଂସାରୀର ଯାତ୍ରା । ଉଦ୍ଦେଶ୍ୟ ରଖି ଯୋଜନା

କରି ହେଁ ହେଁ—ଫେରିବାବେଳେ ଗୋଟେ କରିଚୁଲି କମ୍ବା କରେଇ, କମ୍ବା ବାଲ୍ଟିଟିଏ, କଷ୍ଟ ନ ହେଲେ ହର୍‌ଲିସ୍କ୍ଟିଏ ମଧ୍ୟ ଆଣିବା ପାଇଁ ମନ ମଧ୍ୟରେ ତାଲିକାଟିଏ କରି ହେଁ ହେଁ—କିନ୍ତୁ ମୋର ପ୍ରକୃତି ଆପଣ ବୁଝିପାରିବେ ନାହିଁ । ରଙ୍ଗାଧରବାବୁ ହେଁ ହେଁ—ଆଜ୍ଞା ଥାଆନ୍ତୁ, ଗୁଲିଲି ।

ପଞ୍ଚାନନ ଗୁଲିଗଲେ । ରଙ୍ଗାଧରବାବୁ ଠେଲଗାଡ଼ିକୁ ଆଗକୁ ଠେଲିଲେ । ବଚନ ଆଉ ଅର୍ଥୋଥ ଏଇ ପଞ୍ଚାନନ ଲୋକଟା ! ଲୋକଟା ସବୁବେଳେ ଗୋଟେ ସ୍ୱପ୍ନରେ ଭାସୁଥାଏ । କଣ ଯେ ଗୁଡ଼େ କହେ ବୋଧ ହୁଏ ନିଜେ ବ ବୁଝେନାହିଁ । ରଂଗାଧରବାବୁ ମନ ମଧ୍ୟରେ ଟିକେ ହସିଲେ ଏବଂ ଦୁଇ ମିନିଟ ମଧ୍ୟରେ ପଞ୍ଚାନନଙ୍କୁ ଭୁଲିଗଲେ ।

ପଞ୍ଚାନନ ଷ୍ଟେସନରେ ପହଞ୍ଚ ଥାର୍ଡ଼ କ୍ଲାସ ଟିକେଟଟିଏ କାଟିଲେ । ସେ ଏକୁଟିଆ ଟ୍ରେନ୍ ଭ୍ରମଣ କଲେ ଥାର୍ଡ଼ କ୍ଲାସରେ-ଇ ଯାଆନ୍ତି । ସେ ଭାବନ୍ତି, ଥାର୍ଡ଼କ୍ଲାସରେ ଗଲେ ବହୁ ଲୋକଙ୍କ ସଙ୍ଗେ ମିଶିବାର ସୁଯୋଗ ମିଳେ ଓ ତରିଶ ଗୁଳିଶି ମାଇଲ ଯାତ୍ରା ଫଳରେ ଗୋଟିଏ ଦୁଇଟି ଘଟନା ମଧ୍ୟ ଗଳ୍ପ ଲେଖିବା ପାଇଁ ସଚରାଚର ପ୍ରାପ୍ତ-ଇ ମିଳିଥାଏ । ଟ୍ରେନ୍ ଗୁଲିଲା ।

ପଞ୍ଚାନନ ବାଲେଶ୍ୱରରେ ପହଞ୍ଚିଲେ । ମାତ୍ର ହାୟ !! ପଞ୍ଚାନନ ଦୀର୍ଘ ନିଶ୍ୱାସ ଗ୍ରାଡ଼ିଲେ । କାହିଁ ? ଗୁଳିଶ ପଚିଶ ମାଇଲ ଟ୍ରେନ୍ ଭ୍ରମଣ କଲି । ମାତ୍ର ଗୋଟିଏ ହେଲେ ଘଟନା ଘଟିଲା ନାହିଁ ? ନାଃ, ଭାଗ୍ୟ ଖରାପ । ଏ ଜୀବନରେ ଘଟନା ବ ଆଉ ଘଟିବ ନାହିଁ । ଗଳ୍ପଲେଖକ କଣ ଏହିଭଳି ହେବା ସମ୍ଭବ ? ଫକୀରମୋହନ, ଗୋପୀନାଥ ମହାନ୍ତି, ରାଜକିଶୋର ରାୟ, ସୁରେନ୍ଦ୍ର ମହାନ୍ତି, ନିତ୍ୟାନନ୍ଦ ମହାପାତ୍ର, ହାୟ ହାୟ ! ଗୁଡ଼ ବାବା, କାଁ ଯେ

ଉତ୍ତେଜନାପୂର୍ଣ୍ଣ ଆଉ ଘଟନାବହୁଳ ବିଚିତ୍ର ଜୀବନ ସମସ୍ୟା-ନଙ୍କର । ଆଉ ମୁଁ ? ଛି ଛି ! ଗୁଡ଼; ପଞ୍ଚାନନ ଧୀର ଗଳାରେ କେଶବ କୋଇଲିରୁ ସ୍ୱର ଧରି ଗାଇଲେ ଠିକ୍ ପିଲାଦିନେ ଯେମିତି ଗାଉଥିଲେ—"କୋଇଲି ଲୋ ପୂରିବାର ନାହିଁ ମୋର ଆଶ ।" ଆଉ ଗଳ୍ପ ଲେଖିବା ସମ୍ଭବ ନୁହେଁ । ପଞ୍ଚାନନ ନିଜ କଥା ଛାଡ଼ି ଦେଶ କଥା ମଧ୍ୟ ଭାବିବାକୁ ଲାଗିଲେ । ଓଡ଼ିଶାରେ ବା ଆଉ ଗଳ୍ପ ଲେଖିବା ସମ୍ଭବ ନୁହେଁ । ଏ ଦେଶରେ କ'ଣ ବା ଘଟଣା ଘଟୁଛି ? ସେଇଥିପାଇଁ ତ ବଡ଼ ବଡ଼ ଗଳ୍ପଲେଖକମାନେ କଲମ ଛାଡ଼ି ବସିଲେଣି ଓ ଆଉ ଯେ କେତେଜଣ ଲେଖନ୍ତି— ସେଗୁଡ଼ା ନିହାତି ଗତାନୁଗତିକ । ଛି ଛି, ଆଜି ବଙ୍ଗଦେଶରେ ଏତେ ଉନ୍ନତ ଗଳ୍ପଲେଖକ ବାହାରୁଛନ୍ତି କାହିଁକି ? ତାଙ୍କ ଦେଶରେ ସବୁବେଳେ ନାନା ବିଚିତ୍ର ଘଟଣା ଘଟୁଛି ବୋଲି ! ଆଜି ପଇସାଟେ ପାଇଁ ଟ୍ରାମଧର୍ମଘଟ; କାଲି ବାସ୍ତୁହରା ସମସ୍ୟା— ପଅରଦିନ ଶିକ୍ଷକ ଧର୍ମଘଟ । ସେ ଜାତିର ଜୀବନ ଅଛି । ମାତ୍ର ଓଡ଼ିଆ ? ଛି ଛି ! ଅଳ୍ପ ଲାଭରେ ସନ୍ତୋଷ । ଏଣ୍ଡିପୋକ ପରି ଗବପତ୍ର ଉପରେ ନିଃଶବ୍ଦରେ ଚରିଯିବାରେ ହିଁ ଓଡ଼ିଆଙ୍କର ତୃପ୍ତି । ଏ ଜାତିର କୋଳାହଳ ନାହିଁ, ଉନ୍ମାଦନା ନାହିଁ, ସ୍ୱପ୍ନ ନାହିଁ, ସମସ୍ୟା ନାହିଁ । ଏ ଦେଶର ଶାନ୍ତି, ଶ୍ମଶାନର ଶାନ୍ତି । ହାୟ ଦୁର୍ଦ୍ଦୈବ ! !

ପଞ୍ଚାନନ ବାଲେଶ୍ୱର ସହରଟାଯାକ ବୁଲିଲେ । ଫକୀର ମୋହନଙ୍କ ଶାନ୍ତିକାନନଠାରୁ ଆରମ୍ଭ କରି ଫରାସୀ ଓ ପର୍ତ୍ତୁଗୀଜମାନଙ୍କର ସ୍ମୃତିବିଜଡ଼ିତ ଭଗ୍ନାବଶେଷ ପର୍ଯ୍ୟନ୍ତ । ମାତ୍ର ଗଳ୍ପ ଲାଗି ଘଟଣା ପାଇଲେ ନାହିଁ । ପଞ୍ଚାନନ ବନ୍ଧୁମାନଙ୍କୁ ଦେଖାକଲେ । କୁମାରୀ ଇନ୍ଦୁଲେଖାଙ୍କଠାରୁ ଆରମ୍ଭ କରି

କବି ସୀତାବଲ୍ଲଭଙ୍କ ପର୍ଯ୍ୟନ୍ତ । ମାତ୍ର କାହା ସଙ୍ଗେ କିଛି ଘଟଣା ଘଟିଲା ନାହିଁ ।

ନିରାଶ ହୋଇ ପଞ୍ଚାନନ ମେଲ ଟ୍ରେନର ସାଧାରଣ ଡବାରେ ନିଜ ସ୍ଥାନକୁ ଫେରିଆସିଲେ । ଥାର୍ଡ କ୍ଲାସ ବେଞ୍ଚ ଉପରେ ସେ ଝରକା ପାଖକୁ ଲାଗି ହୋଇ ବସିଲେ । ଏହି ଡବାଟିରେ କେତେକ ନୂଆ ଡବା ଲଗିଛି, ସମ୍ପୂର୍ଣ୍ଣ ନୂତନ ପ୍ରଣାଳୀର । ପଞ୍ଚାନନ ଘଟଣା ପାଇଁ କେତେ ଛାଡ଼ିଦେଇ ବେଞ୍ଚ ଉପରେ ଶୋଇଲେ । ଘୋଡ଼ଥାପାକୁ ବୁଲି ବୁଲି କ୍ଳାନ୍ତ ହୋଇ ଓ ରାତି ଅନିଦ୍ରାରେ ତାଙ୍କୁ ବଡ଼ କ୍ଳାନ୍ତି ବି ଲାଗୁଥିଲା । ପଞ୍ଚାନନ ଆଖି ବୁଜିବା ପୂର୍ବରୁ ଉପର କଡ଼କୁ ଚାହିଁଲେ । କେହି କୁଆଡ଼େ ନାହିଁ । ଉପର ର୍ୟାକ୍‌ରେ ତିନୋଟି କଲିକତା ପ୍ରତ୍ୟାଗତ ଓଡ଼ିଆ ଶୋଇ ପଡ଼ିଛନ୍ତି ଓ ତିନୋଟି ବିଭିନ୍ନ ଧରଣର ଛତା ତଳ ଆଡ଼କୁ ଝୁଲୁଛି । ସ୍ୱଳ୍ପ ଆଲୋକରେ ପଞ୍ଚାନନ ଛତା ତିନୋଟିର ନୃତ୍ୟ ଦେଖିଲେ । ଗୋଟିଏ ଛତା ପୁରୁଣା, ଧଳାକନା ଉପରେ ପଡ଼ିଛି । ଗୋଟିଏ ନୂଆ କଳା ଛତା ଓ ଅନ୍ୟଟି ଗୋଟିଏ ନାଲି ଛତା, ଖୁବ୍ ଛୋଟ ଅବଶ୍ୟ । ନାଲି ଛତାଟି ମଝିରେ ଝୁଲୁଛି । ପଞ୍ଚାନନ ଏଇ ଛତା ତିନୋଟିର ନୃତ୍ୟ ଭଲଭାବେ ଉପଭୋଗ କଲେ । ବାଃ ! ଚମତ୍କାର କଳ୍ପନା ତ ! ପଞ୍ଚାନନ ହଠାତ୍ ବସି ପଡ଼ିଲେ । ଲୋକ ତିନିଟାର ରୁଚି ଓ ଜ୍ଞାନ ପ୍ରତି ପଞ୍ଚାନନଙ୍କର ଶ୍ରଦ୍ଧା ଆସିଲା । ଆହା ବିଚରା ଓଡ଼ିଆ ଶ୍ରମିକ ଅବଶ୍ୟ ! କିନ୍ତୁ... ପଞ୍ଚାନନ ଭାବିଲେ, ଏଇ ଛତା ତିନୋଟି ସାମାନ୍ୟ ଛତା ହେଲେ ବି ମହାଭାବର ଦ୍ୟୋତକ । ଏହିପରି ସାମାନ୍ୟ କଥାର ଉପ-ଲକ୍ଷ୍ୟରୁ ହିଁ ପୃଥିବୀର ମହାତତ୍ତ୍ୱ, ମହାତଥ୍ୟ ଓ ମହାସତ୍ୟର ଆବିଷ୍କାର ହୋଇଛି । ଅସାମାନ୍ୟର ରୂପକ ହିଁ ଏହି ସାମାନ୍ୟ ।

ଜଟିଳ ଯାନ୍ତ୍ରିକ, ଶାସ୍ତ୍ରିକ ବା ଚିନ୍ତାଶୀଳ ବ୍ୟକ୍ତିକୁ ଖୋରାକ ଯୋଗାଇବା ପାଇଁ ଏଇ ଛତା ତିନୋଟି-ର ପଟଅସ୍ଥି । ଏଇ ତିନୋଟି ଛତା···ବିଭିନ୍ନ ରଙ୍ଗର···ବିଭିନ୍ନ · ଧରଣର ଓ ବିଭିନ୍ନ ଉଦ୍ଦେଶ୍ୟର ଏଇ ତିନୋଟି ଛତା ହୋଇପାରେ । ଏହା ବ୍ରହ୍ମା, ବିଷ୍ଣୁ ଓ ମହେଶ୍ୱର୍ ପରି ତ୍ରିମୂର୍ତ୍ତି ପରିକଳ୍ପନାର ରୂପକ କିମ୍ବା ସତ୍ତ୍ୱ–ରଜ-ତମ । ଏହି ଧଳାକନା ପକା ପୁରୁଣା ଛତାଟି ଦେଉଛି ସତ୍ତ୍ୱଭାବର ଦ୍ୟୋତକ । ହୋଇପାରେ ଏ ଛତାଟା ସେଇ ବୁଢ଼ାଟାର । ବାର୍ଦ୍ଧକ୍ୟରେ, ଯୌବନର ଉତ୍ତେଜନା ଓ ଉତ୍କଣ୍ଠକତା ନାହିଁ । ମନରେ ଗୋଟେ ଦୈବୀ ଭକ୍ତିଭାବ ଆସିଯିବଣି । ଚିତ୍ତରେ ବି ସମଭାବ ଆସି ଯିବଣି । ଛତାଟା କଳା ଥିଲେ ସୁନ୍ଦର ଦିଶେ । ମାସି ତାକୁ ଧଳା କଲେ ମଧ୍ୟ ବୁଢାର ତା' ପ୍ରତି ଅଶ୍ରଦ୍ଧା ନାହିଁ । ଧଳା ଯେ କଳା ସେ । ଭଲ ଯାହା ମନ୍ଦ ବି ତାହା; ପାପ ଯାହା ପୁଣ୍ୟ ବି ତାହା । ଏହା ହିଁ ତ ସାତ୍ତ୍ୱିକତା ! ଆଉ ସେ ରଙ୍ଗରଙ୍ଗିଆ ନାଲିଆ ଛତାଟି—ଏଇଟି ରଜୋଭାବର ଦ୍ୟୋତକ । ଛତାଟି ନିଶ୍ଚୟ ଗୋଟିଏ ପିଲା ପାଇଁ ଯାଉଛି । ପିଲାଟିକୁ ନିଶ୍ଚୟ ୭।୮ ବର୍ଷ ହୋଇଥିବ । ପାଞ୍ଚ ବର୍ଷ ପରେ ମାନବଶିଶୁର ପ୍ରକୃତି ରାଜସିକ ହୋଇଥାଏ । ଭାଙ୍ଗିବା, ଗଢ଼ିବା ପୁଣି ତାକୁ ଭାଙ୍ଗି ନୂଆ କରି ଗଢ଼ିବା ଓ ପୁଣି ତାକୁ ଭାଙ୍ଗିବା—ସବୁ କଥା ପାଇଁ ଜିଦ କରିବା, କଳିକଜିଆ ବାଡ଼ିଆପିଟା, ଲୋଭ ଓ ରୋଷ ଆଦି ତ ରାଜସିକ ପ୍ରକୃତି । ଅତଏବ ଏଇ ରଙ୍ଗରଙ୍ଗିଆ ଛତାଟି ରାଜସିକ ଭାବର ପ୍ରତୀକ । ଆଉ ସେ ସୁନ୍ଦର ନୂଆ କଳା ଛତାଟି । ଏଥିରେ ସନ୍ଦେହ ନାହିଁ ଯେ ଏହା ତାମସିକ ଭାବକୁ ମନରେ ଜାଗ୍ରତ କରାଉଛି । କଳା ଓ ତମଃ ଅର୍ଥାତ୍ ଅନ୍ଧକାର । ଛତାଟିର ମାଲିକ ବୋଧହୁଏ ସେ ପଠକୁ ଶୋଇଥିବା

ସେଇ ଅଳ୍ପବୟସ୍କ ତରୁଣଟି । ହୁଏ ତ ନୂଆ ହୋଇ ବାହା ହୋଇଛି । ନୂଆ ହୋଇ ପାଞ୍ଚ ଛଅ ମାସ ତଳେ କଲିକତାରେ ଚାକିରି କରିବାକୁ ଆସି ଘରକୁ ଫେରୁଛି । କିଛି ଟଙ୍କା ଧରି ଆସିଛି । ନୂଆ ଛତା, ନୂଆ ଲଣ୍ଠନ ଓ ନୂଆ ସୁଟ୍‌କେସ୍ ଧରି ଘରକୁ ଯାଇ ମାଇପକୁ ଦେଖାଇବ—ଗାଁରେ ଦେଖାଇହେବ । ଯାହା ଟଙ୍କା ଆଣିଛି, ଘରକୁ ଯାଇ କରଜ ନ ଶୁଝି ସବୁତକ ବିଳାସବ୍ୟସନରେ ଖାଇ ପିଇ ଉଡ଼ାଇଦେବ । କିଛି କାମ ନ କରି ଅଳସରେ ମାଇପ ପାଖେ ହୁଏ ତ ଦିନ ରାତି ପଡ଼ିରହିବ । ପାନ, ବିଡ଼ି, ଗୁଡ଼ାଖୁ, ଭାଙ୍ଗ ସବୁ ହୁଏ ତ ଖାଇ କାଳ କାଟିବ—

ପଞ୍ଚାନନ ହଠାତ୍ ଭାବାବେଶରେ 'ବଡ଼ ମାୟାବୀ ଜୀବ ବୁଝେଁ କାହାରି' ଭଜନଟିକୁ ଧୀରେ ଗଳାରେ ଗାଇ ଚାଲିଲେ—

"ପନ୍ଦର ବୟସେ ହେଲୁ ଅମର ମନ୍ତ୍ରରେ ମନ—
ଅମର ମନ୍ତ୍ର,
କୋଡ଼ିଏ ବୟସେ କଲୁ କାମିନୀ ଚିନ୍ତା—
କାମିନୀ ସଙ୍ଗେ ରହି
କାଳ ହରିଲୁ ତୁହି
ଏ ଭାବେ ଗଲା ତୋର—ଯୁବା ବୟସ ବହି···'

ଆହା ବିଚରା ! ଆଉ ହରିଙ୍କି ଭଜିବ କେତେବେଳେ ? ଆହେ। ! କି ଅଧଃପତନ ଏଇ ଯୁବକଟିର ? ଏହା ହିଁ ତ ତାମସିକ ଭାବର ରୂପକ !

ପଞ୍ଚାନନ ଯୁବକଟିର ଅଧଃପତନ ପାଇଁ ବଡ଼ ସମ୍ବେଦନଶୀଳ ହୋଇ ଉଠିଲେ । ଯାହାହେଉ, ଏଇ ଛତା ଚୋରିଟି ତାଙ୍କୁ ଖୁବ୍ ମହାସତ୍ୟର ସନ୍ଧାନ ଦେଲା । ଏହି ମହାସତ୍ୟ ସ୍ୱପ୍ନୀକୁ ଲଭ

କରିବା ପାଇଁ ତାଙ୍କ ବୋଧହୁଏ ଅନେକ କଠିନ ତପସ୍ୟା କରିବାକୁ ପଡ଼ିନାହିଁ; ମାତ୍ର କେତୋଟି ଘଣ୍ଟାର ଟ୍ରେନ ଭ୍ରମଣରେ ଏହି ମହା-ଶିକ୍ଷା ସେ ଲାଭ କରିବାକୁ ସମର୍ଥ ହେଲେ, ଏଥିପାଇଁ ସେ କୃତଜ୍ଞ ଚିତ୍ତରେ ଈଶ୍ୱରଙ୍କ ଉଦ୍ଦେଶ୍ୟରେ ପ୍ରଣିପାତ କଲେ । ପଞ୍ଚାନନ ମନେ ମନେ ଭାବିଲେ – ପ୍ରକୃତରେ ପୁସ୍ତକ ପଢ଼ି ଯେତେ ଶିକ୍ଷା ଲାଭ ନ ହୁଏ, ଭ୍ରମଣ ଦ୍ୱାରା ତାହା ସହଜରେ ସାଧିତ ହୋଇଥାଏ । ମାଟ୍ରିକୁଲେସନ ପରୀକ୍ଷାରେ ସେ ଇଂରାଜୀ ପେପରରେ ଗୋଟିଏ ପ୍ରବନ୍ଧ ଲେଖିଥିଲେ—"Travelling is a part of the education—ଅର୍ଥାତ୍ ଭ୍ରମଣ ହେଉଛି ଶିକ୍ଷାର ଗୋଟିଏ ଅଙ୍ଗ ।" କଥାଟା ପ୍ରକୃତରେ ସତ୍ୟ । ସେତେବେଳେ ସେ ପରୀକ୍ଷାରେ ଉତ୍ତର ଦେଇଥିଲେ । ମାତ୍ର ବର୍ତ୍ତମାନ ସେ ସେହି ସତ୍ୟଟିକୁ ନିଜ ଅଭିଜ୍ଞତାରୁ ବୁଝିପାରିଲେ । ପଞ୍ଚାନନ ଭାବାବେଶରେ ପୁଣି ଶୋଇବାକୁ ବସିଲେ । ମାତ୍ର ସେ ଛତା ତିନୋଟି ତାଙ୍କୁ ଶୁଆଇ ଦେଲେ ନାହିଁ । ଟ୍ରେନର ଗତି ସଙ୍ଗେ ତାଳପକାଇ ଛତା ତିନୋଟି ନୃତ୍ୟ କରୁଛନ୍ତି । ପଞ୍ଚାନନଙ୍କୁ ଆଉ ନିଦ ହେଉନାହିଁ । ଅଜ୍ଞା କଥା !! ମାତ୍ର ତିନୋଟି ଛତା !!! ତିନୋଟି ସୁନ୍ଦରୀ ତରୁଣୀ ଭଳି ହୋଇଥାନ୍ତେ !! ଅବଶ୍ୟ ଏହିଭଳି ଗୋଟିଏ ଦୃଶ୍ୟ ତାଙ୍କର ମନେ ପଡ଼ୁଛି । ଦୁଇ ବର୍ଷ ତଳେ ସେ ସମ୍ବଲପୁରରୁ ଝାରସୁଗୁଡ଼ା ଯାଉଥାନ୍ତି । ଗୋଟିଏ କାମରାରେ ତରତର ହୋଇ ପଶି ସେ ହଠାତ୍ ଗୋଟିଏ କଡ଼କୁ ଚାହିଁ ଦେଖନ୍ତି ତ ତିନୋଟି ସ୍ତ୍ରୀ ଲୋକ ବସିଛନ୍ତି । ଆଉ କେହି ନାହାନ୍ତି ସେ କାମରାରେ । ଗୋଟିଏ ପ୍ରୌଢ଼ା ବେହରଣରେ ଧଳାଶାଢ଼ୀ, ବୟସ ତିରିଶ-ପଇଁତିରିଶ ହୋଇ-ପାରେ । ଅତି ଗମ୍ଭୀର, ହୋଇପାରେ ସେ, କୌଣସି ଗାର୍ଲସ୍କୁଲର ହେଡ଼ମିଷ୍ଟ୍ରେସ । ମଝିରେ ବସିଛି ଗୋଟିଏ ଚପଳା

ବାଳିକା— ବାର ତେର ବର୍ଷର ହେବ । ଘର ସୁନ୍ଦର, । ଅତି ଜାକଜମକରେ • ରଙ୍ଗବେରଙ୍ଗ ଦାମିକା ଫ୍ରକଟିଏ ପିନ୍ଧିଛି । ଗୃହଆଡ଼କୁ ଖୁବ୍ ଛନ୍‌ଛନ୍ କରି ଗୃହଁଥାଏ । ଘରି ବନ୍ଦଳ ସ୍ୱାସ୍ଥ୍ୟ । ଦେହର ରକ୍ତ ପିଚକି ପଡ଼ୁଛି । ନାଲିଆ ଓଠ । ପୂରିଲା ଗାଲ । ମୁଣ୍ଡ ସ୍ୱରପଟେ ଗ୍ରେଠ ଗ୍ରେଠ କୁଞ୍ଚିତ ବାଳ । ହୋଇପାରେ, ସେ ଅଷ୍ଟମ ଶ୍ରେଣୀର ଛାତ୍ରୀ । ମନେହେଉଥିଲା, କେତି ମୋର ସାନ ଶାଳୀ ହୁଅନ୍ତା କି !! ତା'ଟାଆଙ୍କୁ ବମିଥାଏ ଗୋଟିଏ ଯୁବତୀ । ଅସାମାନ୍ୟା ସୁନ୍ଦରୀ । ଧଳା କଇଁଫୁଲ ପରି ଦେହର ଗଢ଼ଣ । କଳା ଶାଢ଼ୀ ଭିତରେ ତା'ର ଧଳା ଦେହଟି ଭଲ ଲୋଭନୀୟ ମନେ ହେଉଥାଏ । ଝିଅଟାକୁ ଆଜିକି ସେ ବୋଧହୁଏ ଘୁମାଉଥିଲା । ତାର ଶାଢ଼ୀ ଓ ବେଶଭୂଷାରେ ସାମାନ୍ୟ ଶୁଥତା ଥିଲା । ସେ ଖୁବ୍ କ୍ଲାନ୍ତ ଦେଖାଯାଉଥିଲା । କାଲି ରାତିସାରା ସତେ ବା ତାକୁ ଆଦୌ ନିଦ ହୋଇନାହିଁ । ପ୍ରେମିକର ଉତ୍ପୀଡ଼ନରେ ସତେ ବା ତାର ତନୁ ଓ ମନ ଅତି ଅବଶ ଓ ଆହତ ହୋଇ ଯାଇଛି । ବୋଧହୁଏ ସେ ଏଇ ଅଳ୍ପ ସମୟ ହେଲା ତାର ପ୍ରେମିକର ଆଲିଙ୍ଗନ ପାଶରୁ ମୁକ୍ତ ହୋଇ ଟ୍ରେନ୍ ଭ୍ରମଣ କରୁଛି । ଦେହରୁ ନିଶା ଛାଡ଼ିଲେ ବି ମନରୁ ଆବେଶ କଟି ନାହିଁ । ତାର ଅଳସ ଆଖିପତା, ତାର ମୁହଁ ଉପରେ ଚୂନା ଚୂନା ବାଳ, ଶିଥିଳ କବରୀ ଆଉ ଶେଷରେ ତା କବରୀରେ ସେଇ ବାସୀ ବଉଳଫୁଲ ମାଳଟି!! ଅହୋ ! "ସେ କି ଗତ ରଜନୀର ଅତନୁ ପୂଜାର ମଉଳା କୁସୁମମାଳା !!" ପଞ୍ଚାନନ ଅସ୍ଥିର ହୋଇଉଠିଲେ । ଦୁଇ ବର୍ଷ ତଳର ଏକ ଘଟଣାଟିକୁ ସେ ଭୁଲି ଯାଇଥିଲେ । ମାତ୍ର ଆଜି ଏଇ ମୁହୂର୍ତ୍ତରେ ସେ ଦିନର ସେଇ ଦୃଶ୍ୟ ତାଙ୍କର ହୃଦୟକୁ ମନ୍ଥି ପକାଇଲା । ସେ ବଡ଼ ଅସ୍ୱସ୍ତି ବୋଧକଲେ ।

ହୋଇପାରେ, ସେ ତରୁଣୀଟି ଗୋଟିଏ ସ୍କୁଲର ଶିକ୍ଷୟିତ୍ରୀ । ମାତ୍ର ପଞ୍ଚାନନଙ୍କର ମନ ହେଲା ସତେ ବା ସେ ବର୍ତ୍ତମାନ ବି ଏଇ ଟ୍ରେନ ମଧ୍ୟରେ ବର୍ଷି ବଉଳଫୁଲ ବାସ ଅନୁଭବ କରିପାରୁଛନ୍ତି !! ପଞ୍ଚାନନ ଗଳ୍ପ କରି ସମ୍ବନ୍ଧ ଜମାଇବା ଲୋଭରେ ସେହି ପ୍ରୌଢ଼ା ଭଦ୍ରମହିଳାଙ୍କୁ ଉଦ୍ଦେଶ୍ୟ କରି ପଚାରିଲେ, "ଆପଣମାନେ କଣ ଝାରସୁଗୁଡ଼ା ଯାଉଛନ୍ତି ? ମୋର ଅନୁମାନ ବୋଧହୁଏ ମିଥ୍ୟା ନୁହେଁ ।"

ମାତ୍ର ପ୍ରୌଢ଼ାଟି ଅତି କର୍କଶ ଗଳାରେ ବଡ଼ ବଡ଼ ଆଖିରେ ପାଟିକରି ଉଠିଲା—

"ଆପଣ କଣ ଟ୍ରେନ୍ ବାହାରେ ଟ୍ରେନ୍ କାନ୍ଥକୁ ନ ଚାହିଁ ଏ କାମେରାକୁ ଉଠିଛନ୍ତି ? ନା ଆପଣଙ୍କର ଏ ଅଭଦ୍ରତା ଗୋଟିଏ ନୟମିତ ଅଭ୍ୟାସ ? ଆପଣ ଏ ଲେଡ଼ିଜ୍ କମ୍ପାର୍ଟମେଣ୍ଟ ଭିତରକୁ ଆସିଲେ କାହିଁକି ? କଣ ଯିବେ ନା ଏଠୁ ?"

ପଞ୍ଚାନନ ଲଜ୍ଜାରେ ଝାଉଁଳିପଡ଼ି "କ୍ଷମା କରନ୍ତୁ" ବୋଲି କହି ଚେହେରାଙ୍କ ଭଳି ତଳକୁ ଓହ୍ଲାଇଗଲେ । ବିକଳ ଆଖିରେ ସେ ମୁହୂର୍ତ୍ତିକ ପାଇଁ ଟ୍ରେନ୍ ଭିତରକୁ ଚାହିଁ ଦେଖନ୍ତି ତ ପୂର୍ବପରି ସେହି ପ୍ରୌଢ଼ାଟିର ଗମ୍ଭୀର ଆଖିରୁ ନିଆଁ ବର୍ଷୁଛି । ଆଉ ସେହି ଝିଅଟି ହସି ହସି ହାତକୁ ହଲାଇ ଚିତ୍କାର କରି ଲାଗିଛି "କଳା କାହ୍ନୁ କମଳ ଆଖି, କେଣେ ପଳାଉଚ ଲୁଙ୍ଗଲ ଜାକି ?" ଆଉ ସେଇ କଳାଶାଢ଼ୀ ଭିତରର ସୁନ୍ଦରୀ ତରୁଣୀଟି ପୂର୍ବ ପରି ଅଳସ ଭଙ୍ଗୀରେ ଝରକା ଉପରେ ଆଉଜି ରହି ପଞ୍ଚାନନ ଆଡ଼କୁ ଚାହିଁ ଚାହିଁ ତାର ସୁନ୍ଦର ଓଠ ଦିଓଟିରୁ ବଙ୍କା ହସଟାଏ ଫୋପାଡ଼ୁଛି । ସତେ ବା ପଞ୍ଚାନନକୁ ଦେଖି ତାଚ୍ଛଲ୍ୟରେ ଖୁବ୍ ହସିବାକୁ ତାର ଇଚ୍ଛା । ମାତ୍ର ସେଥିପାଇଁ ମଧ୍ୟ ସେ ଖୁବ୍ କ୍ଳାନ୍ତ, ଅବଶ; ଆଉ

ଅଳସ । ପଞ୍ଚାନନ ବଡ଼ ଅପ୍ରସ୍ତୁତ ଓ ଦୁଃଖିତ ହୋଇଥିଲେ । ମାତ୍ର ସେହି ଅଳସୀ ସ୍ତ୍ରୀଲୋକ ଚତ୍ରଶୀଟିର ଦୃଶ୍ୟ ଲା କରଣ୍ଡ ଉପରେ ଯେଉଁ ବାସୀ ବଉଳଫୁଲ ମାଳାଟି !! ହାୟ—ହାୟ—

ପଞ୍ଚାନନ ଅସ୍ଥିର ହୋଇ ଉଠିଲେ । ଏକା ସ୍ୱରର ଦୃଶ୍ୟ ସଙ୍ଗେ ଏକା 'ହ୍ରସ୍ବଶୋଧହୀନ ଅପମାନ ମଧ୍ୟ ସେ ଜୀବନରେ କେଉଁଠାରୁ ପାଇ ନାହାନ୍ତି । ତାଙ୍କର ଘୃଣା ଗୁରୁଣ୍ଡି ହେଲା । ସେ ଅପମାନ ଭୁଲି ଯାଇଥିଲେ । ଏହି ଦୁଃଖଟିକୁ ସେ ଆଉ ମନେରଖି ନ ଥିଲେ । ମାତ୍ର ଏଇ ଛତା ? ସବୁ ଅନର୍ଥର ମୂଳ ଏଇ ତିନିଟା । ବଦମାସ ଲୋକଗୁଡ଼ାଙ୍କର ତିନୋଟି ଛତା ହିଁ ତାଙ୍କୁ ଏ କଥାଗୁଡ଼ାକୁ ମନେ ପକାଇଦେଲା । ମୂର୍ଖଗୁଡ଼ାକ—ଛତା ତିନିଟାକୁ ନିର୍ଭୟରେ ଟାଙ୍ଗିଦେଇ ନବାବ୍ଙ୍କ ପରି ଶୋଇ ଯାଇଛନ୍ତି । ଶୋଇବ ତ— ଛତାଗୁଡ଼ାକ ପାଖରେ ରଖି ଶୋଇଥାଅ । କିଏ ମନା କରୁଛି ? ଆଜିକାଲି ଟ୍ରେନରେ ଯେଉଁ ଚୋରି ଓ ପକେଟମାରୁ ଆରମ୍ଭ ହେଉଛି; ସେ ସବୁ ଏଇ ମୂର୍ଖଗୁଡ଼ାଙ୍କର ଅସାବଧାନତା ପାଇଁ । ଓଡ଼ିଆ-ଗୁଡ଼ାକ ପ୍ରକୃତରେ ମୂର୍ଖ । ପଞ୍ଚାନନ ଭାବିଲେ, ମୁଁ ସିନା ଭଲ ଲୋକଟିଏ ବୋଲି !! ମାତ୍ର ଆଉ କିଏ ଚୋର ଚୋର ଏ କାମେରାକୁ ଉଠିଥିଲେ କେତେବେଳୁଁ ଏ ଛତା ତିନୋଟିର ଭାଗ୍ୟ ନିଷ୍ପତ୍ତି କରି ସାରନ୍ତାଣି ସିନା !! ପଞ୍ଚାନନ ନିଜର ସାଧୁ ପ୍ରକୃତିକୁ ହୃଦୟଙ୍ଗମ କରି ପୁଣି ଶୋଇବାକୁ ଚେଷ୍ଟା କଲେ । ମାତ୍ର ନାଁ— ଅସମ୍ଭବ, ଏ ଛତା ତିନିଟା ତାଙ୍କୁ ଆଦୌ ଶୁଆଇଦେବେ ନାହିଁ । ଏଇ ଧଳାକଳା ପକା ଛତାଗୁଡ଼ାକ ଉପରେ ତାଙ୍କର ଭାରି ରାଗ ! ତାଙ୍କର ବାପା ଅନ୍ତିମାବାରେ ହସାଣ୍ଡ ଆଉ ହାସାରିକ । ଘରକୁ ନୂଆ ଛତାଟିଏ କିଣା ହେବ ତ ବାପା ସଙ୍ଗେ ସଙ୍ଗେ ସେଥିରେ ଗୋଟାଏ ଧଳା କଳା ପକାଇ ଦଅନ୍ତି । ଭଦ୍ରଲୋକଙ୍କର ସୌନ୍ଦର୍ଯ୍ୟ

ଜ୍ଞାନ ଟିକିଏ ବି ତାହାଁ । ଧଳା ଛତା ଗୁଡ଼ାକ କି କୁତ୍ସିତ ଦିଶେ !!
କିନ୍ତୁ ଏଇ ନାଲିଆ ରଙ୍ଗବେରଙ୍ଗର ଛତାଟି ପ୍ରତି ତାଙ୍କର
ପିଲଦିନରୁ ମମତା ରହି ଆସିଛି । ସେ ମମତା ଆଜି ପର୍ଯ୍ୟନ୍ତ ପୂରଣ
ହୋଇ ପାରିଲି ନାହିଁ । ପିଲଦିନେ ସେ ବାପାଙ୍କ ପାଖେ
ଦେଉଥିଲେ ଅଳି କରିନାଲି ଗୋଟିଏ ଏହିଭଳି ରଙ୍ଗବେରଙ୍ଗ
ଛତା ଆଣିଦେବାକୁ, ତାଙ୍କର ହିସାବୀ ବାପା କେଁ କଥା ଆଦୌ
ନ ଶୁଣି ଗୋଟେ ବଡ଼ ମଣିଷଙ୍କର ବଡ଼ କଳା ଛତା ତାଙ୍କ ପାଇଁ
ହାଟରୁ କିଣି ଆଣିଥିଲେ । "ସେ ଗୁଡ଼ାକ କଣ କରିବୁ ? ଖରା
କାଟିବ ଆଉ ବର୍ଷାରେ ପାଣି ଝରିବ । ବେଶିଦିନ ବି ଟିକିବନାହିଁ ।
ସେଗୁଡ଼ାକ କୋମ୍ପାନୀ ଜିନିଷ । ଛି, ଛି ।" ବାପାଙ୍କର ଏଇ
ହିସାବୀ ପ୍ରକୃତି ପଞ୍ଚାନନଙ୍କୁ ଚିରଦିନ ଖରାପ ଲଗି ଆସିଛି । ସେ କଣ
ଖରାବର୍ଷାରୁ ରକ୍ଷାପାଇବାକୁ ଛତା ଗୃହୁଁଥିଲେ ? ଗୋଟେ
ରଙ୍ଗବେରଙ୍ଗର ସୁନ୍ଦର ଛତା କେଡ଼େ ସୁନ୍ଦର ! କିନ୍ତୁ ବାପା
କଣ ତାର ବାଳକ ଅନ୍ତରର ସୂକ୍ଷ୍ମ ଅଭାବଟିକୁ ବୁଝିପାରିଲେ ?

ପଞ୍ଚାନନ ଟିକେ ଧୁଞ୍ଚିଆସି ସେଇ ଛତାଟିକୁ ହାତରେ
ଧରିଲେ । ଛତାଟି ପ୍ରତି ତାଙ୍କର ଲୋଭ ବି ହେଲା, ଭାରି ପ୍ରବଳ
ଲୋଭ ହେଲା, ମାତ୍ର ଛତାଟିକୁ ସେ ପୁଣି ଯଥାସ୍ଥାନରେ ଥୋଇ
ଦେଲେ । ସେ ତ ନିଜେ ଆଉ ଛତାଟି ଧରି ଦାଣ୍ଡରେ ବୁଲି
ପାରିବେ ନାହିଁ ? ତା' ଛଡ଼ା ତାଙ୍କର ପୁଅ ମଧ୍ୟ ପାଞ୍ଚ-ଛଅ ବର୍ଷର
ଅନ୍ତତଃ ନ ହେଲେ ଏ ଛତାଟିକୁ ବ୍ୟବହାର କରିବ କିପରି ?
ପୁଅକୁ ମୋଟେ ବର୍ଷେ ହୋଇଛି, ଆଉ ସେ ମଧ୍ୟ ଏତେ ହିସାବୀ
ସଂସାରୀ ନୁହନ୍ତି ଯେ ତିନି-ଗୃରି ବର୍ଷ ଲଗି ଛତାଟିକୁ ଘରେ ସାଇତି-
ରଖିବେ ? ସାଇତି ରଖିବାଟାକୁ ସେ ଆଜୀବନ ଘୃଣା କରି
ଆସିଛନ୍ତି । ତା ଛଡ଼ା ସାଇତି ରଖିଲେ ବି ତିନି-ଗୃରି ବର୍ଷ ପର୍ଯ୍ୟନ୍ତ
ଏ ଛତାଟା ଏତେ ରଙ୍ଗୀନ, ଏତେ ଜକ୍ ଜକ୍ ରହିପାରିବ ନାହିଁ ।

ପଞ୍ଚାନନ ଛତାଟିକୁ ଥୋଇଦେଲେ । ଟ୍ରେନ ଚାଲିଛି । ଷ୍ଟେସନ ପରେ ଷ୍ଟେସନ, ନିଜ ଷ୍ଟେସନ ପାଖ ହୋଇ ଆସିଲାଣି । ବର୍ଷାକାଳ । ଖୁବ୍ ଜୋରରେ ବର୍ଷା ପକାଇଲା । ଲୋକଗୁଡ଼ାକ ବେଶ୍ ଆରାମରେ ଶୋଇଛନ୍ତି । କେତେଲୋକ ସେ କାମେରାକୁ ଉଠି ପୁଣି ସେଥିପାଇଁ ଷ୍ଟେସନ୍‌ରେ ଓହ୍ଲେଇ ଗଲେଣି । ରାତି ପ୍ରାୟ ପାହିଯିବା ଉପରେ । ଖୁବ୍ ଜୋର୍‌ରେ ବର୍ଷା ହେଉଛି । ପଞ୍ଚାନନ ଭାବିଲେ,ଷ୍ଟେସନରୁ ଘର ପର୍ଯ୍ୟନ୍ତ ଯିବେ କପରି ? ବର୍ଷା ବ ବର୍ତ୍ତମାନ ଛାଡ଼ୁ ନାହିଁ । ଛତା ଖଣ୍ଡିଏ ବ ନାହିଁ, ଛତା ବ କଣିବେ ନାହିଁ ବୋଲି ପ୍ରତିଜ୍ଞା କରି ଦେଇଛନ୍ତି ସ୍ତ୍ରୀଙ୍କ ପାଖେ । ଜୀବନରେ ବାର-ତେର ଖଣ୍ଡି ଛତା ହଜେଇଛନ୍ତି, ଏଇ ବର୍ଷ ମାନେ ଗତ ବର୍ଷର ବର୍ଷାକାଳଠାରୁ ଏଇ ବର୍ଷର ବର୍ଷାକାଳ ପର୍ଯ୍ୟନ୍ତ ତିନୋଟି ଛତା ହଜାଇ ସାରିଛନ୍ତି । ସ୍ତ୍ରୀଙ୍କ ସଙ୍ଗେ କଜିଆ ଏଇ ଛତା ପାଇଁ । କେତେଖଣ୍ଡ ଛତା ତୁମେ କଣିବ ଦେଖିବି ? କେତେ ଇମିତି ଟଙ୍କା ରୋଜଗାର କରୁଚ ଯେ, ଏମିତି ଭୁଲା ମନ ତୁମର ? ନାଇଁ ନାଇଁ, କୋଉ ନବାବ ତୁମେ ? ବର୍ଷକ ଭିତରେ ତିନ ତିନଟା ଛତା ହଜାଇ ସାରିଲଣି ? ଏମିତି କୋଉ ରଜାଘର ପୁଅ ତମେ ? ମନେ ଯଦି ନ ରହୁଛି, ତୁମେ ଛତା ଧରି ବଜାରକୁ ବାହାରୁଚ କାହିଁକି ?"

ସ୍ତ୍ରୀଙ୍କର ଏଇ କର୍କଶ ବାଣୀ ଶୁଣି ପଞ୍ଚାନନ ଆଉ ଛତା କଣିବେ ନାହିଁ ବୋଲି ବଡ଼ ପାଟିରେ ପ୍ରତିଜ୍ଞା କରି ସାରିଛନ୍ତି । ପ୍ରକୃତରେ ଛତାଗୁଡ଼ାକ ହଜାଇ ପୁଣି ଲଗ୍ ଲଗ୍ ତିନୋଟି ଛତା ହଜାଇ ପଞ୍ଚାନନ ମନେ ମନେ ବଡ଼ ଦୁଃଖିତ ହୋଇଛନ୍ତି ।

ନୃତ୍ୟଶୀଳ କଳା ଛତାଟିକୁ ପଞ୍ଚାନନ ଲୋଭ କରି ଧରିଲେ । ବାଃ ! ସୁନ୍ଦର ହୋଇଛି ଛତାଟି । ପରମ୍ପର ପରମେଶ୍ୱର ଏ ସଂସାରକୁ

ସୃଷ୍ଟି କରିଛନ୍ତି । ମାନବ ତାଙ୍କରେ ଗୋଟିଏ ବୁଦ୍ଧିମାନ ପ୍ରାଣୀ ! ସେ ନିଜର ବୁଦ୍ଧି ବଳରେ ପ୍ରକୃତିକୁ ଜୟ କରୁଅଛି । ଛତାଟି ଏହି ମାନବ ଦ୍ୱାରା ସୃଷ୍ଟି । ସଂସ୍କୃତରେ ଛତାକୁ କହନ୍ତି "ଆତପତ୍ର"— ଆତପାତ୍ ତ୍ରାୟତେ ଇତି-ଆତପତ୍ରଃ । ଖରାରୁ ରକ୍ଷା କରେ ବୋଲି ଏହାର ନାମ ଛତା । ଛତା ମଧ୍ୟ ବର୍ଷାରୁ ରକ୍ଷା କରେ ।

ପଞ୍ଚାନନ ଭାବିଲେ, ଷ୍ଟେସନ୍ ତ ପାଖ ହୋଇଗଲା । ଏ ବର୍ଷାରେ ସେ ଘରକୁ ଯିବେ କିପରି ? ଛତାଟିକୁ ସେ ଓଲଟ ପାଲଟ କରି ଦେଖିଲେ । ବେଶ୍ ଭଲ ଛତାଟିଏ । ଏକବାର୍ ନୂଆ, ଭିତରେ ପ୍ୟାରିସ୍ କନା ! ମାତ୍ର ତାଙ୍କର ମନରେ ପୁଣି ଭୟ ହେଲା, ଲୋକଟା ଯଦି ଉଠେ, ତେବେ ନିଶ୍ଚୟ ଭାବିବ ଯେ ମୁଁ ତା' ଛତାକୁ ଚୋରି କରି ନେବାପାଇଁ ଧରିଛି । ତା' ହେଲେ ମୁଁ ନିଶ୍ଚୟ ଲୋକଟା ଉଠୁ ଉଠୁ ଆଗ ପାଟି କରି ଉଠିବି, "କିପରି ଲୋକ ହେ ତୁମେ ? ଛତାଟାକୁ ଏପରି ରଖିଛ ଯେ ମୋ ଗୋଡ଼ ଉପରେ ପଡ଼ି ମୋ ଗୋଡ଼ଟାକୁ ଫୁଲେଇ ଦେଲାଣି ?"

ନା, କୌଣସି ଲୋକ ଉଠୁ ନାହାଁନ୍ତି କି ବର୍ତ୍ତମାନ ଉଠିବାର ସମ୍ଭାବନା ନାହିଁ । ପଞ୍ଚାନନ ଲୋକ ତିନିଟାର ଗୋଡ଼ ଧରି ଝିଙ୍କିଲେ, ମାତ୍ର କେହି ଉଠିଲେ ନାହିଁ । ଆଶ୍ଚର୍ଯ୍ୟ ! ! ଲୋକ-ଗୁଡ଼ାଙ୍କୁ କି କେହି ଧୁତୁରା ବିଷ ପ୍ରୟୋଗ କରି ଲୁଚି ରହିଛି ତାଙ୍କୁ ସୁବିଧାରେ ଲୁଣ୍ଠନ କରିବ ବୋଲି ? ପଞ୍ଚାନନ ପାଇଖାନା ଭିତରକୁ ଗଲେ । ପରୀକ୍ଷା କରି ସାରି ନିଶ୍ଚିନ୍ତ ମନରେ କାମେରାକୁ ଆସିଲେ । ଲୋକଗୁଡ଼ିକ ଘୁଙ୍ଗୁଡ଼ି ମାରୁଛନ୍ତି । ପଞ୍ଚାନନ କଳା ଛତାଟିକୁ ହାତରେ ଧରି ଠିଆ ହେଲେ ।

ସେ ନିଷ୍ଟୟ ଛତାଟିକୁ ଗ୍ରେଷ୍ଟ କରିବେ, ଗ୍ରେଷ୍ଟ କରିବେ । ଶେଷକୁ ଗାଳ୍ପିକ ସାହିତ୍ୟିକ ପଞ୍ଚାନନ ଛତା ଗ୍ରେଷ୍ଟ କରିବେ ?

ହଁ, କାହିଁକି ନ କରିବେ ?

ସାହିତ୍ୟିକ ସବୁ କରିପାରନ୍ତି । ପଞ୍ଚାନନଙ୍କର ପିଲାଦିନେ ଧାରଣା ଥିଲା ଯେ, ସାହିତ୍ୟିକମାନେ ଋଷି ଓ ସାଧୁପ୍ରକୃତିର ଲୋକ । ମାତ୍ର ଜୀବନର ଅଭିଜ୍ଞତା ତାଙ୍କୁ ବୁଝାଇ ଦେଲାଣି ଯେ, ସାହିତ୍ୟିକମାନେ ଋଷି ହେବାରେ କୌଣସି କାରଣ ନାହିଁ । ସେମାନେ ଏତେ ନିର୍ବୋଧ ନୁହନ୍ତି । ଏ ଯୁଗର ରାଜମିସ୍ତ୍ରୀ, ବୈଜ୍ଞାନିକ ଓ ସମାଜର ଆଉ ପାଞ୍ଚ ଜଣଙ୍କ ପରି ସାହିତ୍ୟିକ ମଧ୍ୟ ଜଣେ । ମନୁଷ୍ୟର ସମସ୍ତ ଗୁଣ ତା'ଠାରେ ଅଛି ଏବଂ ଅଧିକା ହିସାବରେ ସାହିତ୍ୟିକ ଗୁଣଟା ଅଛି ଏବଂ ଏଇ ଅଧିକା ଗୁଣଟା ପାଇଁ ସେ ସମାଜର ଆଉ ପାଞ୍ଚଜଣ ଗୁଣୀଙ୍କ ପରି ନିଜର ସମ୍ମାନ ଓ ମୂଲ୍ୟ ଦାବୀ କରେ । ସାହିତ୍ୟିକ ମଧ୍ୟ ଆଉ ପାଞ୍ଚ ଜଣଙ୍କ ପରି ସବୁ କରିପାରେ ! ହଁ ହେ ! କାହିଁକି ନ କରିବ ? ଗାଳ୍ପିକ ତ ଫେର ବଞ୍ଚିବ ! ! ଅତଏବ ପଞ୍ଚାନନ ଛତାଟିକୁ ଗ୍ରେଷ୍ଟ କରିବେ ! ନିଷ୍ଟୟ କରିବେ । ମାତ୍ର ସାଧାରଣ ହିସାବୀ ଫାସାଡ଼ିକ ପରି କୌଣସି ହୀନଉଦ୍ଦେଶ୍ୟ ରଖି ସେ ଗ୍ରେଷ୍ଟ କରୁନାହାନ୍ତି ଅବଶ୍ୟ । ସେ ତିନୋଟି ଛତା ହଜାଇ ସାରିବା ପରେ ସ୍ତ୍ରୀଙ୍କ ଠାରୁ ଗାଳି ଖାଇ ଛତା ନ କିଣିବାକୁ ପ୍ରତିଜ୍ଞା କରିଥିବା ହେତୁ ଏଇ ଛତାଟିକୁ ଗ୍ରେଷ୍ଟ କରୁଛନ୍ତି ମାତ୍ର, ପଞ୍ଚାନନ ଛତାଟି ଗ୍ରେଷ୍ଟ କରି ପ୍ଲାଟଫର୍ମକୁ ଓହ୍ଲାଇଲେ । କାହାର ସାହସ ନାହିଁ ଯେ ଏ ବେଶରେ ଓ ଏ ଷ୍ଟେସନରେ ତାଙ୍କୁ

ଛତାଚୋରୀରେ ଅଭିଯୁକ୍ତ କରିବ । ତା'ପରେ ମଧ୍ୟ ଛତାଟି ଚୋରୀ କରିଥିବା ହେତୁ ସେ ଗର୍ବ କରୁଛନ୍ତି । ଆଜ ପର୍ଯ୍ୟନ୍ତ ସେ ଚୋରୀ କରିନାହାନ୍ତି । କରିପାରି ନାହାନ୍ତି । ଇଚ୍ଛା ଥିଲେ ମଧ୍ୟ ସାହସ ହୋଇ ନାହିଁ । ଧରା ପଡ଼ିବା ଭୟ ଓ "ଚୋରୀ କରିବା ମହାପାପ"ର ସଂସ୍କାର ତାଙ୍କୁ ଏହି କାର୍ଯ୍ୟଟି କରାଇ ଦେଇ ନାହିଁ । ସେଥିଲାଗି ସେ ମନେ ମନେ କ୍ଷୁଣ୍ଣ ହୋଇଛନ୍ତି । ମାତ୍ର ଆଜ ? ଜୀବନରେ ଗୋଟିଏ ସାଫଲ୍ୟ । ସବୁ ଭୟ ଓ ସଂସ୍କାରମୁକ୍ତ ହୋଇ ସେ ଚୋରୀ କରିଛନ୍ତି ଏଇ ଛତାକୁ । ଗର୍ବରେ ଓ ଆନନ୍ଦରେ ସେ ପ୍ଲାଟଫର୍ମରୁ ପଦାକୁ ଆସିବା ଲାଗି ଛତାଟିକୁ ନିର୍ଭୟରେ ହଲାଇ ହଲାଇ ଗେଟ୍‌ପାଖକୁ ଆସିଲେ, ଗେଟ୍‌ରେ ଅସମ୍ଭବ ଭିଡ଼ । ପଞ୍ଚାନନ ଭିଡ଼ର ପାଖ ପଶନ୍ତି ନାହିଁ । ଜନଗହଳିକୁ ସେ ସର୍ବଦା ଭୟ କରନ୍ତି । ମାତ୍ର ଆଜି ଛତାଚୋରୀ କରିବା ପରେ ସେ ଖୁବ୍ ସାହସୀ ହୋଇ ପଡ଼ିଛନ୍ତି । ଗେଟ୍‌ରେ ଭିଡ଼ ମଧ୍ୟକୁ ପଶି ଟିକେଟ୍ ବଢ଼ାଇ ଦେଇ ସେ ଛତାଟିକୁ ହଲାଇ ହଲାଇ ଗେଟ୍ ବାହାରକୁ ଚାଲିଆସିଲେ । ଟ୍ରେନ୍ ବି ଛାଡ଼ି ଦେଇଥିଲା ।

ପଞ୍ଚାନନ ନିଶ୍ଚିନ୍ତ ହୋଇ ଘରକୁ ଆସିଲେ ।

ଘରେ ପହଞ୍ଚି ସେ ଆନନ୍ଦରେ ସ୍ତ୍ରୀ‌ଙ୍କୁ ଡାକିଲେ ଓ ପୁଅକୁ ଡାକିଲେ । ସାନଭାଇଟି ଓ ଚାକରଟି ମଧ୍ୟ ଆସି ତାଙ୍କୁ ଘେରିଗଲେ । ପଞ୍ଚାନନ ଛତାଟିକୁ ସଗର୍ବେ ସ୍ତ୍ରୀଙ୍କୁ ଦେଖାଇ କବାଟରେ ଟାଙ୍ଗିଦେଲେ ।

"କେତେ ଟଙ୍କା ପଡ଼ିଲା ? ଭଲ ଛତାଟିଏ ତ ?" ସ୍ତ୍ରୀ ପଚାରିଲେ ।

"ଆହେ ନାହିଁ ହେ ଠାକୁ ? ପ୍ରତିଜ୍ଞା କରିଛୁ ଛତା କିଣିବୁ ନ ବୋଲି ।"

"ତେବେ କାହା ଛତାଟି ଆଣିଚ ?"

"ଭଗବାନ୍ ଦେଲେ, ବୁଝିଲ ? ଜଣେ ବନ୍ଧୁ ଏକଟି ଉପହାର ଦେଇଛନ୍ତି ।"

ହ୍ଲାଦମୀ ମନେକଲେ, ହୋଇଥିବ; ଅନେକ ବନ୍ଧୁ ତ ଅନେକ ଉପହାର ବି ଦଅନ୍ତି ।

ପଞ୍ଚାନନ ଲୁଗା ପାଲଟିଲେ, କାମିଜ ଖୋଲିଲେ, ମାତ୍ର ଏ କଣ ? ତାଙ୍କ ଫାଉଣ୍ଟେନ୍ କୁଆଡ଼େ ଗଲା ? ପାର୍କର ସ୍ପେଶିଆଲ୍—

ହ୍ଲାଦମୀ ସବୁ ପକେଟ, ବ୍ୟାଗ ଓ ବିଛଣା ଅଣ୍ଡାଳିଲେ । ମାତ୍ର କଲମ ମିଳିଲା ନାହିଁ ।

"ନିଶ୍ଚୟ କଲମଟି ପକେଟମାରୁ ହୋଇଛି ? ତମେ ଯେଉଁ ମଣିଷ ନା ଯୌତୁକ କଲମଟା, ୬୦।୭୦ ଟଙ୍କାର କଲମଟା, ଏଡ଼େ ହତଭାଗ୍ୟ ତମେ ? ଓହୋ, ଏଡ଼େ ହତଭାଗ୍ୟ ତମେ !

ହ୍ଲାଦମୀ ଦୁଃଖରେ ଝାଉଁଳି ପଡ଼ିଲେ ।

ପଞ୍ଚାନନ କିନ୍ତୁ ଟିକେ ଗମ୍ଭୀର ହୋଇ ତା'ପରେ ହସି ଦେଲେ ।

"ବୁଝିଲ, ଛତାଟି ଛତା ଏ ବର୍ଷ ହଜାଇ ଏ ଛତାଟି ମୁଁ ରୋଜଗାର କଲି ।"

ଅବଶ୍ୟ ବାଧ୍ୟ ହୋଇ ଚେଷ୍ଟା କଲି । ମାତ୍ର ଯେ ମୋ ଫାଉଣ୍ଟେନ୍‌ଟି ଚେଷ୍ଟା କଲି—ଘବଲ ଦେଖି, ବନ୍ଧୁବର ଏ ବର୍ଷ କେତୋଟି ଫାଉଣ୍ଟେନ୍ ହଜାଇ ସାରିବା ପରେ ସେ ବାଧ୍ୟ ହୋଇ ମୋ ଫାଉଣ୍ଟେନ୍‌ଟି ଚେଷ୍ଟା କରିଛ ? ଆହା ବନ୍ଧୁବର! ଭଦ୍ର-ଲୋକଙ୍କ ପାଇଁ ମୋର ଦୁଃଖ ହୁଏ ! !

ପଞ୍ଚାନନ ଦୀର୍ଘ ନିଶ୍ୱାସ ଛାଡ଼ିଲେ ।

ହ୍ଲାଦିନୀଦେବୀଙ୍କ ଦେହ ଜଳିଯାଉଥିଲା । ଏହି ହତଭାଗ୍ୟ ବୁଦ୍ଧିହୀନ ଅପଦାର୍ଥଟି ପ୍ରତି କିନ୍ତୁ ତାଙ୍କ ମନରେ ଦୟା ଆସିଲା । ସେ କେବଳ ଏତିକି କହିଲେ—

"ହାୟ ହତଭାଗ୍ୟ !! ହାୟ ଅପଦାର୍ଥ !!!

# ଘୋଡ଼ା ଡମ୍ଫ

ଟେବୁଲ୍ ପାଖେ ବସି ବସି ଦର୍ପଣରେ ମୁହଁ ଦେଖି ଗାଲରୁ ବ୍ରଣ ଚିପି ଖିଲ ବାହାର କରିବାଠାରୁ ଅଧିକ ଆମୋଦଦାୟକ କାର୍ଯ୍ୟ ଆଉ ଆବିଷ୍କାର କରି ପାରିବ ନି ଖିରୋଦ । କେଇଟି ଦିନ ଭିତରେ ମୁହଁଟି ଯେପରି କି ଏକ ତରୁଣ ଭଙ୍ଗିଳ ପର୍ବତମାଳା ( young fold mountains )ର ଆକାର ଧାରଣ କରିଛି । ଖିରୋଦ ନିଜ ମୁହଁଟାକୁ ଦେଖି ହସେ । କ୍ରମଶଃ ଜୋରରେ ବି ହସି ଉଠେ । ସତ୍ୟ-ଶିବ-ସୁନ୍ଦର-ସ୍ରଷ୍ଟା ପରମେଶ୍ୱରଙ୍କର ସୌନ୍ଦର୍ଯ୍ୟଜ୍ଞାନ ଉପରେ କ୍ଷଣେ ସନ୍ଦେହ ହୁଏ ଖିରୋଦ ମହାନ୍ତିର । ଖିରୋଦ ପୁଣି ଥରେ ଦର୍ପଣକୁ ଅନାଏ । ନା-ମୁହଁଟାକୁ ସେ କୌଣସି ମତେ ସହ୍ୟକରି ପାରୁ ନି । ଗର୍ତ୍ତାକାର ଗଣ୍ଡଦେଶ—ସପ୍ତାହବ୍ୟାପୀ କ୍ଷୁରସ୍ଖଳନରହିତ କ୍ରମବର୍ଦ୍ଧିଷ୍ଣୁ କ୍ଷତ ପିଙ୍ଗଳ ତୀକ୍ଷ୍ଣ ଶ୍ମଶ୍ରୁରାଶି ବ୍ରଣାବୃତ ଲପନ—ବାଃ ବାଃ ବାଃ ! ଖିରୋଦ ମହାନ୍ତି ଦାନ୍ତ ନିକୁଟି ଓଠ ନେଫେଡ଼ି ଆଖି ଓଲଟାଇ ମୁହଁରେ ବିଚିତ୍ର କାର୍ଟୁନ ଭଙ୍ଗୀ ଆଣେ । ହାଇ ହାଇରେ କି ମୁଗ୍ଧ ଦୃଷ୍ଟି । କି ପ୍ରେମପ୍ଲାବିତ ଚକ୍ଷୁ ଦୁଇଟି ! ଭାବପୂର୍ଣ୍ଣ ଭ୍ରୂଲତା—ଆଃ ଧନ୍ୟ ଧନ୍ୟ—ଆ ବାବୁ କନ୍ୟାରେ ପୃଥିବୀ ମୋହିଲ ସାଗର ମୋହିଲ ତ୍ରିଭୁବନ ମୁନିଜନମାନଙ୍କ ମନକୁ ଧ୍ୱଂସିବାକୁ ଗର୍ଜନେ-

କ ଭୂମି ଗର୍ଭଗ୍ରସ୍ତ କ ଅବା ଅନ୍ଧକାରାଚ୍ଛନ୍ନ । ହାଃ ହାଃ ହାଃ ଜୟ ଜୟ ନାରାୟଣ ଅବଧୂତ ସ୍ୱାମୀଙ୍କର ଜୟ । ହସି ହସି ଲୋଟିପଡ଼େ ଖିରୋଦ ମହାନ୍ତି ।

ପୁଣି ଥରେ ଦର୍ପଣକୁ ଚାହେଁ ଖିରୋଦ ମହାନ୍ତି । ବେଳକୁ ବେଳ ଆଖି ବେଶି ବେଶି ପଶିଯାଉଛି । ଦୁଇ ମଣିଷରେ ସତେ ବା ଦୁଇଫୁଟ ଗର୍ତ୍ତ । ବାଃ ବାଃ ! ଚମତ୍କାର କୋରଡ଼ ଦୁଇଟି ଥାଉ ଥାଉ, ବଣି ଚଢ଼େଇଟିଏ ଏଥର ଆସି ବସା କରିବ—ଡିମ୍ବ ପାରିବ ଛୁଆ ଫୁଟେଇବ ହାଃ ହାଃ ହାଃ ।

ଆରେ ଏ କିଏ ? ଗାଲ ଦୁଇଟା ତାର କୁଆଡ଼େ ଗଲା ? ଦୁଇପଟେ ଦୁଇଟି ହନୁହାଡ଼, ମୁଣ୍ଡ, ନାକ । ଗେଣ୍ଡା ପାଟି । ଖିରୋଦ, ଦର୍ପଣଠାରୁ ଦୁଇ ହାତ ପଛକୁ ଯାଇ ନିଜ ମୁହଁର ଗୋଟେ ଦୂର ଦୃଶ୍ୟ ନେଲା । ହଁ ଠିକ୍ ଠିକ୍—ଏଇ ଦର୍ପଣଟାଇ ପାଜି । ଦର୍ପଣଟାର ମଝିରେ ତେଢ଼ାପରି ଧାଙ୍ଗଟାଏ ଥିବା ହେତୁ ତା ମୁହଁଟା ଏତେ ବିକୃତ ଦିଶୁଛି କିନା ! ହରେକ ମାଲ ଛ ଛ ପଇସା ସୁଯୋଗରୁ ସେ ଦର୍ପଣଟା କିଣିଥିଲା । ପଛପଟେ ଜଣେ ବିଖ୍ୟାତ ସିନେମା ନର୍ତ୍ତକୀର ଏକ ଅର୍ଦ୍ଧନଗ୍ନ କାମୋଦ୍ଦୀପକ ଛବି । ତାର ମୁକୁଳା ଜାନୁ ଦୁଇଟିର ଅତି ଲୋଭନୀୟ ଆକର୍ଷଣ—ଖିରୋଦ କିଣିଆଣିଥିଲା । ନନ୍‌ସେନ୍‌ସ କ୍ୱାଇଟ୍ ନନ୍‌ସେନ୍‌ସ ଯେତେ ସବୁ ଶଠ, ଠକ ବଦମାସ ଦଳ । ଏ ପଟେ ଖିରୋଦ ମହାନ୍ତିର ଏତେ କଦର୍ଯ୍ୟ, ବିକୃତ, ମର୍କଟାକାର ଚପଲସିଭ ଗୋଟେ ଅରୁଚିକର ମୁହଁ; ଆଉ ଠିକ୍ ଆର ପଟେ ତାକୁ ବ୍ୟଙ୍ଗ କରି ହାସ୍ୟମୟୀ ଲାସ୍ୟମୟୀ ନର୍ତ୍ତକୀ ତାର ବିଲୋଳ ଦେହଭାରକୁ ଏକ ବିଶିଷ୍ଟ ଭଙ୍ଗିମାରେ ଛନ୍ଦିତ କରି, ଗୋଟାଏ ମର୍ମର ଶୁଭ୍ରନଗ୍ନ

ଜାନୁକୁ ଊର୍ଦ୍ଧ୍ୱକୁ ଟେକି ଅନ୍ୟ ଜାନୁଟିକୁ ଭୂମି ଉପରେ ରଖି ଗୋଟାଏ ଖପ୍ତେଇ ହେବା ଚେଞ୍ଜ୍ ନେଇ ଛିଡ଼ା ହୋଇଛି । ସତେ ବା ଖିରୋଦର କୁତ୍ସିତ ମୁହଁ ଉପରେ ପଦାଘାତ କରିବା ପାଇଁ ସେ ଆର ଗୋଡ଼ଟାକୁ ଉଠେଇ ଟେକିଛି । ଖିରୋଦ ରାଗିଗଲା ମନେ ମନେ । ରଡ଼୍‌ କଲା, ମତେ ଥଟ୍ଟା କରୁଛୁ ? ମୋର ଏଇ ରୂପକୁ ବ୍ୟଙ୍ଗ କରୁଛୁ ? ଆଚ୍ଛା, କିଏ ତୋତେ ରକ୍ଷାକରିବ ଆଜି ମୋ ହାତରୁ ! ଦେଖି ଦେଖି ପିଶାଚି, ଖିରୋଦ ମହାନ୍ତିର ଶକ୍ତି କେତେ ଦେଖି; ପାରିବୁ ? ପାରିବୁ ତୁ ନାରୀ ? ଆରେ ଆରେ ବାରବନିତା ସହସ୍ର ଶଯ୍ୟାରେ ସାଜ ଗୋପନ ନାୟିକା, କରୁଅଛୁ ପୁଣି ମୋତେ ଥଟ୍ଟା ? ଏବେ କର ତୋର ଇଷ୍ଟ ସ୍ମରଣ । ହାଃ ହାଃ ହାଃ । ଖିରୋଦ ରାଗରେ ଦର୍ପଣଟାକୁ ତଳେ କଚାଡ଼ି ଦେଲା । ଖଣ୍ଡଖଣ୍ଡ କରି ଦର୍ପଣ କାଚଟା ବହୁ ଖଣ୍ଡରେ ବିଭକ୍ତ ହୋଇ ଭାଜିଗଲା ।

ଖିରୋଦର ହୋସ ଆସିଲା । ଆଃ, କାରଣ୍ଟ ଦେଖାଇ ସେ ଅକାରଣରେ ଦର୍ପଣଟାକୁ ଭାଙ୍ଗିଦେଲା ! ଆଉ କଣ "ହରେକ ମାଲ ଛ ଛ ପଇସା"ବାଲାଠାରୁ ସେ ଦର୍ପଣଟିଏ କିଣି ପାରିବ ? ଖିରୋଦ ଭଙ୍ଗା ଦର୍ପଣଟାକୁ ନିରେଖି ଦେଖିଲା । ନାଃ, ଯା ! କାମ ବଢ଼ିଗଲା । ଆହା ! ଦର୍ପଣଟା ତାର କେଡ଼େ ପ୍ରିୟ ନ ଥିଲା ତାର ଅସୁନ୍ଦର କୁତ୍ସିତ, ବ୍ରଣପୂର୍ଣ୍ଣ ମୁହଁଟାକୁ କୋଳରେ ଧରିବାକୁ ଦର୍ପଣଟା କେବେ ଭଲ ଅବାଧ ହୋଇଚି ? ଅକାରଣେ ମନଟା ତାର ନରମି ଆସିଲା । ଖିରୋଦ କାନ ମୋଡ଼ିହେଲା, ଭୂଇଁରେ ନାକ ଘଷିଲା, ମନକୁ ମନ ଗାଳିଦେଲା, ଆରେ କୁଳାଙ୍ଗାର — ହତଭାଗ୍ୟ ଗର୍ଦ୍ଦଭ ଖିରୋଦଚନ୍ଦ୍ର, ତୁ ତ ତୋର ଗାଲରୁ ବ୍ରଣ

ଚପିବା କାମରେ ବ୍ୟସ୍ତ ଥିଲୁ, ଅବଳା ନାରୀର ଫଟୋ ଉପରେ ବୃଥା ଗାରଭୁ ଦେଖାଇ ବସିଲୁ କାହିଁକି ? କହ କାହିଁକି ? କହ ଜବାବ୍ ଦେ, ଜବାବ୍ ଦେ, ଜବାବ୍ ଦେ ! ଖିରୋଦ ନିଜ ଗାଲରେ ଠାଇ କିନା ଏକ ଚଟକଣା ମାରିଦେଲା । ତା' ପରେ ଚଞ୍ଚଳ୍ୟପ୍ରାପ୍ତ ତାର ଅତିପ୍ରିୟ ଭଗ୍ନ ଦର୍ପଣଟିର ସ୍ମୃତିକୁ ନେଇ ଗୋଟିଏ କବିତା ଲେଖିବାକୁ ସ୍ଥିର କରି ସେ କଲମ ଧରିଲା ।

ଆଗୋ ମୋର ଅତୀତର ହୃଦୟର ଦର୍ପଣ
ଅକାଳ ବିୟୋଗେ ତୁମ କରୁଚି ମୁଁ ତର୍ପଣ
ଏଇ ମୋର ମୁଖ ବ୍ରଣପୂର୍ଣ୍ଣ
ତୁମେ ମୋର ସଖି ଥିଲ, ରଖିଥିଲ,
ନିନ୍ଦା କାମୁଡ଼ୁ ମୋତେ—ବିର୍ଣ୍ଣୀ ମାରୁ ମୋ ମାଥେ
କାହିଁକି ମୁଁ କଲି ତୋତେ ଚୂର୍ଣ୍ଣ ।

ବାଃ ! ଚମତ୍କାର ତ, ଦୁଇ ବର୍ଷ ପରେ ଖିରୋଦ ମହାତ୍ମା ପୁଣି ଥରେ କବିତା ଲେଖିଚି । ଅନିମା, ଶକୁନ୍ତଳା; ଇନ୍ଦୁମତୀ, ମନୀଷା ଆଉ ଚୂର୍ଣ୍ଣକୁନ୍ତଳମ୍‌ର ଦଳ, ତାଙ୍କ ପ୍ରେମରୂପ ବାସୁକୀ ରଜ୍ଜୁରେ ବିରହମନ୍ଦରକୁ ବାନ୍ଧି ତାର ହୃଦସାଗରକୁ ମନ୍ଥନ କରି କରି ଯେଉଁ କାବ୍ୟାମୃତ ବାହାର କରି ପାରିନାହାନ୍ତି, ସାମାନ୍ୟ ଛ' ପଇସାର ଦର୍ପଣଟା ତ ସେତିକ ଅତି ସହଜରେ ବାହାର କରି ଦେଇ ପାରିଲା, ନିଶ୍ଚୟ ଦର୍ପଣଟାର କିଛି ଦୈବୀଶକ୍ତି ରହିଛି । ଭଗ୍ନ ଦର୍ପଣର ସ୍ମୃତି, ଖିରୋଦର କଲମରୁ ବିଶ୍ୱର ଶ୍ରେଷ୍ଠ କବିତା ଝରାଇ ପାରିଥାନ୍ତା କି ନାହିଁ କେଜାଣି, ମାତ୍ର ପରିସ୍ଥିତିଟାକୁ ମାଟି କରିଦେଲା, ତାର କଲେଜ ଜୀବନର ପୁରାତନବନ୍ଧୁ ଇଞ୍ଜିନିଅର ଗଜେନ୍ଦ୍ର ଷଡ଼ଙ୍ଗୀର ଅବାଞ୍ଛନୀୟ ଉପସ୍ଥିତି । ଟେବୁଲ ଉପରୁ

ଝାଟାଟାକୁ ଉଠେଇ ନେଇ ଗଜେନ୍ଦ୍ର କବାଟାଟାକୁ ପଡ଼ି ବସିଲା । ତା'ପରେ ତାର ସ୍ଥୂଳ ଟାଲ ଭିତରୁ ଏକ ଅସ୍ୱାସ୍ଥ୍ୟକର ଉଚ୍ଛ୍ୱାସ, ଖିରୋଦର ମୁଣ୍ଡରେ କଙ୍କଡ଼ାବିଛା କାମୁଡ଼ାର ଯନ୍ତ୍ରଣା ଦେଲା ।

"ଖିରୋଦ, ତୁ ପାଗଳ ହୋଇ ଗଲୁଣି ରେ—

"କଏ ? ମୁଁ ? ଅସମ୍ଭବ ଗଜେନ୍ଦ୍ର,—ଖିରୋଦ ମହାନ୍ତି କେବେ ପାଗଳ ହୋଇ ପାରିବନାହିଁ । ପାଗଳ ହେଲେ ସେ ବରଂ ବଞ୍ଚିଯାଆନ୍ତା ରେ !" ଖିରୋଦର କଥାରେ ଏକ ଉଦ୍ଧତ କାରୁଣ୍ୟ ।

"ଆଃ, ତୋର ପାଗଳାମୀ ବନ୍ଦ କର, ମୋର ସମୟ ନାହିଁ ଭାଇ, ହଁ ଭାଇ, ହଁ, ତୋର ସବ୍ଡେପୁଟୀ ଗୃହକର କଥା କଣ ହେଲା ? କେବେ ଆପଏଣ୍ଟମେଣ୍ଟ ପାଉଚୁ ?"

"ତୁ କଣ ଖାସ ଏଇ କଥାଟା ବୁଝିବାକୁ ମୋ ପାଖକୁ ଧାଇଁ ଆସିଚୁ ? ଏଡ଼େ ଶୁଭାକାଙ୍କ୍ଷୀ ବନ୍ଧୁ ତୁ ମୋର ? ମୋତେ ତୁ ଏତେ ଭଲ ପାଉ ?"

ଖିରୋଦ ଜୋରରେ ଖୋଲା ଫୁଲସାର୍ଟ ଉପରେ ଝୁଲୁଥିବା ଟାଇଟାକୁ ଭିଡ଼ି ଧରିଲା । ଚମକି ପଡ଼ିଲା ଗଜେନ୍ଦ୍ର । ଖିରୋଦର ଆଖିରେ ଏ କି ଭୀଷଣ ହିଂସ୍ରତା ? ଖିରୋଦ ସତେ ବା କ୍ଷୁଧାର୍ତ୍ତ ଏକ ବନ୍ୟ ଜାନୁଆର । ଇତସ୍ତତଃ ବିକ୍ଷିପ୍ତ ଧୂସର ଲମ୍ବ କେଶରାଶି କୁଞ୍ଚିତ, ଶ୍ରୀହୀନ, ବିଭତ୍ସ, ବିଖଣ୍ଡିତ ମୁଖମଣ୍ଡଳ । ଅସ୍ଥିସାର ଶିରାମୟ ହାତଗୋଡ଼ । ଇସ୍ ! କି ଭୟଙ୍କର ଏଇ ଖିରୋଦର ମୁହଁଟା ! ଗଜେନ୍ଦ୍ର ଭୟରେ ଥରିବାକୁ ଲାଗିଲା ।

"ହାଣ୍ଡସ୍ ଅପ୍—ଅର, ଆଇ ସୁଟ୍ ଇଉ—"

ଖିରୋଦ ତାର ଆଲମ୍ବିତ ଶିରକ୍ତି ଦ୍ରୁପପୂର୍ଣ୍ଣ ଏକ ମଇଳା କୋର୍ଟ ପକେଟରୁ ସତକୁ ସତ ଏକ ପିସ୍ତଲ ବାହାରକଲା, ଏବଂ ଗଜେନ୍ଦ୍ରର ମୁହଁକୁ ଲକ୍ଷ୍ୟକରି ଘୋଡ଼ାଟାକୁ ଧରିଲା । ଗଜେନ୍ଦ୍ରର ଛାତି ଥରା ଧରିଗଲା । ତାର ବୁଦ୍ଧିବୃତ୍ତି ଲୋପ ପାଇଗଲା । ପାଗଳ ଖିରୋଦ ଉତ୍କ୍ଷିପ୍ତ ହୋଇଛି । ସେ ତାକୁ ନିଶ୍ଚୟ ମାରିଦେବ । ଅତି କଷ୍ଟରେ ଗଜେନ୍ଦ୍ର ଉଚ୍ଚାରଣ କଲା—

"ଖିରୋଦ, ମୋର ବନ୍ଧୁ ! ଉତ୍କଳ ସାହିତ୍ୟ ଆକାଶର ଦୀପ୍ତିମନ୍ତ ସୂର୍ଯ୍ୟ ! ମୋତେ ଦୟାକରି ଛାଡ଼ିଦେ, ମୋର ସବୁ ଦୋଷ କ୍ଷମାକର—ମୋର ବିବାହର ଦୁଇଟି ମାସ ବି ଯାଇନାହିଁ । ମୋର ନବବିବାହିତା ହତଭାଗିନୀ ସ୍ତ୍ରୀଟିର କଥା ଭାବେ ଖିରୋଦ; କବି ତୁ, ଦରଦୀ ତୁ, ତୋର ହୃଦୟ, ତୋର ମନ, ତୋର ପ୍ରାଣ, ଖିରୋଦ ମତେ ଛାଡ଼ି ଦେ । ଖିରୋଦ ତୋର ଗୋଡ଼···

"ହୁଁ" ଖିରୋଦ ବନ୍ଧୁକଟାକୁ ଫୁଟାଇ ଦେଲା ।

ହାଃ ହାଃ ହାଃ ହାଃ—-ହାଃ ହାଃ ହାଃ ହାଃ—ହାଃ ହାଃ ହାଃ ହାଃ—ଲହରେଇ ଲହରେଇ ହସିଲା ଖିରୋଦ ଉନ୍ନଟା ସର୍ବଗ୍ରାସୀ ତେଜ ।

କି ଭୟଙ୍କର ହସ ଏଇ ଖିରୋଦର ! ଖିରୋଦ ଗଜେନ୍ଦ୍ର ନେକ୍‌ଟାଇଟାକୁ ଦୁଇ ଥର ଝିଙ୍କି ଜୋର କରି ତାକୁ ଖଟ ଉପରକୁ ପେଲି ଶୁଆଇ ଦେଲା । ତା'ପରେ ପିସ୍ତଲଟାକୁ ଉପରକୁ ଛୁଡ଼ି ଦେଇ ପୁଣି ଥରେ ଧରିନେଲା ଏକ ବିଶିଷ୍ଟ ଖେଳାଳିର ଭଙ୍ଗୀରେ ।

ଓ୍ୱାମ୍ ଇଓର ଷ୍ଟାରାଲୁଦ ଓ୍ୱାମ—ଏଇ, ଏଇ ତୁମର ଇଞ୍ଜିନିୟରିଂ ବୁଦ୍ଧି । ଏତେଟିକେ ଛାତି ନେଇ ତୁମେ ବସିଚ

ସ୍ରୋତମୁଖରା—ବନ୍ୟାପ୍ରଖରା ଦୁଷ୍ଟହସ୍ତୀ ମହାନଦୀର ବକ୍ଷରେ ବନ୍ଧ ବାନ୍ଧି ବିଦ୍ୟୁତ୍‌ଶକ୍ତି ଉତ୍ପାଦନ କରିବ । ନିର୍ଜଳା, ନିଷ୍ଫଳା, ଧୂସର ଊଷର ଭୂଖଣ୍ଡ ଓଡ଼ିଶାକୁ ସୁଜଳା, ସୁଫଳା, ଶସ୍ୟଶ୍ୟାମଳା କରିବ ?

ଛି ଛି ଛି, ଗଜେନ୍ଦ୍ର ଷଡ଼ଙ୍ଗୀ, ଟିସ୍କୋଲଷ୍ଟାର ମୋର ଆତ୍ମ-ସମ୍ମାନ ଅଛି । ଏ ଚୁଚୁନ୍ଦ୍ରା ମାରି ହାତ ଗନ୍ଧ କରିବାକୁ ଚାହେଁନି —ହଉ, ବର୍ତ୍ତମାନ ସିଧା ଭାବରେ ଉପବେଶନ କର, ଉଠ—

ଗଜେନ୍ଦ୍ର ଉଠି ଠିଆହେଲା ।—

"ଖିରୋଦ; ତୋର ବନ୍ଧୁକର ଗୁଳି ସରିଯାଇଛି ତା ଫୁକୁଟରେ ? ତୁ ତେବେ ମୋତେ ଈର୍ଷାରେ ମାରିଦେବାକୁ ବସିଥିଲୁ, ନାହିଁ ?

ଖିରୋଦ ଏଥର ଗମ୍ଭୀର ହୋଇଗଲା । ତା'ପରେ କିନ୍ତୁ ଅଧରରେ ସ୍ମିତ ଉକୁଟାଇ ସେ କହିଲା—"ଈର୍ଷା ? କାହାକୁ ? ତୋତେ ? ଗଜେନ୍ଦ୍ର ଷଡ଼ଙ୍ଗୀ କି ? ହାଃ ହାଃ ହାଃ ! ବୁଝିଲ ଗଜେନ୍ଦ୍ର କୁମାର ! କଲେଜ ଜୀବନରେ ତୁମେ ମୋତେ ଈର୍ଷା କରୁଥିଲ । ପାଠରେ ନୁହେଁ, କାରଣ ଫେଲ ନ ହେଲେ ବି ମୋ ଜୀବନରେ ଫାଷ୍ଟ ହେବାର ଭାଗ୍ୟ କେବେ ଘଟିନାହିଁ । ତୁମେ ମୋର ସୁନାମ, ମୋର ଲୋକପ୍ରିୟତା, ମୋର ସାହିତ୍ୟ, ମୋର ଅଭିନୟ, ମୋର ଅନୁଷ୍ଠାନ ଆଦିକୁ ଖୁବ୍ ଈର୍ଷା କରୁଥିଲ । କିନ୍ତୁ ଆଜି ? ମୁଁ ତୁମକୁ ଈର୍ଷା କେମିତି ବା କରନ୍ତି ? ତୁମେ ମୋଠାରୁ ବର୍ତ୍ତମାନ ଏତେ ଉପରେ, ଯାହା ଫଳରେ କି ମୋ ଈର୍ଷାର ସାଧ୍ୟ ନାହିଁ ଯେ ସେ ତୁମକୁ ଆକ୍ରମଣ କରିବ । ତୁମେ ବରଂ ବର୍ତ୍ତମାନ ସୁଖୀ ହୁଅ ଯେ, ଖିରୋଦ ମାହାନ୍ତିକୁ

ଈର୍ଷା କରିବାର ଦୁର୍ଭାଗ୍ୟ ଭଗବାନ ତୁମ ଉପରୁ ଉଠାଇ ନେଇଛନ୍ତି । ମୋର ତୁମକୁ ଗୁଳି କରିବା ପଛରେ ଈର୍ଷା ନ ଥିଲା, — ବରଂ ଥିଲା ତମ ସୌଭାଗ୍ୟକୁ ଓଜନ କରିବାର ମତଲବ ! ଖିରୋଦ ମହାନ୍ତି ପୁଣି ଥରେ ହସିଲି । ହଁ, ଏଥର କୁହ ତୁମ ଆଗମନର ମୁଖ୍ୟ ଉଦ୍ଦେଶ୍ୟଟା ଆଗ କଣ ? ହଁ କଥାଂ ପୃଚ୍ଛ—ଓ ସରି କଥ୍ୟତାଂ —

ଗଜେନ୍ଦ୍ର ଏଠୁ ଖସିଯିବ ବୋଲି ଓର ଉଣ୍ଡୁଥିଲା; ମାତ୍ର ଖିରୋଦ ଏଭଳି ପ୍ରଶ୍ନରେ ସେ ବଡ଼ ବିବ୍ରତ ହୋଇପଡ଼ି ଚଟାପଟ୍ କହି ପକାଇଲା—

"ହାଁରେ ଖିରୋଦ, ତୁ ତ ଜାଣୁ, ପଟ୍ଟନାୟକ ଆଣ୍ଡ କୋ ମୋତେ ପାଞ୍ଚ ହଜାର ଟଙ୍କାର ଗୋଟାଏ ଅଫର ଦେଇଚ— ସେଥିପାଇଁ ଆଜ ଘରେ ଗୋଟାଏ ଟି-ପାର୍ଟିର ଆୟୋଜନ କରିଚ । କେଶି କେହି ନୁହଁ, ନୂଆ ଆଡ଼ଭୋକେଟ ଜେ: ମହାରଥୀ, ଡ଼: ଏସ: ପି: ପୂର୍ଣ୍ଣୀ, ଆରେ ଆମ ପୂର୍ଣ୍ଣି ମ—ଇଷ୍ଟବେଙ୍ଗଲ ଟିମକୁ ଏକା ବାଜିକେ ଛ'ଟା ଗୋଲ ଦେଇ ନ ଥିଲା ? ଆଉ ମିସ୍ ଆଚାର୍ଯ୍ୟ, ହଁ, ଦାଶରଥୀ ଆଚାର୍ଯ୍ୟଙ୍କ ଝିଅ · ମହିଳା କଲେଜର ଇତିହାସ ଅଧ୍ୟାପିକା, ହଁ ଆମର ବି କ୍ଲାସମେଟ୍ ଥିଲା, ମିସ୍ ରାଙ୍ଗା ରେଡ଼ିଓ ଷ୍ଟେସନର ନାରୀମହଲ ପରିଚାଳିକା ଏଇ ସବୁ ଆଉ କେଇଜଣ ଏମିତି ଏମିତି, ହଁ ସମାଜତନ୍ତ୍ର କାଗଜର ସମ୍ପାଦକ ରାଧାବଲ୍ଲଭ ରଥନାୟକ, ଆମର ଯୁଗସ୍ରଷ୍ଟା କବି ଫାଲଚନ୍ଦ୍ର ରାଉ ସିଂ, ·ଆଉ ଏମିତି ଏମିତି ·ତୁ ବି, ହଁ, ତୁ ଆଉ ଏମିତି ଏମିତି—ହେଁ ହେଁ !

ଖିରୋଦ ଗୋଟେ ପୋଡ଼ା ସିଗ୍ରେଟରେ ନିଆଁ ଧରାଇ ଧରାଇ, ଗୃହାଣୀଙ୍କୁ ଯଥାସମ୍ଭବ ବଙ୍କ କରି ଗମ୍ଭୀର କଣ୍ଠରେ ପଚାରିଲା "ହଁ, କହିଯାଅ ଏମିତି ଏମିତି ହଁ ସେଇ 'ଏମିତି ଏମିତି'ର ଦଳ ମଧ୍ୟରୁ କେତେ ନମ୍ବର ଦାଗୀ ମୁଁ ? ସେଗୁଡ଼ାଙ୍କର ନା ଧରି ନା ଗଜେନ୍ଦ୍ର ! ତୋର ଇଞ୍ଜିନ ଆଉ ଟ୍ରାକ୍‌ଟର ଗଣ ! ସେଇ ଅକର୍ମା ବେକାର ଏମିତିଗୁଡ଼ାଙ୍କର ନାଁ ଧରି ଡାକିବାରେ ସମୟ ତ ନଷ୍ଟ ହୁଏ—ଜୀବନୀଶକ୍ତି ବି ନିରର୍ଥକ ନଷ୍ଟ ହୋଇଯାଏ—ସେଗୁଡ଼ାକ ନମ୍ବରୀ ବଡ଼—ନଇଲେ ନମ୍ବରୀ ଗୁଡ଼ାଙ୍କୁ ନମ୍ବର ଅନୁସାରେ କହି ଯା ।" ଗଜେନ୍ଦ୍ର ବୋକାଙ୍କ ଭଳି ହସିଲା । ହସିଲେ ଅବଶ୍ୟ ଗଜେନ୍ଦ୍ର ମହିଳାଙ୍କ ଭଳି ବେଶ୍ ମୁଲାଏମ୍ ହସିପାଏ । ମାତ୍ର ଏଠି ତାର ହସଟାର ରୂପ ସୁନ୍ଦର—ମାତ୍ର ନାମଟା ବଡ଼ ବିଶ୍ରୀ, ବଡ଼ କୁତ୍ସିତ ମାନେ 'ଅପହସିତ ।'

"ଯିବୁ ଯାଇ ନିଶ୍ଚୟ ଯିବୁ, ମୋ ଗଣ ! ଆଜି ସନ୍ଧ୍ୟା ଛ'ଟା—ଏଁ ? ମୋର ଅନୁରୋଧ ଯାଇ ଆରେ ତୁମଭଳି ସାହିତ୍ୟିକ ଗୋଟେ ଦି'ଟା ନ ହେଲେ—''

"ହଁ ହଁ । ନିଶ୍ଚୟ, ତା ନ ହେଲେ ମିସ୍ ଆଗ୍ରହିଁୟ, ମିସ୍ ରାଙ୍ଗା, ଏଗୁଡ଼ାଙ୍କର ପ୍ରଶସ୍ତି ଗାଇବ କିଏ ତୋର ସେଇ ଗ୍ରୁ' ଭୋଜିରେ ? ତା'ପରେ ପୁଣି ତୋ ଭଳି ବୋକା ଦାଦାଙ୍କୁ ବି ରକ୍ଷାକରିବ କିଏ ? ସେଇ ବାଗାଡ଼ମ୍ବରୀ, ଧୃଷ୍ଟସର୍ବସ୍ୱ ଆଧୁନିକ-ଗୁଡ଼ାଙ୍କର ବାକ୍ୟବ୍ୟୁହ ମଧ୍ୟରୁ ? ନିଶ୍ଚୟ ଯାଇ ନିଶ୍ଚୟ ଯିବି ।

"ହେଉ ଯାଇ ଆସୁଚି । ହଁ, ତୁ ସେ ବନ୍ଧୁକଟା କାହିଁକି ରଖିଚୁ ଖିରୋଦ ? ସେଥିପାଇଁ ଓଡ଼ିଆ ସାହିତ୍ୟମାତା ତାରୁ ଭବିଷ୍ୟତର କବିବର ଖିରୋଦଚନ୍ଦ୍ରଙ୍କର ଅପ୍ରତ୍ୟାଶିତ ଆତ୍ମହତ୍ୟା ଆଶଙ୍କାରେ ଆର୍ତ୍ତନାଦ କରୁଚି ।"

ଗଜେନ୍ଦ୍ର ଷ୍ଟାରୁଥିଲା ବନ୍ଧୋଲ୍କଖୋର ଅଳସୁଅ ଟାହୁଆ ଖିରୋଧ ମହାନ୍ତିଙ୍କୁ ସେ ଗୋଟାଏ ବଡ଼ଧରଣର ଧ୍ୱନିପୂର୍ଣ୍ଣ କଥା କହିପକାଇଛି । ମାତ୍ର ଖିରୋଦ ସଙ୍ଗେ ସଙ୍ଗେ ଉତ୍ତର ଦେଲା ଚିଡ଼ିଯାଇ—

"ଉତ୍କଳ ସାହିତ୍ୟମାତା ତୋ ବ୍ରେନରେ ଟ୍ରାକ୍ଟର ଧରି ଯାହା ଗୃଷ କରୁନାହାନ୍ତି ରେ ଗଜେନ୍ଦ୍ର ! ତୋ ବ୍ରେନଟା ଗୋଟେ ବେଣା ପଡ଼ିଆ, ଆଉ ତୋର ହାର୍ଟଟା, ମାନେ ହୃଦୟଟାରେ ପଙ୍କ ଭୂଷା ପଡ଼ିଛି । ସେଥିପାଇଁ ତୋ ମସ୍ତିଷ୍କରେ ପ୍ରତ୍ୟୁତ୍ପନ୍ନମତି ରୂପକ ଶସ୍ୟ ଯେମିତି ଉଧାଉନି, ତୋ ପଙ୍କ ପଚ ପଚ ହୃଦୟଟାରେ ବି ସେଇପରି ସାହସ-ଶଗଡ଼ ଚକ ଦବିଯାଉଛି । 'ପଙ୍କ ଆଉ ବେଣା' ଗୋଟେ କୃଷି ଇଞ୍ଜିନିୟର ଦେହରେ ଭର୍ତ୍ତିହେଲେ ଯାହା ହୁଏ—ତୁ ତ ବୁଝୁଥିବୁ ଗଜେନ୍ଦ୍ର, ମୁଁ ଆଉ ଅଧିକା କଣ କହିବି ?"

"ଆରେ ବୋକାଚନ୍ଦ୍ର ! ଦେଖ ଗଜେନ୍ଦ୍ର, ଆମେ କବି-ମାନେ ବୋକାକୁ ବୋକା ବୋଲି ଗାଳି ଦେଲାବେଳେ ବି, ରସରକ୍ଷା, ବୋକାର ଇଜ୍ଜତ ପ୍ରତି ସଚେତନତା ଏବଂ ଆମର ମନ୍ତବ୍ୟ ଉପରେ ଅତିଶୟ୍ୟ ପ୍ରତ୍ୟୟହୀନତା—ଏଇ ତିନିଟା କଥା ଉପରେ ଖୁବ୍ ଗୁରୁତ୍ୱ ଦେଇଥାଉଁ । ସେଥିପାଇଁ ବୋକା ପରେ ଚନ୍ଦ୍ରଟାକୁ ଯୋଡ଼ିଦେବା ଦରକାର ହୋଇପଡ଼େ ।

ହଁ ଶୁଣ, ଏ ବନ୍ଧୁକଟାର ଇତିହାସ, ସବ୍‌ଡେପୁଟି ଗ୍ଳକର ପାଇଁ ପବ୍ଲିକ ସର୍ଭିସ କମିସନ ଦ୍ୱାରା ମନୋନୀତ ହେଲେ ବି

ସରକାରଙ୍କର ଅର୍ଥାଭାବ ପଡ଼ିଲା । ତେଣୁ ବାଧ ହୋଇ ଦୁଇଟି ବର୍ଷ ବେକାର ହେବାକୁ ପଡ଼ିଲା । ଗାଁ ହାଇସ୍କୁଲରେ ମାଷ୍ଟ୍ରଟିଏ ହୋଇଥାନ୍ତି, ମାତ୍ର ଟ୍ରେନିଂ ପଢ଼ି ନାହିଁ । ଗୁଡ଼୍—ତା ପରେ ଆସି ଯୌବନ ଥିଏଟାର ପାର୍ଟିରେ ମାନେଜରଙ୍କ ସଙ୍ଗେ ଦେଖାକଲି । ଶୁଣିଲି, ସେଠି ଅନେକ ଅଭିନେତା ପ୍ରାୟ ଶଏଟଙ୍କା ଲେଖା ବେତନ ପାନ୍ତି । ମୁଁ ଗୋଟେ ଭିଲେନ ପାର୍ଟରେ ମାନେ ଦୁର୍ବୃତ୍ତ ଭୂମିକାରେ ଟ୍ରାଏଲ ଦେଲି । ତୁ ତ ଜାଣୁ ଏଇ ପାର୍ଟ କରିବାରେ କଲେଜ ଜୀବନରେ ମୁଁ କେଡ଼େ ଓସ୍ତାଦ୍ ଥିଲି । ସେଇ ଐତିହ୍ୟକୁ ଆଗରେ ରଖି ମୋର ଇଣ୍ଟରଭିଉ ହେଲା । ଥିଏଟାର ମାନେଜର ହାଡ଼ିବନ୍ଧୁ ଦାସ; ଏଲ୍‌· ପି ୟୁ: ପି: ଏମ: ଇ: ଙ୍କ ସଙ୍ଗେ । ନାଟକଟାର ନାମ ହେଉଛି "ଯଉବନ ଖାତିରେ ।" ସେଥିରେ ଭିଲେନ ହେଉଛି ଗୋଟାଏ ଶିଖ କଣ୍ଟ୍ରାକ୍ଟର । ସ୍ଥାନୀୟ କଲେଜର ଗୋଟାଏ ପୋଷ୍ଟଗ୍ରାଜୁଏଟ ଛାତ୍ରୀ ସଙ୍ଗେ ପ୍ରଣୟ ବ୍ୟାପାରରେ ଲିପ୍ତ ରହି ସେ ହତ୍ୟା କରିବ; ନିଜ ସ୍ତ୍ରୀକୁ ଓ ସେଇ କଲେଜ ଝିଅକୁ ଧରି ଇଭିନିଂ ମେଲରେ ଚମ୍ପଟ ଦେଲା ବେଳେ ନାଟକର ନାୟକ ଆସି ତାକୁ ବାଧା ଦେଉଛୁ । ଆଉ ସେ ଦୁହିଁଙ୍କ ମଧ୍ୟରେ ଲାଗିଛି ଦ୍ୱନ୍ଦ୍ୱଯୁଦ୍ଧ । ତା'ପରେ ସେଇ ଶିଖ୍ କଣ୍ଟ୍ରାକ୍ଟରଟା ସେଇ ପ୍ରେମିକଙ୍କୁ ଛୁରି ଚପି ମାରି ଦେଉଥିଲା-ବେଳେ; ହଠାତ୍ ପୋଲିସ ଆସି ତାକୁ ଆରେଷ୍ଟ କରିଛି । ଏଇ ହେଲା କଥାବସ୍ତୁ । କିନ୍ତୁ ଅସୁବିଧାଟା କେଉଁଠି ହେଲା ଜାଣୁ ? ଏଇ ଦ୍ୱନ୍ଦ୍ୱଯୁଦ୍ଧ । ନାଟକର 'ହିରୋ' ସଙ୍ଗେ ମୋର ଦ୍ୱନ୍ଦ୍ୱ ଯୁଦ୍ଧ ଚାଲିଥିବା ବେଳେ ସେ ବରଂ ମୋତେ ମାଡ଼ ବସିଲା । ମୁଁ ଆଉ ତାର ଛୁରି ଚପିଥାନ୍ତି କେତେବେଳେ ? ମ୍ୟାନେଜର ଡାକି କହିଲେ, "ଶୁଣନ୍ତୁ ଖିରୋଦବାବୁ; ଆପଣଙ୍କ ଉଦ୍ୟମ

ବାସ୍ତବରେ ପ୍ରଶଂସନୀୟ । ଆପଣଙ୍କ ପରି ଉଚ୍ଚଶିକ୍ଷିତ ଯୁବକ ଆଜି ପ୍ରକୃତରେ ଦୁର୍ଲଭ୍ୟ । ଉଚ୍ଚଶିକ୍ଷିତଙ୍କର ଦୃଷ୍ଟି ପଡ଼ିଲେ ଓଡ଼ିଆ ସାହିତ୍ୟରେ ନାଟକ ଏକ ବଶିଷ୍ଟ ସ୍ଥାନ ଅଧିକାର କରନ୍ତା । ମାତ୍ର ମୁଁ ବଡ଼ ଦୁଃଖରେ ଖିଦ୍ୟମାନବାବୁ ! ହେଁ ହେଁ ! ଆପଣଙ୍କୁ ନିରାଶ କରିବାରେ ବରଂ ମୁଁ ବେଶ କଷ୍ଟ ଅନୁଭବ କରୁଛି । ମାତ୍ର ଏଇ 'ଭିଲେନ୍' ପାର୍ଟପାଇଁ ଆପଣଙ୍କ କଣ୍ଠସ୍ୱର ଉଚ୍ଚାରଣ ପ୍ରଣାଳୀ; ଅଭିନୟ ଭାବ ପ୍ରକାଶ, ସବୁ ଠିକ୍ ହେଉଛି କିନ୍ତୁ ଆପଣଙ୍କ ସ୍ୱାସ୍ଥ୍ୟ ନା; ନା ସେଥିରେ ଆପଣ ଆଉ କଣ କରିପାରନ୍ତେ; ଯାହାର ଯେମିତି ସ୍ୱାସ୍ଥ୍ୟ ତଥାପି ଉଚ୍ଚତା ଅନୁପାତୀ ଦେହରେ ମାଂସ ଥିବା ଉଚିତ । ଗାଲ ଦୁଇଟା ଫୁଲକା ନ ହେଲେ ହେଁ ହେଁ ହେଁ ! ଆମେ ବର୍ତ୍ତମାନ ପାଇଁ ଆପଣଙ୍କୁ 'ଇଉଟିଲାଇଜ୍' କରିପାରୁନୁ ବୋଲି ଏକଦମ୍ ଆଶା ଛାଡ଼ିଦେଇନୁ । ଆପଣ ଟିକେ ସ୍ୱାସ୍ଥ୍ୟଟାକୁ ବାଗେଇ ନିଅନ୍ତୁ ଏଇ ଛ' ମାସ ଭିତରେ । ମନେ—ରଖିବେ ସକାଳୁ ଗଜାମୁଗ ଛଟାଙ୍କିଏ; ଯୋଡ଼ିଏ କମଳା ଆଉ ଦୁଧ ପାଏ । ଆଉ ଦ'ପହରେ ଅମିଷ ଭୋଜନ ଏବଂ ସନ୍ଧ୍ୟାରେ ଦୁଧପାନ; ଦୁଇଟି ଅଣ୍ଡା ଓ କଞ୍ଚା କଦଳୀ ଆଉ ରାତିରେ ସବୁଦିନ ପରି ଆହାର । ଏତିକ ଆହାର ତ ଆପଣଙ୍କୁ—ନାଁ; ବେଶୀ ଖର୍ଚ୍ଚ କଣ ? ହିଁ, ଦୁଇବେଳା ବ୍ୟାୟାମ କରିବା ଅଭ୍ୟାସଟା ତ ରଖିଥାନ୍ତୁ ପଦ୍ମଚରଣଙ୍କ ମାଡବାର ହେଁ ହେଁ ହେଁ ହେଁ ହେଁ ହେଁ ।

"ତା ପରେ ବୁଝିଲୁ ଗଜେନ୍ଦ୍ର, ଏଇ "ଯଉବନ ମାତେରେ" ବହିଟାକୁ ଅବଶ୍ୟ ମୁଁ ମାଗଣା ପାଇଛି । ଏହାକୁ ପଢ଼ି ଖବର କାଗଜରେ ଏହାର ଗୋଟିଏ ପ୍ରଶଂସାମୂଳକ ସମାଲୋଚନା

ଲେଖିବା ପାଇଁ ପ୍ରତିଶ୍ରୁତି ଦେଇଛୁ । ଆଉ ସେଇଥିପାଇଁ ଦଶଟି ଟଙ୍କା ବି ମାନେଜର ମହୋଦୟ ମୋତେ ପାରିଶ୍ରମିକ ଦେଇଛନ୍ତି ।"

ଗଜେନ୍ଦ୍ର "ଯଉବନ ମାତେଇରେ" ବହିଟାକୁ ହାଲୁକା ଭାବେ ଓଲଟାଉ ଓଲଟାଉ କହିଲା—"ଓ, ଲେଖକ ସ୍ୱୟଂ ମାନେଜର ସାହେବ ହାଡ଼ିବନ୍ଧୁ ଦାସ ? ବୁଝିଲୁ ଖିରୋଦ ! ଆଜକାଲି ପ୍ରକୃତରେ 'କବି ହୋଇଗଲେ ସମସ୍ତ ଲୋକେ, ରବି ହେଲେ ଜ୍ୟୋତିରିଙ୍ଗଣ ପୋକେ,' କହନ୍ତି ରେ ଖିର ! ତୁ ଏଇ ସୁଯୋଗଟାକୁ ହରା ନା । ଆଜକାଲି ଓଡ଼ିଆ ସାହିତ୍ୟରେ ନାଟକର ପ୍ରକୃତରେ ବଡ଼ ଅଭାବ । ଏହି ଅନାବନା ନାଟକ ଲେଖକଗୁଡ଼ାଙ୍କ ଉପରେ ସମାଲୋଚନା ଚଳାଇ ତୁ ନିଜେ ଏଥିରୁ ମୁନାଫା ମାରି ନେ । ତୁ ତ ଜାଣୁ 'ବାର୍ଣ୍ଣାର୍ଡ଼ ସ' ପ୍ରଥମେ ଏଇ ପ୍ରଚଳିତ ନାଟକଗୁଡ଼ାକ ଉପରେ ନିଷ୍ଠୁର ସମାଲୋଚନା ଚଳାଇ ଶେଷରେ ଏତେ ବଡ଼ ନାଟ୍ୟକାର ହୋଇ ପାରିଛନ୍ତି ।"

ଖିରୋଦ, ବୋକା ଅଥଚ ସ୍ୱାର୍ଥପର ଗଜେନ୍ଦ୍ରର ଆନ୍ତରିକତା-ହୀନ କଥାଗୁଡ଼ିକରୁ କୃତ୍ରିମ ଉଚ୍ଛ୍ୱାସ ଓ ଏକ ଉପଦେଷ୍ଟାର ଗାରିମାର ସନ୍ଧାନ ପାଉଥିଲା । ମାତ୍ର ଖୁବ୍ ଭଲ ଭାବରେ ସେ କହିଲା—

ହଁ ଗଜେନ୍ଦ୍ର, ଶୁଣ, ଏଇ ବନ୍ଧୁକଟା ସେଇ ଥେଟର ପାର୍ଟିରୁ ଲୁଟିଆଇ ଆଣିଛି । ଘରେ ବସି ଭିଲେନ୍ ପାର୍ଟ ପ୍ରାକ୍‌ଟିସ କରୁଛି । ଏଇ ତୋ ଭଲ ନୂଆ ଇଂଜିନିୟର ଆଉ ୍ ଭୋକେଟ୍ ବା ଅଧ୍ୟାପକ ବନ୍ଧୁମାନଙ୍କୁ ଆଗରେ ପାଇଲେ ବନ୍ଧୁକଟା ମୋର ତୋ

ତୋ ବୋଲି ଭୁକନ୍ତ ଉଠେ । ଆଉ ତୁ ତ ଜାଣୁ ଗଜେନ୍ଦ୍ର, ଭୁକିଲା କୁକୁର କେବେ କାମୁଡ଼େ ନାହିଁ । ଏ ବନ୍ଧୁକର ଗୁଳିରେ ତୁ ବଗୁଡ଼ା ମରିଥାନ୍ତୁ କେମିତି ? ହାଃ ହାଃ ହାଃ···

ଗଜେନ୍ଦ୍ର ଖୁବ୍ ଅନ୍ୟମନସ୍କ ଥିଲା । ମାତ୍ର ଖିରୋଦର ହସରେ ସେ ବି ପାଳଦେଇ ହସିଲା । ହାଃ ହାଃ ହାଃ, ମାତ୍ର ତା ହସଟା ଯେପରି ଖିରୋଦ ହସର କେବଳ ପ୍ରତିଧ୍ୱନି ।

"ଦେଖ ଖିରୋଦ—ଏସବୁ ବାଘୁଆବୁଦ୍ଧି ଛାଡ଼ ଦେ । ମୁଁ କହୁଚି, ତୁ ଗୋଟେ କଥା କର—"

"କଥା ? କିସ କଥା ? ବେଙ୍ଗ୍ଳି କଥା ?" ଖିରୋଦ ଗୋଟେ ହାଲୁକା ମନରେ କହିଲା । ଶୁଣ, ଉଦ୍‌ଗାମୀ କର ନା, ଭବିଷ୍ୟତ ଉପରେ ତୁ ଏପରି ନିରାଶ ହୋଇଯିବା ଅନୁଚିତ ।

"ଆଉ କଣ କରିବି କହ, ଦେ ତ ଗୋଟାଏ ବାଟ ଫିଟାଇ ଦେଇ ।"

ମୋ ମତରେ ତୁ ଏ ନାସ୍ତି ସହର ଛାଡ଼ ଗାଁକୁ ଚାଲିଯା । ସେଠି ବରଂ ତୋ ସ୍ୱାସ୍ଥ୍ୟ ପାଇଁ ତୁ ବେଶି ଖୋରାକ ପାଇବୁ । ତୁ ଘରେ ଯାଇ ଜମିବାଡ଼ ବୁଝାବୁଝି କର ।

"ଗଜେନ୍ଦ୍ର ! ସେ କଥା ବି ତତେ କହିନାହିଁ ନା ? ଆରେ ସବୁ ଇଣ୍ଟରଭ୍ୟୁରୁ ଫେଲମାରି ଗାଁକୁ ଲେଖିଲି ବାପାଙ୍କ ପାଖକୁ ଗୋଟାଏ ଲମ୍ବା ଚଉଡ଼ା ତୋଷାମଦଭରା ଦରଖାସ୍ତ । ନେ ସବୁ ଦରଖାସ୍ତର କପି ଭଳି ସେଇଟାର ବି କପି ରଖିଚି, ନେ ପଢ଼ ।" ଗଜେନ୍ଦ୍ର କପିଙ୍ଗ କାଗଜରୁ ଉତୁରା ହୋଇଥିବା ଖଣ୍ଡେ କାଗଜ ପଢ଼ିବାକୁ ଲାଗିଲା ପାଟିକରି—

"ଶ୍ରୀଳ ଶ୍ରୀଯୁକ୍ତ ମାନନୀୟ ପୂଜ୍ୟପାଦ ଦୟାଶୀଳ ଭାଗ୍ୟବାପା ଉପାର୍ଜନ କୌଶଳ ବିଶାରଦ, ମହାବୀର ଭରଣପୋଷଣେକ୍ଷମ ବାତ୍ସଲ୍ୟପରାୟଣ, ଦାନଶୀଳ ଶ୍ରୀ ଶ୍ରୀ ଶ୍ରୀ ପିତୃଦେବ ମହୋଦୟ ଉଦାର ହୃଦୟେଷୁ

(ରତ୍ନଗର୍ଭା ମାତୃଦେବୀଙ୍କ ଜରିଆରେ)

ପିତଃ,

ଅଧୀନର ଲେଖିବାର କାରଣ ଏହି କି ଯେ ଅଧୀନ ପ୍ରତି ଆପଣ ବାଲ୍ୟାବଧି ଯାହା ଯାହା ଉପକାର କରିଅଛନ୍ତି, ତାହା ଅଧୀନ ଯାବତ୍‌ଚନ୍ଦ୍ରାର୍କେ ଅନ୍ତରରୁ ଭୁଲି ନ ପାରି କୃତଜ୍ଞତା ପାଶରେ ଆବଦ୍ଧ ରହିବ । ମାତ୍ର ଯେହେତୁ ଅଧୀନ ବିଶ୍ୱବିଦ୍ୟାଳୟର ସର୍ବୋଚ୍ଚ ପରୀକ୍ଷାରେ କୃତିତ୍ୱର ସହିତ ଉତ୍ତୀର୍ଣ୍ଣ ହୋଇ ଉପାର୍ଜନର ପନ୍ଥା ଖୋଜି ଖୋଜି ଦରଖାସ୍ତ କରି କରି ନିଜ ଭାଗ୍ୟଦୋଷରୁ କୃପାସାଗର ସରକାରଙ୍କର କୃପାପାତ୍ର ହୋଇ ନ ପାରି ଅଗତ୍ୟା ଧର୍ମଶାଳା ହୋଟେଲ ମେସାଦିରେ ଗୃହା କରି କରି ନିଜକୁ ଭରଣପୋଷଣ କରିବାରେ ଅସାମର୍ଥ୍ୟ ପ୍ରକାଶ କରୁଛି ସେହି ହେତୁ ଅଧୀନ ଆପଣଙ୍କ ନିକଟରେ ଏହି ନିବେଦନ କରୁଅଛି ଯେ ଆପଣ ଅଧୀନକୁ ମାତ୍ର ୨୦ଟି ଟଙ୍କା ବେତନରେ ଆପଣଙ୍କ ଗୃହସ୍ଥଳୀରେ ଗୋଟିଏ କର୍ମପାଶରେ ବନ୍ଧନ କରି ଅଧୀନକୁ ବର୍ତ୍ତମାନର ଗୃହାପବାଦ, ସ୍ୱାସ୍ଥ୍ୟହାନି, ଉଦରାମୟ, ଶିରୋପୀଡ଼ା, ସ୍ୱରଭଙ୍ଗ, ମଥାଘୂର୍ଣ୍ଣନ, ଅପସ୍ମାର ଓ ବ୍ରଣାଦି ରୋଗକୁ ଅବ୍ୟାହତି ଦେଇ ଅଧୀନକୁ ଅକାଳ ମୃତ୍ୟୁରୁ ରକ୍ଷା କରିବା ସଙ୍ଗେ ସଙ୍ଗେ ଆପଣ "ସ୍ୱୟଂ ପୁତ୍ର ନାମକ ନରକରୁ ରକ୍ଷା ପାଇବାର ପଥ ସୁଗମ କରିବେ, କରୁଥିବେ ଓ କରିଥିବେ ।

ଏତିକବେଳେ ଗଜେନ୍ଦ୍ର ହାତରୁ ହାଗଜଟା ଛଡ଼ାଇ ନେଇ ଖିରୋଦ ସେଥିରୁ ଭାଙ୍ଗିଭୁଙ୍ଗି ପକେଟରେ ରଖି କହିଲା ହଁ, ଶୁଣ ତଦନନ୍ତରଂ କିଂ ଅଭବତ୍ । ବାପା ଚିଠି ଲେଖିଲେ, ପୁତ୍ ନରକରୁ ତ୍ରାଣକର୍ତ୍ତା କୁଳରକ୍ଷକ ଶ୍ରୀମାନ ବାବୁ ଖିରୋଦଚନ୍ଦ୍ର, ଶୀଘ୍ର ଗୃହକୁ ପ୍ରତ୍ୟାବର୍ତ୍ତନ କର । ଆମ୍ଭ ସାକ୍ଷାତ୍‌ରେ ସମସ୍ତ ବୃତ୍ତାନ୍ତ ଅବଗତ ହୋଇ···" ବୁଢ଼ୀ ଚେଳିକ । ବୋଉ ବ ଲେଖିଲା "ଆରେ ପାଗଳ, ମୋ ମୁଣ୍ଡ ଖା'ଟି, ଚଞ୍ଚଳ ଘରକୁ ଆ, ନଇଲେ ଦଉଡ଼ା ଦେବି । କୂଅକୁ ଡେଇଁ ପଡ଼ିବି । ତୋତେ ନ ଦେଖିଲେ ଜୀବନ ହରେଇ ଦେବିରେ ! ସେ ବାୟାବୁଢ଼ି ଗୁଡ଼, ଘରେ ଏତେ ଜମି ତୁ ଗୋଟେ ମାତ୍ର ପିଲା ମୋର, ଅନ୍ଧୁଣି ଧନ ମୋର ରଙ୍କରତନ ମୋର ଏଣ୍ଟ୍ରାନ୍ସର ବଳା କ୍ୱାଲିଫିକେଶନ; ବାପାଙ୍କୁ କହିବି ତତେ ଘରେ ରଖିବା, ସେ ଗୁକରିରୁ ମତେ କଣ ମିଳିବଟି, ଇଟିସିଂ, ଇଟିସିଂ... ।

ବିଲ୍‌କୁଲ୍ ବୋକା-ଘାଗର୍ତ୍ତା ବର୍ଷ୍ଣୁ ହତଭାଗିନୀ ବୋଉର ସୁପାରିସ୍ ଉପରେ ନିର୍ଭର କରି, ଗୋଟିଏ ଶୁଭ ଅବସରରେ ଘରକୁ ଗଲି ।

ବୋଉର ସୁପାରିସ୍ ଘରେ ଗୁକରି ଖଣ୍ଡେ ମିଳିଗଲା, ମାତ୍ର ଛ'ମାସ ପାଇଁ । ବେଶି କିଛି କାମ ନାହିଁ । ବାପାଙ୍କର ନୂତନ ବାଣିଜ୍ୟ ବାଉଁଶ ଓ ପଲ୍ଲଆ ବ୍ୟବସାୟରେ ମୁଁ ହେଲି ହିସାବ ରକ୍ଷକ । ମାସିକ ବେତନ ୨୦ଟି ମାତ୍ର ମୁଦ୍ରା । ମାସକୁ ଦୁଇ ଥର କଟକ ଆସିବା ପାଇଁ ଉପଯୁକ୍ତ ରୋଜଗାର କିନ୍ତୁ ଦୁଇ ମାସ ଭିତରେ ମୁଁ ବାପାଙ୍କର ଓ ଗାଁର ଭଦ୍ରବ୍ୟକ୍ତିମାନଙ୍କର ଅପ୍ରିୟଭାଜନ ହୋଇ ଉଠିଲି । କାରଣ ଗ୍ରାମରେ ନୂଆପ୍ରତିଷ୍ଠିତ ହାଇସ୍କୁଲ ପାଇଁ ଠଙ୍କା

ଆଦାୟ କରିବାକୁ ମୁଁ ଗାଁର ହାଟ ଓ ମାଛପୋଖରୀ ଆଦିକୁ ନୀଲାମରେ ଧରିବାରୁ ମୋର ବାପା ସମେତ ଗାଁର ଅନ୍ୟ ଭଦ୍ରବ୍ୟକ୍ତିମାନଙ୍କର ସ୍ୱାର୍ଥରେ ବାଧା ପଡ଼ିଲା । ଆହୁରି ବି ଗାଁର ବାଦ-ବିସଂବାଦ ଓ କଳିକଜିଆଆଦି ଜଟିଳ ଗାଣିତିକ ସୂତ୍ରକୁ ମୁଁ ସରଳ କରି ଦେଉଥିବାରୁ ବାପାଙ୍କର ତଥା ଗ୍ରାମର ଟାଉଟର ଭଦ୍ର-ବ୍ୟକ୍ତିମାନଙ୍କର ' କୋପଦୃଷ୍ଟିରେ ପଡ଼ିଲି । ଫଳରେ ସମସ୍ତେ ମିଳିମିଶି ମତେ ଗାଁରୁ ତଡ଼ିବାକୁ ଚେଷ୍ଟା ଓ ପରାମର୍ଶ କଲେ । ତା ପରେ ତ ଏକ ଶୁଭସନ୍ଧ୍ୟାରେ ଗାଁରୁ ବସ୍‌ରେ କଟକ ପ୍ରତ୍ୟା-ବର୍ତ୍ତନ । ଆଉ ଗାଁକୁ ଯାଇ ସାହିତ୍ୟ-ସେବା କରିବ କିଏ ?

ଗଜେନ୍ଦ୍ର ଏସବୁ କଥା ମନଦେଇ ଶୁଣିଥିଲା କି ନାହିଁ କେଜାଣି; ମାତ୍ର ଖିରୋଦର କଥାଜାଲ ମଧ୍ୟରୁ ଛାଡ଼ି ପାଇବାର କୌଣସି ଉପାୟ ନ ଦେଖି ସେ ପୁଣି ଉପଦେଶ ଦେଲା—"ଦେଖ୍ ଖିରି, ଏତିକିରେ ଘିଙ୍ଗପଡ଼ିବା ତୋର ଅନୁଚିତ । ଗାଁରେ ନ ରହିଚୁ, ଖୁବ୍ ଭଲ କରିଚୁ । ଆଜିକାଲି ଗାଁରେ ରହିବା ବଡ଼ ବିପଦ । ତୁ ବ୍ୟବସାୟ ଆରମ୍ଭ କର, ତୁ ତ ନିଶ୍ଚୟ ଜାଣୁ—'ବାଣିଜ୍ୟେ ବସତେ ଲକ୍ଷ୍ମୀ' । ତୁ ବ୍ୟବସାୟ କର । ବ୍ୟବସାୟ ହିଁ ତୋର ଭଲ ହେବ । ତୋ ଭଳି କଥା-କୁହାଳି ଓ ମଥାବାଲା ହାତରେ ବ୍ୟବସାୟଟା ବେଶ୍ ଉଚ୍ଛୁରିବ ।" ଖିର ଟିକେ ଗମ୍ଭୀର ହେଲା । ଗଜେନ୍ଦ୍ର ସମ୍ବନ୍ଧେ ତା' ମନରେ ଆସିଲା ବି କୌତୂହଳ ! ଗଜେନ୍ଦ୍ର କିଣ ସତରେ ତା' କଥା ଏତେ ବୁଝୁଚି ? ଗଜେନ୍ଦ୍ର ପ୍ରଶ୍ନର ଜବାବ ଦେଇ ସେ କହିଲେ—

"ହଁ, ବ୍ୟବସାୟ କରିବି ଯେ, ମାତ୍ର ବ୍ୟବସାୟ ତ ଆଉ କଥା ଓ ମଥାର ଚାତୁର୍ଯ୍ୟରେ ଚଳେ ନାହିଁ ! ସେଥିପାଇଁ ମୂଳଧନ ଦରକାର, ବୁଝିଲୁ ଗଜେନ୍ଦ୍ର ! ମୂଳଧନ ଦରକାର ।"

"ଆରେ, ମୂଳଧନ ଗୋଟେ କଣ ? ମୂଳଧନ ବିନା କଣ ବ୍ୟବସାୟ ଅଚଳେ ? ତୁ ଜାଣୁ ଏଇ ମାରୁଆଡ଼ି ଗୁଡ଼ାକ ଏ ଦେଶକୁ ଆସିବାବେଳେ ସାଙ୍ଗରେ କଣ ସମ୍ବଳ ନେଇ ଆସିଥିଲେ ? ଗୋଟିଏ ଲୋଟା ଆଉ ଖଣ୍ଡିଏ କମ୍ବଳ ! ଅଥଚ ଆଜ ଦେଖିଲୁ ସେମାନଙ୍କର ଅବସ୍ଥା—"

"ହଁ, ତା—ତା ମୁଁ ବୁଝୁଚି ଯେ; କିନ୍ତୁ ମାରୁଆଡ଼ିଗୁଡ଼ାକ ତ ଆଉ ସାହିତ୍ୟରେ ଏମ୍-ଏ ପାଶ୍ କରି ନ ଥିଲେ କି ପତ୍ରପତ୍ରିକାରେ ଅନର୍ଥକ ଗଳ୍ପକବିତା ଲେଖି ସମୟ ନଷ୍ଟ କରୁ ନ ଥିଲେ ? ଏଇ ଦୁର୍ଗୁଣଟା ନ ଥିଲେ, ମୁଁ ବି କଣ ଜଣେ ଶ୍ରେଷ୍ଠକୋଟିର ମାରୁଆଡ଼ି ହୋଇପାରି ନ ଥାନ୍ତି !! ତୁ ଯାହା କହ, ମୂଳଧନ ବା କଞ୍ଚାମାଲ ଏ ଦୁଇଟାରୁ ଗୋଟାଏ ନ ଥିଲେ ବାଣିଜ୍ୟ ଲକ୍ଷ୍ମୀ ନ ବସନ୍ତି ।"

ଗଜେନ୍ଦ୍ର ଏଥର ଉଠି ଠିଆହେଲା । ଗୋଟିଏ ନିର୍ଲିପ୍ତ ହାଇ ମାରି, ସମଗ୍ର ସମାଲୋଚନାରେ ଇତିଶ୍ରୀ ଆଣିବାକୁ ଯାଇ କହିଲା, "ଆରେ କଞ୍ଚାମାଲ !! ତୁ ଜାଣୁ ? ଏଇ ଖାଁ ଆଉ ଗୁହ ବଡ଼ କମ୍ପାନିର ଇତିହାସ ? ଏଇ କମ୍ପାନିର ପ୍ରତିଷ୍ଠାତା ଦିଲ୍ଲୀପ ଗୁହ ଯେତେବେଳେ ପୂର୍ବବଙ୍ଗରୁ ଆଶ୍ରୟପ୍ରାର୍ଥୀ ହିସାବରେ ଓଡ଼ିଶାକୁ ପଳାଇ ଆସେ, ସେତେବେଳେ ମୁଁ ନିଜେ ଦେଖିଚି, ସେଇ ୧୯-୨୦ ବର୍ଷର ଟୋକା କଟକର ରାଜପଥରୁ ଖଣ୍ଡିଆ ବଡ଼ି ଗୋଟାଉଥିଲା । ସେଇ ଖଣ୍ଡିଆ ବଡ଼ିରୁ ମସଲା ବାହାର କରି, କେନ୍ଦୁପତ୍ରରେ ତାକୁ ନୂଆ ବଡ଼ିରେ ପରିଣତ କରି ସେ

ପ୍ରଥମେ ବକବାକୁ ଆରମ୍ଭ କରେ ! ଆଉ ବର୍ତ୍ତମାନ ଦେଖ୍ ଖାଁ । ଆଉ ଗୃହ-ବୃଦ୍ଧ କମ୍ପାନୀର ଅଂଶୀଦାର ନାଉଷ୍ଟ୍ରୁମ୍ୱୀ । ହଁ ହଁ ହଁ ! ସବୁ ସାଧନା, ବୁଝିଲୁ ଖିର, ସବୁ ସାଧନା ! ଅବଶ୍ୟ ଗ୍ରନ୍ଥ ବୋଲି ଗୋଟେ ଜିନିଷ ଅଛି । ମାତ୍ର ସେଇ ଗ୍ରନ୍ଥର ସୁଯୋଗ ମାଡ଼ିନେବାକୁ ବି ଯୋଗ୍ୟତା ଦରକାର; ଯୋଗ୍ୟତା ଦରକାର; ବୁଝିଲୁ କ୍ଷୀର ! ଯୋଗ୍ୟତା ଦରକାର ।"

କ୍ଷୀରୋଦ ସେଇ ଭଙ୍ଗା ଦର୍ପଣଟାକୁ ଅନ୍ୟମନସ୍କଭାବେ ଯୋଉଁ ଥିଲା । ତା'ପରେ ପାନିଆଟାକୁ ନିଜର ଧୂସର ବିକ୍ଷିପ୍ତ କେଶଗୁଡ଼ିକରେ ହାଲୁକାଭାବେ ସଞ୍ଚାଳିତ କରୁ କରୁ କହିଲା, "ହଉ ! ତୁ ଆ ଗଜେନ୍ଦ୍ର; ମୁଁ ବ୍ୟବସାୟରେ ସାଧନା ଆରମ୍ଭ କରେ । ଏଥର ତୋ କଥାନୁସାରେ ସରସ୍ୱତୀଙ୍କୁ ଭଜିଲେ ଉଦର ତ ପୋଷି ହବ ନି; ବରଂ ଏଇ ଉଦରାମୟ ପୀଡ଼ାଟା-ଇ ଦିନକୁ ଦିନ ବଢ଼ିବ । ମୁଁ ବ୍ୟବସାୟ କରିବ ନିଶ୍ଚୟ; ମାତ୍ର କହୁ ତ ଗୋଟେ ମୂଳଧନ ଦରକାର ? ଖୁବ୍ ଅଳ୍ପ ପାଣ୍ଠିରେ ଆଜିକାଲିକାର ପ୍ରତିଦ୍ୱନ୍ଦ୍ୱିତାମୟ ବଜାରରେ ପସରା ମେଲିବାକୁ ଛାତିରେ ମୋର କେତେ ବହପ ରେ ଗଜେନ୍ଦ୍ର !"

"ଆରେ ଫେର ତୁ ପାଣ୍ଠି କଥା ଉଠାଉଚୁ ? ଲକ୍ଷ୍ମୀ ଆରାଧନାରେ ! ପାଣ୍ଠିଟା ଅତି ଗୌଣ ଉପାଦାନ । ତୁ ତ ପିଲାଦିନେ ପଢ଼ିଚୁ "କଥାବଳୀ"ରେ ସେଇ ବିଖ୍ୟାତ ଫଳ-ଦୋକାନୀଟାର କଥା; ଯେ ଈଶ୍ୱରଚନ୍ଦ୍ର ବିଦ୍ୟାସାଗରଙ୍କୁ ପଇସେ ପଇସେ ମାଗି—"

କ୍ଷୀରୋଦର ମୁଣ୍ଡରେ ପିଲାଦିନର "କଥାବଳୀ" ବର୍ଣ୍ଣିତ ସେଇ ଫଳଦୋକାନୀ ଓ ବିଦ୍ୟାସାଗରଙ୍କ କଥୋପକଥନର ଦୃଶ୍ୟଟା ଖେଳିଗଲା . .

"ବାବୁ, ଗୋଟିଏ ପଇସା ! ଘର ଘୋକ ହେଲଣି, ଗଣ୍ଡେ ମୁଢ଼ି ଖାଇବ "

"ମୁଁ ଯଦି ତୋତେ ଦୁଇଟି ପଇସା ଦିଏ, ତେବେ ତୁ କଣ କରିବୁ ?"

ଗୋଟିଏ ପଇସାର ମୁଢ଼ି ଖାଇବ, ଆଉ ପଇସାଟିର ମୁଢ଼ି ମୋ ସାନଭାଇ ପାଇଁ ନେବ ।"

"ଆଚ୍ଛା ଯଦି ଚାରି ପଇସା ଦିଏ—?

"ଆଚ୍ଛା ଦୁଇ ଅଣା ?"

ଚାରି ଅଣା ?

ଆଠ ଅଣା ?

ଟଙ୍କାଟିଏ ?

ସେଇ ଭିଖାରି ପିଲାଟିର ମୁହଁ ଆରକ୍ତ ହୋଇ ଉଠିଲା । ଲଜ୍ଜା, ସନ୍ଦେହ, ଅପମାନ, ଆଶା ଓ ଆଶଙ୍କା—

"ଦିଅ ନା ବାବୁ ଗୋଟେ ପଇସା ! ନ ଦବ ତ ନାହିଁ, ଏମିତିଆବେ ଆଶା ଦେଖାଉଚ କଣ ? ଟଙ୍କାଟିଏ ଦେଲେ ଚାରି ଅଣାର ଚାଉଳ ଓ ପରିବା ଘରକୁ ନେବ; ଆଉ ବାର ଅଣାର ଫଳ କିଣି ଫଳ ବେପାର କରିବ !"

ବିଦ୍ୟାସାଗର ଟଙ୍କାଟିଏ ବଢ଼େଇ ଦେଲେ ସେ ଭିଖାରି-ପିଲା ହାତକୁ !

ବହୁଦିନ ପରେ × × । ସେଦିନର ସେଇ ଭିଖାରି ପିଲା ଜଣେ ବିଖ୍ୟାତ ଫଳବ୍ୟବସାୟୀ ହୋଇ ସେତେବେଳେ ଦିନେ ବିଦ୍ୟାସାଗରଙ୍କୁ ନିଜ ଫଳ ଦୋକାନକୁ ଫଳ ଆହାର କରିବାପାଇଁ ଡ଼ାକେ—

ଖିରୋଦର ପିଲାମନ ଚଞ୍ଚଳ ହୋଇ ଉଠିଥିଲା ଗୋଟିଏ ଠଙ୍କାର ଏଇ ଆଶ୍ଚର୍ଯ୍ୟ ଆକସ୍ମିକ ଓ ଅସମ୍ଭବ ନାଟକୀୟ କରାମତିର ପରିଣତିରେ । ସେଇ ଭିଖାରୀ ପିଲାଟିର ଏଇ ଆଶୁ ସୌଭାଗ୍ୟରେ ସେ ଆନନ୍ଦ ଓ ବେଦନା ମିଶ୍ରିତ ଲୁହ ଝରାଇଥିଲା ଆଖିରୁ ।

ଖିରୋଦ ମଧ୍ୟବିତ୍ତ ସନ୍ତାନ । ମାତ୍ର ନିଜକୁ ସର୍ବହରା ନିଃସ୍ୱ ବୋଲି ଭାବିବାରେ ତାର ଥିଲା ଏକ ଖିଆଲି ଆମୋଦ; ଏକ ପ୍ରକାର କଳ୍ପନାବିଳାସ । ସେ ପର୍ଯ୍ୟନ୍ତ ସର୍ବହରାର ଦୁଃଖ ବା ଆନନ୍ଦରେ ଆଖିରୁ ଲୁହ ଝରାଇବା ବି ତା' ପକ୍ଷରେ ଥିଲା ଏକ ସଂଭ୍ରାନ୍ତ ଭାବାବେଗ । ଆଜି କିନ୍ତୁ ଆଉ ସେ ପ୍ରଶ୍ନ ଉଠୁ ନି । ଖିରୋଦ ବଦଳି ଯାଇଛି । ସେ ସତକୁ ସତ ସର୍ବହରା । ମଧ୍ୟବିତ୍ତର ବୁଦ୍ଧି ଆଉ ସର୍ବହରାର ସ୍ୱାସ୍ଥ୍ୟ ତାର ସମସ୍ତ ସଂସ୍କାରକୁ ବଦଳାଇ ଦେଇଛି । ତା ଭିତରେ ଆଜି ପରମ୍ପରାର ସଂସ୍କାର ନାହିଁ, ନାହିଁ ମଧ୍ୟ ବିପ୍ଳବାତ୍ମକ ଅଭ୍ୟୁଦୟ ମନୋବୃତ୍ତି । ପ୍ରାରବ୍ଧ ଓ ଅପ୍ରାରବ୍ଧ ସମସ୍ତ କର୍ମଫଳକୁ ସେ ଅସ୍ୱୀକାର କରୁଛି । ମଧ୍ୟଯୁଗର ଜଡ଼ତ୍ୱ ଓ ଆସନ୍ନାକାଳର ଜୀବନଚାଞ୍ଚଲ୍ୟ କୌଣସିଟା ବି ତାକୁ ପ୍ରଭାବିତ କରି ପାରି ନି । ସଂସ୍କାର-ବୃକ୍ଷର ଯେଉଁ ପୁରାତନ ଡାଳ ଉପରେ ସେ ବସିଥିଲା, ତାର ଚଉଦ ପୁରୁଷ ବସି ଆସିଥିଲେ—ସେ ଡାଳକୁ ସେ ମୂର୍ଖ କାଳିଦାସ ପରି ହାଣି ଲାଗିଛି; ଅଥଚ ସେଇ ବୃକ୍ଷର କୌଣସି ନୂତନ ଡାଳକୁ ହାତ ବଢ଼ାଇ ସେ ଧରିପାରୁ ନି । ସେ ବସି ପାରୁ ନି କି ପଡ଼ିଯାଇ ପାରୁ ନି । ଏକପ୍ରକାର ନ ଯଯୌ ନ ତସ୍ଥୌ ଅବସ୍ଥା ତାର—ବିଂଶ ଶତାବ୍ଦୀର ତ୍ରିଶଙ୍କୁ ଏଇ ଖିରୋଦ ମହାନ୍ତି—ଆକାଶର ଧରିବାର ଲୋଭ, ପୁଣି ଗୁଡ଼ ଦେବାର ବହପ ଯାହାର ମୁଣ୍ଡକୁ

ରୁଗ୍ଣ ବକଳ ସଂଶୟୀ ଆଜ ଖିଆଲ୍ କରି ପକାଇଛନ୍ତି । ଖିରୋଦର ଆଦର୍ଶ ଉପରେ ଆସ୍ଥା ନାହିଁ, ଅଥଚ ବାସ୍ତବ ଉପରେ ରହି ସେ ଛଟପଟ ହେଉଛି ।

ସେଇ ଭଙ୍ଗା ଦର୍ପଣରେ କୌଣସି ମତେ ଦେଖିପାରିଲା ସେ ତାର କାନ ଉପରେ ଦୁଇଟି ଶୁଭ୍ର କେଶ । ଖିରୋଦ ହସି ଦେଲା ।

"ମୋ ମଥାରେ ଧଳା କେଶ । ଆଉ ମଥାରେ କଳା କେଶ !"

ଯୁଗ ବଦଳି ଗଲା ରେ ଗଜେନ୍ଦ୍ର ! ଯୁଗ ବଦଳିଗଲା । କ୍ଷିତିକ ଭିତ ହେଲା ପ୍ରବଳ ହୋ କ୍ଷିତିକ...!"

ଖରୋଦ ଦୁଇଟିଯାକ ପାଚିଲାବାଳ ମଥା ଉପରୁ ଚିମୁଟି ହାତରେ ବଳ ଲାଗିଲା । ଗଜେନ୍ଦ୍ର ବି ଉଠି ଠିଆହେଲା । ଏଥର ସେ ନିଶ୍ଚେ ଏ ଭଙ୍ଗା ଆର୍ଦ୍ଧପ ଗଳନ୍ତା ପାଖରୁ ଉଠି ଚାଲିଯିବ ।

"ହଉ, ମୁଁ ଆସୁଚି ଖିରୋଦ !"

ଗଜେନ୍ଦ୍ରର ହାତ ଧରି ଦୁଆରମୁହଁ ଆଡ଼କୁ ଯାଉ ଯାଉ ଖିରୋଦ କହିଲା—

"ତୁ ଯାଆ ଗଜେନ୍ଦ୍ର, ଶେଷରେ ତୁଇ ମୋ ଗୁରୁ ହେଲୁ । ତୋର କଥାନୁସାରେ ଏଥର ମୁଁ ବ୍ୟବସାୟ ଆରମ୍ଭ କରିବି । ଆବଧୂତ ଛବଶଟି ଗୁରୁ କରିଥିଲେ । ମୋର କିନ୍ତୁ— "ଦୁନିଆଯାକ ମୋର ଗୁରୁ, ଗଜେନ୍ଦ୍ର, କେତେ ତୁ ପଚାରୁ ?" ଆଚ୍ଛା ଭାଇ, ଆର ରବିବାର ଦିନ ତୁ ନିଶ୍ଚୟ ଆସିବୁ, ମୋ ରାଣ ! ଆସି ଦେଖିବୁ, ତୋର କଥା ଅନୁସାରେ ଅଳ୍ପ ମୂଳଧନ ନେଇ ଆଗରେ ଭବିଷ୍ୟତର ବିରାଟ ସ୍ୱପ୍ନ ରଖି ମୁଁ ଆଗେଇ ଚାଲିବି ମୋର

ବ୍ୟବସାୟ କ୍ଷେତ୍ରରେ । ଗଜେନ୍ଦ୍ର ନିଶ୍ଚୟ ଆସିବୁ, ମୋ ରାଣ । ତୋର ନୂତନା ବଧୂଙ୍କ ଦ୍ୱାହି, ତୋର ଟ୍ରାକ୍‌ଟର ଆଉ ଉଆଁଠର ପାଇପ୍ ରାଣ ! × × × ଏ ସପ୍ତାହରେ ଦେଖିଲୁ ଘାଗା ଖିରୋଦ ମହାନ୍ତିର ପାଗଳାମି, ଆସନ୍ତା ସପ୍ତାହରେ ଦେଖିବୁ ଉତ୍କଳ-ବରଳା ଖିରୋଦ ମହାନ୍ତିକ ଲକ୍ଷ୍ମୀଙ୍କର ବରପୁତ୍ର, ଆଉ କୁବେରଙ୍କର ଗେହ୍ଲା ନାତିଙ୍କ ।

ଗଜେନ୍ଦ୍ର ବିଦାୟ ନେଇ ଚାଲିଗଲା । ଖିରୋଦ ପାଖରୁ ଖସି ଯାଇ ରାସ୍ତା ଉପରେ ସେ ସ୍ୱସ୍ତିର ନିଃଶ୍ୱାସ ଛାଡ଼ିଲା । ବାସ୍ତବିକ ଖିରୋଦଟା କେମିତିକା ଲୋକଟାଏ ? ଭଦ୍ରତା ନାହିଁ, ଗାମ୍ଭୀର୍ଯ୍ୟ ନାହିଁ, ସୌଜନ୍ୟର ଅଭାବ, ଅହଂକାରୀ; ଉଦ୍ଧତ ଯୁକ୍ତିଖୋର ବଦମିଜାଜୀ, ସମୟ ଜ୍ଞାନର ଅଭାବ । କେବଳ କଥା କହି ଜାଣିଛି ବୋଲି ମନଇଚ୍ଛା ଗପିବ, ମନଇଚ୍ଛା ଥଟ୍ଟା କରିବ, ବଦମାସ୍ ପାଜି ସଇତାନ ଖିରୋଦ ! ଗଜେନ୍ଦ୍ର ଦାନ୍ତ ରଗଡ଼ିଲା । ରାସ୍କେଲଟାର ପାଖ ମାଡ଼ିବାକୁ ମନେହୁଏ ନାହିଁଟି !! କିନ୍ତୁ ତଥାପି ଗଜେନ୍ଦ୍ର ଛେପ ଢୋକେ । କିନ୍ତୁ ତଥାପି ଖିରୋଦ ସଙ୍ଗେ ବନ୍ଧୁତ୍ୱ ରଖିବାକୁ ମନ ଖାଲିଖାଲି ହୁଏ । ଜୀବନ-ସଂଗ୍ରାମରେ ଖିରୋଦ ନିଜେ ହୁଏ ତ ହାରିଯାଉଛି । ମାତ୍ର ବିଖତବେଳେ ଖିରୋଦ ସଙ୍ଗେ ଥିଲେ କିଛି ଭୟ ନାହିଁ, କିଛି ବି ଚିନ୍ତା ନାହିଁ । ସବୁ ସେ ସୁଧାରି ନେବ, ସବୁ ଆପଦରୁ ଉଦ୍ଧାରି ନେବ । ଖିରୋଦ ପରି ବୁଦ୍ଧିମାନ, ଖିରୋଦ ପରି ପରୋପକାରୀ, ଖିରୋଦ ପରି ନିଃସ୍ୱାର୍ଥପର ନବାବ ମିଜାଜୀ ଦିଲଦାରିଆ ଲୋକ ସଙ୍ଗେ ବନ୍ଧୁ ବାନ୍ଧିବାରେ ଗୌରବ ବି ଅଛି । ଗଜେନ୍ଦ୍ର ପାଖ ଦୋକାନକୁ ଯାଇ ଗୋଟେ ଲେମନ୍ ସିରପ୍ ଓ ଗୋଟେ ରୋଜ୍

ଓ୍ୱାଟର୍ ଶିଶି କଣିଲ୍ : ମେ ମାସର ଖରା ଆଉ ଛାତି ମାଡ଼ି ମାଡ଼ି ଆସୁଚି । ସର୍ବତର ଉପାଦାନ କଣୁ କଣୁ ସେ ଗୋଟେ ରେଫ୍ରିଜରେଟର ମୂଲେଇ ବସିଲ ! ନୂଆ ନୂଆ ଗୃହକର, ନୂଆ ନୂଆ ବିବାହ, ଆଜକାଲି କେତେ ଜଣଙ୍କର ଏ ସୌଭାଗ୍ୟ ?

......ଏକ ସପ୍ତାହ ପରେ— ।

ପୁଣି ଏକ ରବିବାର । ରକ୍ତ ରବିବାର ନୁହଁ, ଶ୍ୱେତ ରବିବାର ନୁହଁ, ଗୈରିକ ରବିବାର ନୁହଁ କି କୃଷ୍ଣ ରବିବାର ନୁହଁ; ଖିରୋଦ ମହାନ୍ତିର କ୍ୟାଲେଣ୍ଡରରେ ସେଇଟା ଗୋଟିଏ ଧୂସର ରବିବାର । ଗତ ସପ୍ତାହରେ ଖିରୋଦ ଥରେ ମାତ୍ର ବାହାରକୁ ଯାଇଚି ମାର୍କେଟକୁ । ଜଣକ ସାଥିରେ ଦେଖା କରିଚି ବକ୍ସିବଜାର ମାର୍କେଟର ଚା' ଦୋକାନୀ କରିମ୍ ଖାଁଙ୍କ ସାଥିରେ । ଖଟ ଉପରେ ଶୋଇ ରହିଚି ଖିରୋଦ । କାଲି ରାତିସାକ ନିଦ ହୋଇ ନି ତାକୁ । ଏବେ କେତେ ଦିନ ଧରି ଆଦୌ ନିଦ ବି ଆସେ ନି ଆଖିକୁ ତାର । ସହଜେ ତ ଗରମ—ପେଟ ଗରମ, ମୁଣ୍ଡ ଗରମ, ଖାଲି ଗରମ ପାଣିରେ ଗୁଡ଼ ପାନ । ଖିରୋଦ ବିଷୁବମଣ୍ଡଳୀୟ ଜଳବାୟୁର ଉଷ୍ଣତା ଓ ଆର୍ଦ୍ରତା ଉଭୟ ଅନୁଭବ କରେ । ଆଗେ ଶୋଇବା ପୂର୍ବରୁ ବହି ପଢ଼ୁ ପଢ଼ୁ ନିଦ୍ରାଦେବୀ ତାକୁ କୋଳକୁ ନେଉଥିଲେ । ଏବେ ବହି ପଢ଼ିବାକୁ ତାକୁ ଆଉ ସୁଖ ଲାଗୁ ନି । କାହିଁକି ପଢ଼ିବ ସେ ଗୁଡ଼ାଏ ବହି । ଅନର୍ଥକ ପଢ଼ି ଲାଭ କଅଣ ? ପିଲାଦିନେ ନବସାହିତ୍ୟରୁ ସେ ପଢ଼ିଥିଲା ଗୋଟାଏ ଗପ ।

"ପଢ଼ିଲେ ଜାଣିବୁ !" ଛ' ସାତ ବରଷର ସେଇ ଚଗଲା ଟୋକା—ପ୍ରତି କଥାରେ ମା'କୁ ତାର ପଚାରି ବସିଲା—ଏଇଟା କାହିଁକି ହୁଏ, ସେଇଟା କଣ, ଏମିତି କପରି ହେଲା, ସେମିତି

କାହିଁକି ନ ହେଲା । ଗୁହ୍ୟଜଞ୍ଜାଳ ମଗ୍ନ । ସାଧାରଣ ଜ୍ଞାନ-ଧ୍ୟାନ କିନ୍ତୁ ଚବୁଶ ମା' ଛ'ଅଟି ଅକ୍ଷରରେ ତାର ପ୍ରତି ପ୍ରଶ୍ନର ଉତ୍ତର ଦେଲା, "ପଢ଼ିଲେ ଜାଣିବୁ ।" ବାସ୍, ସେଇ ଦିନଠାରୁ ସେ ଟୋକାଟାର ବହି ପଢ଼ାରେ ଝୁଙ୍କ୍ ଆସିଲା । ଖିରୋଦର ବି ସେଇଆ ହୋଇଥିଲା ଅବିକଳ । ପିଲାଦିନେ ତାର ଶ୍ରେଷ୍ଠ ଦୁନିଆଟିର, ଶ୍ରେଷ୍ଠ ପରିସର ମଧ୍ୟରେ, ଅସଂଖ୍ୟ ଶ୍ରେଷ୍ଠ ଅନୁଭୂତି, ଟିକି ଅଭିଜ୍ଞତା, ତାର କୁନି ମଥାଟିକି ନାନା କିଂଭୂତକିମାକାର, କ୍ଷୁଦ୍ର ସମସ୍ୟା-ବହୁଳ ପ୍ରଶ୍ନବାଚକରେ ପୂର୍ଣ୍ଣ କରି ଦେଉଥିଲା । ସବୁ କଥାରେ ସଂଶୟ, ସବୁରି କଥାରେ ସନ୍ଦେହ, ସବୁ ଉତ୍ତରରେ ପୁଣି ପ୍ରଶ୍ନ, କିଏ ? କଣ ? କାହିଁକି ? ବିରକ୍ତ ହେଉଥିଲେ ତାର ମାଆ, ତାର ବାପା, ତାର ଭାଇ, ତାର ଶିକ୍ଷକ । କିନ୍ତୁ କେହି ଜଣେ ଭଦ୍ରଲୋକ ତାର ବାପାଙ୍କୁ ତା' ସମ୍ବନ୍ଧେ ଭବିଷ୍ୟତବାଣୀ ଶୁଣାଇଥିଲେ; ମନେପଡ଼ୁନି ତାଙ୍କ ନାଁ । "ଖିରୋଦ ଆପଣଙ୍କର ବଡ଼ ବୁଦ୍ଧିମାନ ଲୋକ ହେବ ସାରଙ୍ଗଧରବାବୁ, ତାକୁ ଉଚ୍ଚ ଶିକ୍ଷା ଦିଅନ୍ତୁ, ସେ ବଡ଼ଲୋକ ହେବ, ଦେଖୁନାହାନ୍ତି କେତେ ଚତୁର ପ୍ରଶ୍ନ ସବୁ ପଚାରୁଛି ସେ ଆଜିଠାରୁ ?"

ଖିରୋଦର ମନ ନାଚି ଉଠିଥିଲା । ସତେ ! ସତେ ! ସେ ବୁଦ୍ଧିମାନ ହେବ ? ସେ ବଡ଼ଲୋକ ହେବ ? ତା ସ୍କୁଲର ସବୁ ପିଲାଙ୍କଠାରୁ ସେ ବୁଦ୍ଧିମାନ ତା ହେଲେ ? ଏହିଠାରୁ ତା'ମନରେ ନିଜର ବୁଦ୍ଧି ସମ୍ବନ୍ଧେ ଅହଂକାରର ବୀଜ ବୋତାହେଲା । ଅହଂକାରୀ ଖିରୋଦ କ୍ରମେ ନିଜକୁ ଅଧିକ ବୁଦ୍ଧିମାନ ମନେକଲା । ତାର ମାଆଠାରୁ, ତାର ଶିକ୍ଷକଙ୍କ ଠାରୁ, ତା'ର ବାପାଙ୍କ ଠାରୁ, ତାର କଲେଜ ବନ୍ଧୁଙ୍କଠାରୁ, ତା'ର ଅଧ୍ୟାପକଙ୍କ ଠାରୁ,

ଶେଷରେ ପ୍ରାୟ ସମସ୍ତଙ୍କଠାରୁ । "ପଢ଼ିଲେ ଜାଣିବୁ"ର ନିଶା ତାକୁ ଘୋଟି ଆସିଲା । ସେ ଅସଂଖ୍ୟ ବହି ପଢ଼ିଛି । ଅସଂଖ୍ୟ କାବ୍ୟ, ପୁରାଣ, ନାଟକ, ଉପନ୍ୟାସ, ରାଜନୀତି, ଅର୍ଥନୀତି, ମନସ୍ତତ୍ତ୍ୱ, ଦର୍ଶନ ସବୁ କିଛି, ବହୁତ କିଛି, ତା ଭିତରେ ବୁଦ୍ଧିର ଅହଂକାର ଓ ଜ୍ଞାନର ପ୍ରମତ୍ତତା । ଖିରୋଦ ଉଡ଼ି ଚାଲିଲା, ଉଡ଼ି ଚାଲିଲା । ସବୁ କଥାକୁ ବେଖାତିର, ସବୁଥିରେ ବେପରୁଆ ଭାବ, ପ୍ରତି କଥାରେ ଯୁକ୍ତି, ସମସ୍ତଙ୍କୁ ପରିହାସ । ଖିରୋଦ ପରୀକ୍ଷାରେ କୃତିତ୍ତ୍ୱ, ରଙ୍ଗମଞ୍ଚରେ ଅଭିନୟ ନିପୁଣ, ଖେଳ ମଇଦାନରେ ଖେଳୁଆଡ଼, ତର୍କସଭାରେ ତାର୍କିକ, ସାହିତ୍ୟ ଜଗତରେ କବି, ଗାଳ୍ପିକ ଗୋଷ୍ଠୀରେ ମହାଭଣ୍ଡ, ସବୁ କିଛି, ଖିରୋଦ ମହାନ୍ତ ସବୁ କିଛି । କିନ୍ତୁ କୌଣସି ବିଭାଗରେ ଖିରୋଦ ନିପୁଣତା ଅର୍ଜନ କରି ନି, କରିପାରି ନି । ସବୁଥିରେ ସେ ମୂଳଦୁଆ ପକାଏ, ଖୁଣ୍ଟ ପୋତେ, କାନ୍ଥ ବାଏ, ଚାଳ ଛେଉରେ, କିନ୍ତୁ ମୁଣ୍ଡି ମାରିବା ପର୍ଯ୍ୟନ୍ତ ସେ ଅପେକ୍ଷା କରିପାରେ ନାହିଁ । ସେ ଧୈର୍ଯ୍ୟ ତାର ନାହିଁ । ସେ ସାଧନା ବି ସେ କରି ନି । ଏଇଟା ତାର ଚରିତ୍ରଗତ ଦୋଷ । କୌଣସି ବିଭାଗରେ ଶୀର୍ଷ ସ୍ଥାନାଧିକାର ତାର ସାଧ୍ୟାତୀତ । ସେ ପ୍ରତିଭା ତାର ନାହିଁ । କିନ୍ତୁ ତର୍କଖୋର ଖିରୋଦ ତାର ଚରିତ୍ରର ଏ ଚନ୍ଦ୍ର-କଳଙ୍କ ଦୋଷଟାକୁ ବି ସ୍ୱୀକାର କରିବାକୁ ନାରାଜ । ନିଜର ପରାଜୟ ସେ ମାନିନେବାକୁ ପ୍ରସ୍ତୁତ ନୁହେଁ । ଲକ୍ଷ୍ୟ-ସ୍ଥଳରେ ପହଞ୍ଚିବାର ବା ଶୀର୍ଷସ୍ଥାନକୁ ଉଠିବାର ଧୈର୍ଯ୍ୟ ଅଭାବକୁ ଘୋଡ଼ାଇବାକୁ ଯାଇ ସେ ଯୁକ୍ତି କରେ, "ସେଇଟା ମୋର ଦୋଷ ନୁହେଁ, ସେଇଟା ବରଂ ମୋର ଗୁଣ । କେବଳ ବୁଦ୍ଧି-ମାନ ଲୋକେ ହିଁ କାମ ଅଧିକ କରନ୍ତି । ତାକୁ ଶେଷ କରିବାର ଭାର ଶ୍ୟାମା ଶାମା ଦାମାଙ୍କ ପରି ପାଞ୍ଚ ଜଣ ବୁଦ୍ଧିହୀନ

ଲୋକଙ୍କ ହାତରେ । ପ୍ରତିଭା କେବଳ ସର୍ଜନା କରେ । ପାଳନ କରିବାର ଭାର ବୋଧହୁଏ ସେ ଘରବାହୁଡ଼ା ମଣିଷ ପରି ଦାନବୀର ଖଟିବ କାହିଁକି ? ଏଇ ବିଚିତ୍ର ଦୁନିଆକୁ ସୃଷ୍ଟି କରନ୍ତି ବ୍ରହ୍ମା, ପ୍ରତିପାଳନ୍ତି ବ୍ରହ୍ମା; କିନ୍ତୁ ତାର ପୁଷ୍ଟି ହୁଏ କାହାଦ୍ୱାରା ଜାଣ ? ନିନ୍ଦାବିଷ୍ଣୁଙ୍କ ଦ୍ୱାରା—ନିନ୍ଦା ମାନେ ବୁଝୁଛ ତ ? ନିନ୍ଦା—

ତା ଛଡ଼ା ଲକ୍ଷ୍ୟସ୍ଥଳର ଉଦ୍ଦେଶ୍ୟରେ ଜୀବନର ଅଙ୍କାବଙ୍କା ରାସ୍ତାରେ ଘୋଡ଼ଦୌଡ଼ କରିବାରେ ହିଁ ଗୌରବମୟ ସୁଖ-ପ୍ରାପ୍ତି । ମାତ୍ର ଲକ୍ଷ୍ୟସ୍ଥଳରେ ପହଞ୍ଚିବାର ବେଦନା, ଇସ୍, ଜାଣ ତ ? ଖ୍ରୀଷ୍ଟପୂର୍ବ ୩୨୩ରେ ବିଶ୍ୱବିଜୟୀ ସିକନ୍ଦର ବେବି-ଲୋନ୍‌ଠାରେ ଅସୀମ ସମୁଦ୍ର ତୀରରେ ଅସୀମ ପୃଥିବୀର ପରିସମାପ୍ତି ଦେଖି କି ମର୍ମନ୍ତୁଦ ଦୁଃଖରେ ପ୍ରାଣତ୍ୟାଗ କରିଥିଲେ ? "ଜିଣିବାକୁ ଆଉ ନାହିଁ ଧରାଖଣ୍ଡ" । ମହାଭାରତର ମହାସମରରେ ମହା-ବିଜୟ ଲାଭ କରି ମହାମତି ଯୁଧିଷ୍ଠିର ରାଜ୍ୟତ୍ୟାଗ କରି ହିମାଳୟ ମହାଯାତ୍ରା କଲେ କଣ କମ୍ ଦୁଃଖରେ ? ସବୁ ଏଇ 'ଲକ୍ଷ୍ୟପ୍ରାପ୍ତି'ର ବେଦନା 'ଆଦର୍ଶ ପରିଣତି'ର ଫଳବତୀ ଦୁଃଖାନୁଭୋଗ ।

କୌଣସି ପ୍ରତିଦ୍ୱନ୍ଦ୍ୱିତାରେ ପରାଜିତ ହେଲେ, ଖିରୋଦ ନିଜର ଅପାରଗତାକୁ ସ୍ୱୀକାର କରେ ନାହିଁ । ସେ କହେ— "ପ୍ରକୃତ ବୀର ଯେ, ସେ କେବେ ଜୟ କରେ ନାହିଁ । ଜୟ କରିବା ଉଦ୍ଦେଶ୍ୟ ନେଇ ତ ସେ ଯୁଦ୍ଧ କରେ ନା ? ବୀରତ୍ୱର ପ୍ରତିଭା ହିଁ ତାକୁ ଯୁଦ୍ଧରେ ପ୍ରମତ୍ତ କରାଏ । କେବଳ ସ୍ୱାର୍ଥପର ରାଜ୍ୟଲୋଭୀ ଆଉ ସୌଭାଗ୍ୟ ଲୋଲୁପୀମାନେ ହିଁ ସଂଗ୍ରାମରେ ଜୟ କରିବା ପାଇଁ ଯୁଦ୍ଧ କରି ଜୟୀ ହୁଅନ୍ତି । ସେଥିଲାଗି ଯୁଧିଷ୍ଠିରଙ୍କ ଅପେକ୍ଷା ଦୁର୍ଯ୍ୟୋଧନକୁ ହିଁ ମୁଁ ଅଧିକ ବୀର ବୋଲି କହିବି । ସେହିପରି

ଅର୍ଜ୍ଜୁନ ଅପେକ୍ଷା କର୍ଣ୍ଣ, ରାମଙ୍କ ଅପେକ୍ଷା ରାବଣ ଆଉ ନେହରୁଙ୍କ ଅପେକ୍ଷା ସୁଭାଷ ବୋଷ ହିଁ ମୋ ଆଖିରେ ବଡ଼ ଆଦର୍ଶ ।

ଖିରୋଦ ବହିଟାରେ ପଢ଼ ପଢ଼ ନିଜର ପୂର୍ବ ଯୁକ୍ତିଗୁଡ଼ାକ ମନେ ମନେ ଗୁଣି ହେଉଥିଲା । ଆତ୍ମପ୍ରସାଦରେ ଥରେ ଥରେ ହସି ବି ଉଠୁଥିଲା । ପ୍ରକୃତରେ ସେ କି ବୁଦ୍ଧିମାନ !! ତାର ଯୁକ୍ତିର ଶାଣିତ ତରବାରିକୁ ଇଞ୍ଜିନିୟର ଗଜେନ୍ଦ୍ର, ଓକିଲ ଅମିଲ୍, ଅଧ୍ୟାପକ ହଳଧର, ସମ୍ପାଦକ ରମଣୀରଞ୍ଜନ ଆଦି ସମାଜର ସୌଭାଗ୍ୟଶାଳୀ ଉଦୀୟମାନ ବୀରପୁଙ୍ଗବମାନଙ୍କର କେତେ ଡର ! କେତେ ଭୟ !! ହାଃ ହାଃ ହାଃ ! ଖିରୋଦ ପଢୁଥିବା ବହିଟାକୁ ଟେବୁଲ ଉପରକୁ ଫୋପାଡ଼ଦେଲା । ଘଡ଼ିରେ ସକାଳ ନ'ଟା ବାଜୁଛି । ସେ ଦାନ୍ତ ନ ଘଷି ପାଇଖାନା ନ ଯାଇ, ପୂର୍ବରାତିର ଶେଯ ଉପରେ ପୁଣି ଶୋଇଯାଇଛି । ଖଣ୍ଡେ ବହି ଧରି, ମାତ୍ର ଦୀର୍ଘ ତିନି ଘଣ୍ଟା ଧରି, ସେ ପୃଷ୍ଠାଏ ବି ପଢ଼ିପାରି ନି । ଟେବୁଲ ଉପରେ ଷ୍ଟୋଭ୍‌ରେ କେଟ୍‌ଲିଏ ଚା' ସିଝୁଛି । ସେଥିରୁ କପେ କପେ ଖାଇ, ବଡ଼ ଟାଣି, ଖିରୋଦ ବହିଟାର ପ୍ରଥମ ପୃଷ୍ଠାଟାକୁ ଚାହିଁ ଚାହିଁ କେବଳ ନିଜର ପ୍ରତିଭା କଥା ଭାବୁଛି । ସନ୍ତାନହୀନା ନାରୀ ଶେଷଜୀବନରେ ତା'ର ବନ୍ଧ୍ୟା ସ୍ୱାମୀକୁ ଅତି ମାତ୍ରାରେ ଭଲ ପାଇ ବସିଲା ପରି ଖିରୋଦ ନିଜର ଅଫଳପ୍ରସୂ ବନ୍ଧ୍ୟା ପ୍ରତିଭାକୁ ଏବେ ଖୁବ୍ ଭଲପାଉଛି । ନିଜ ସମ୍ବନ୍ଧେ ଅହଂକାର ବି ତାର ଖୁବ୍ ବଢ଼ିଗଲାଣି । ଜୀବନ ସଂଗ୍ରାମରେ ସେ ଯେତିକି ଯେତିକି ପ୍ରାସ୍ତ ହେଉଛି, ନିଜର ପ୍ରତିଭା ଓ ଅହଂକାର ସେତିକି ସେତିକି ବଢ଼ି ବଢ଼ି ଚାଲିଛି । ସେ ବୁଝୁଛି—ଏ ଦୁନିଆରେ ସବୁ କିଛି ଅଦରକାରୀ । ଗୁଡ଼ାଏ ବହି ପଢ଼ି ଜ୍ଞାନଅର୍ଜନ କରି ଲାଭ କଣ ? ଦୁଃଖର ଅନୁଭୂତି ଅପେକ୍ଷା, ଦୁଃଖର ଅଭିଜ୍ଞାନଟା ବେଶି

ବାଧେ—ବେଶି ପୀଡ଼ା ଦିଏ । ବହିଗୁଡ଼ାକ ଆମକୁ ଅତି ମାତ୍ରାରେ ଆତ୍ମସଚେତନ କରାଇ ଦେଉଛନ୍ତି । ଏଇ ନିଜର ଅବସ୍ଥା ସମ୍ବନ୍ଧେ ସଚେତନ ହେବାଟା କଣ କମ୍ କଷ୍ଟଦାୟକ ? ଗ୍ରନ୍ଥକୀଟ ଅପେକ୍ଷା ଧାନକୀଟଟା ବରଂ ବେଶି ମୋଟା, ବେଶି ତାଗଡ଼ା; ଭଲ ଖାଏ—ଭଲ ଶୁଏ, ଆଉ ଭଲରେ ଥାଏ ।

ହଠାତ୍ ବାରଣ୍ଡାରେ କାହାର ଯୋତାଶବ୍ଦ ଶୁଣାଗଲା । ଖିରୋଦ କାନ ଡେରିଲା । କୃଷିଇଞ୍ଜିନିୟର ଗଜେନ୍ଦ୍ର ନିଶ୍ଚୟ । ଖିରୋଦ ତାଆରି ପାଇଁ ଆଜି ଦିନ ଦଶଟା ପର୍ଯ୍ୟନ୍ତ ବିଛଣାରେ ପଡ଼ି ରହିଲା, ବାସକସଜ୍ଜା, ଉତ୍କଣ୍ଠିତା ନାୟିକା ପରି, କିନ୍ତୁ ଭୁଣ୍ଡେ ପାନ ହେଲା ପିଠା; କାହାନ୍ତି ସେ କାହାନ୍ତି ??

ହଠାତ୍ ଗଜେନ୍ଦ୍ରର ଆବିର୍ଭାବ ହେଲା ।

"ନମସ୍ତେ ଖିରୋଦ ନମସ୍ତେ ! କରେ ? ଆସି ଦଶଟା ବାଜିଲାଣି, ତୁ ବିଛଣାରେ ପଡ଼ି ରହିଚୁ ? ମଲା, ଏ ପୁଣି କଣ ? ଏ ଗରମରେ ବି ତୁ କମ୍ବଳାବୃତ ? ଟେବୁଲ ଉପରେ ଗ୍ରନ୍ଥ ବସିଚି ବୋଧହୁଏ ତୁ ବଡ଼ ଗୃଆଖୋର ହୋଇଗଲୁଣି ଖିରୋଦ ! ଆଚ୍ଛା, କଣ ତୋର ହେଲା ? ଜର ?

ଗଜେନ୍ଦ୍ର ଯାଇ ଖିରୋଦ ଦେହରେ ହାତ ମାରିଲା । "କାହିଁ ନାହିଁ ତ, ତାତି ଜମା ନାହିଁ ଦେହରେ, ବରଂ ମୋ ବାବାରେ ଥଣ୍ଡା !! ଖିର ! କାଢ଼ ସେ କମ୍ବଳଟା ଦେହରୁ ।" ଗଜେନ୍ଦ୍ର ଚିଡ଼ିଗଲାଣି ମନେ ମନେ । ଖିରୋଦ ହସି ହସି ଗୀତ ଗାଇଲା, ତୋରି ପାଇଁ ରେ ଗଜେନ୍ଦ୍ର, ତୋରି ପାଇଁ—

"ଇଞ୍ଜିନିଅର କୃଷି ଇଞ୍ଜିନିଅର
ଆସିବେ ବୋଲି ଗୋ ସଖୀ ଗୋ
କାଲି ନିଶି ଥିଲି ଉଜାଗର
ଖରାଦିନେ ଘୋଡ଼ି ହେଲି—
କାଶ୍ମୀର କମ୍ବଳ ଗୋ
କାଲି ନିଶି ଥିଲି ଉଜାଗର—
ହାଃ—ହାଃ—ହାଃ—ହାଃ !

ଗଜେନ୍ଦ୍ର ରାଗିଯାଇ ଚଉକଠାରେ ବସି କହିଲା—

ରଖ୍ ରଖ୍ ସେ ଚଗଲାମି, କି ବ୍ୟବସାୟ ଆରମ୍ଭ କଲୁ କହ ତ ? ପୋଲ୍‌ଟ୍ରି ଫାର୍ମିଂ ତ ? ଆରେ ଖିର —ସକାଳ ଦଶଟା ଯାଏ, ଚା ପିଇ, ବିଛଣାରେ କମ୍ବଳବନ୍ଦ ହୋଇ ଶୋଇ ରହିଲେ ବ୍ୟବସାୟ ହୁଏ ନ, ବୁଝିଲୁ; ବ୍ୟବସାୟୀର ନିଦ୍ରା ଶ୍ୱାନନିଦ୍ରା । ଖିରୋଦ, ଗଜେନ୍ଦ୍ରର ହାତ ଧରି କହିଲା—

"ନାଇଁ ରେ ଗଜେନ୍ଦ୍ର, ବ୍ୟବସାୟ ଏପରି ଆରମ୍ଭ ହୁଏ— ଚା' କମ୍ବଳ, ଆଉ ସକାଳ ଦଶଟାଯାଏ ଶଯ୍ୟା ଉପରେ ଅନନ୍ତ-ଶୟନ । ତୋର କଥାରେ କୁକୁଡ଼ାଚାଷ ଆରମ୍ଭ କରି ଦେଇଛି ।"

"କରିଛୁ ? କେଇଟା କୁକୁଡ଼ା କିଣିଚୁ ? ଆମ ଫାର୍ମ କୁକୁଡ଼ା ତ ? କାଇଁ ଦେଖି"—

"ଆରେ ନାଇଁ, ଫାର୍ମ କୁକୁଡ଼ା ! ମୋଟେ ତିନିଟି ଟଙ୍କାର ମୂଳଧନ, ଯୋଡ଼ିଏ ମାଇକୁକୁଡ଼ା କିଣିଚି । ସାତ ଦିନରେ ସାତଟି ଅଣ୍ଡା, ଗୋଟେ ମୋଟ ଚଉଦଟି ଅଣ୍ଡା । ସେଥିରୁ ଦଶଟି ଖରାପ ହୋଇଗଲା, ମାନେ କାଞ୍ଜିଆ । ଏ ଦେଶୀ କୁକୁଡ଼ା ଭଲ

ବ୍ରଡ୍ କରିପାରୁ ନାହାନ୍ତି ରେ ଗଜେନ୍ଦ୍ର ! ଆମ ଦେଶର ମଣିଷଙ୍କ ପରି, ଆମ ଦେଶର କୁକୁଡ଼ାଗୁଡ଼ାଙ୍କଠାରେ ଉତ୍ତାପ ଅତି କମ୍ । ଅଣ୍ଡା ଉଷୁମ କରିବାର ଯନ୍ତ୍ର କିଣିବାକୁ ବି ପଇସା କାହିଁ ? ସେଥିପାଇଁ କଣ କରିଛି ଜାଣୁ ? ଗୋଟେ ନୂତନ ପରୀକ୍ଷା ଚଳେଇଛି ।"

ଉତ୍ସୁକ ହୋଇ ଗଜେନ୍ଦ୍ର ପଚାରିଲା, "କଣ ? କି ପରୀକ୍ଷା କହିଲୁ ? ତୋର ଯେଉଁ ଆଇଡିଆ !!!"

"ଆରେ ! ଶୁଣ, ଏଇ ଚାରିଟି ଅଣ୍ଡାକୁ କାଲି ରାତିରୁ ମୋ ନାହି ତଳେ ଦେଇ ଶୋଇଛି । ଦେଖୁଛି ମଣିଷ ଦେହର ଉତ୍ତାପଦ୍ୱାରା କୁକୁଡ଼ାଅଣ୍ଡା ଛୁଆ ଫୁଟିବ କି ନାହିଁ !! କେଟ୍‌ଲିରୁ ଗରମ ଚାଆ ପ୍ରତି ଘଣ୍ଟାରେ ଥରେ ପିଇ ଦେହକୁ ଉତ୍ତାପ ଯୋଗାଉଛି । ଆଉ କମ୍ବଳଟି ଘୋଡ଼ାଇ ହୋଇ ଦେହର ଉତ୍ତାପ ରକ୍ଷା କରୁଛି । ବୁଝିଲୁ ଗଜେନ୍ଦ୍ର ! ପ୍ରତିଭାବାନ ବ୍ୟକ୍ତି ହିଁ ସବୁ ବିଷୟରେ ଗବେଷଣା କରି ନୂତନ ତଥ୍ୟର ଉଦ୍‌ଭାବନ କରେ । ଗତାନୁଗତିକ ଧାରାରେ ପାଠ ପଢ଼ି କୃଷି ଇଞ୍ଜିନିୟର ସାଜ ହୁଏ, ମାତ୍ର ନୂତନ ତଥ୍ୟର ଉଦ୍‌ଭାବନ କରି ହୁଏ ନାହିଁ । ସେଥିପାଇଁ ପ୍ରତିଭା ଲୋଡ଼ା ବୁଝିଲୁ ଗଜେନ୍ଦ୍ର; ପ୍ରତିଭା···

ହାଃ ହାଃ ହାଃ !—

ସତକୁ ସତ ଚାରିଟି କୁକୁଡ଼ା ଅଣ୍ଡା କ୍ଷିରୋଦ ନାହି ତଳୁ କାଢ଼ି ଗଜେନ୍ଦ୍ର ହାତରେ ଦେଲା ।

ଗଜେନ୍ଦ୍ରର ଇଚ୍ଛା ହେଲା, ସେଇ ଚାରିଟା ଅଣ୍ଡା ସେ ଚଗଲା ବଦମାସ୍ ପାଜି ବେକାର କ୍ଷିରୋଦର ମାଙ୍କଡ଼ ମୁହଁକୁ ଟେକା ପରି ଫିଙ୍ଗନ୍ତା । ରାସ୍କେଲ, କେବଳ କଥା କହିବା ଶିଖିଛି;

ଭଣ୍ଡ କୋଉଠିକାର ! ମାତ୍ର ଗୁଣ୍ଡିଏ ଅଣ୍ଡାକୁ ଟେବୁଲ ଉପରେ ରଖି ସେ ବଡ଼ କରୁଣ କଣ୍ଠରେ କହିଲା, "ଶେଷକୁ ଖିରୋଦ, ତୁ ଅଣ୍ଡା ଉଷୁମେଇଲୁ ? ହାଇ ରେ ! ତୋର ପ୍ରତିଭା ଶେଷକୁ ତୋର ନାହିଁ ତଳେ ଏଇ ଅଣ୍ଡା ଉଷୁମେଇବାର ତଥ୍ୟ ଉଦ୍ଭାବନ କଲା ? ହା—ହତଭାଗ୍ୟ !!"

ଗୋଟେ ଲମ୍ବା ହସରେ ଘର ଫଟାଇ ଖିରୋଦ ବିଛଣାରୁ ଉଠିବସିଲା । କମ୍ବଳଟାକୁ ଫୋପାଡ଼ି ସେ ଖଣ୍ଡେ ବାଡ଼ିରେ ନାଆଁ ଧରାଉ ଧରାଉ କହିଲା—

"ପ୍ରତିଭା ? ପ୍ରତିଭା ନା ଘୋଡ଼ାଡିମ୍ବ !! ହାଃ ହାଃ ହାଃ ହାଃ·········"

ଗଜେନ୍ଦ୍ର ବିଂଶ-ଶତାବ୍ଦୀର ଏଇ ବେକାରଗ୍ରସ୍ତ ଓ ବିକାରଗ୍ରସ୍ତ ଖିରୋଦର ବାଡ଼ଧୂଆଁର ଉତ୍କଟ ଗନ୍ଧରୁ ରକ୍ଷା ପାଇବା ପାଇଁ ନାକରେ ତାର ବାସନା ରୁମାଲ ଗୁଞ୍ଜିଥିଲା ମାତ୍ର । ତା' ପରେ ନୀରବରେ ଓ ନିଃଶବ୍ଦରେ ସେ ଗୋଟିଏ ସର୍ବସ୍ୱ ପରି କକ୍ଷତ୍ୟାଗ କଲା ।

# ବନଗହନର କାକଳି

ଥର ଥର କରି ତିନି ଥର ବରଗଛର ଡାଳରେ ବସା କଲାଣି ହଳଦିବସନ୍ତ । ମାତ୍ର ତିନି ଥର ଯାକ ବୁଢ଼ାମାଙ୍କଡ଼ ସେଇ ଡାଳରେ ଡେଇଁ ଡେଇଁ ତା ବସାକୁ ଭାଙ୍ଗୁଛି । ଯେତେ କହିଲେ ବି ବୁଢ଼ା ଗେଧ ତା' କଥା ଶୁଣିବାକୁ ନାରାଜ । ଜ୍ୟେଷ୍ଠମାସ ମାଡ଼ି ଆସୁଛି । ଆଜିଠାରୁ ବସାଟିଏ ନ କଲେ ନ ହୁଏ । ମାଈ-ହଳଦି-ବସନ୍ତର ମୁଣ୍ଡରେ ଚିନ୍ତାର ବୋଝ ।

କୁହୁରୁ କୁହୁ—କୁହୁରୁ କୁହୁ—କୁହୁରୁ କୁହୁ ।

ପୁରୁଷ-ହଳଦିବସନ୍ତଟି ସାହାଡ଼ାଗଛର ଡାଳରେ ଆସି ବସିଲା, ଆଉ ତା' ସ୍ତ୍ରୀକୁ ଡାକିଲା । ଖରାରେ ବୁଲିବୁଲି ସେ ଠିକେ ମଳିନ ଦିଶୁଛି । ତାର ସୁନାର ରଙ୍ଗ ଠିକେ କଳା ଦିଶୁଛି । ଫୁର୍ କିନା ବରଗଛ ଡାଳରୁ ସାହାଡ଼ାଗଛକୁ ଉଡ଼ିଆସିଲା ସ୍ତ୍ରୀ-ହଳଦିବସନ୍ତ ।

"କଣ ହେଲା ? ଆଉ କେଉଁଠି ବସା ବାନ୍ଧିବା ପାଇଁ ଭଲଜାଗା ପାଇଲ ?"

ପୁରୁଷ-ଚଢ଼େଇଟି ସ୍ତ୍ରୀ ପାଖକୁ ଲାଗି ଆସି କହିଲା—

"ଆଉ ବୁଲିବା ବୃଥା । ବହୁଆଡ଼ୁ ବୁଲିଲି; ମାତ୍ର ଭଲ ଜାଗା ଆଉ ମିଳିଲା ନାହିଁ । ଯାହା ଯେଉଁଠି ଭଲ ନିରାପଦ ଡାଳ

ଥିଲା, ସେଠି ସବୁ ଆଉ ଚଢ଼େଇମାନେ ବସାବାନ୍ଧି ସାରିଲେଣି । ଏହି ବରଗଛ ଛଡ଼ା ଆଉ ଭଲ ଜାଗା ପାଇବା ମୁସ୍କିଲ । ଆଉ ତ ସମୟ ନାହିଁ । ତୁମେ ତ ଆଉ ବେଶି ବୁଲବୁଲି କରିପାରିବ ନାହିଁ, ଏ ଯେଉଁ ଖରା—”

ସ୍ତ୍ରୀ-ହଳଦିବସନ୍ତ କାନ୍ଦି କାନ୍ଦି ହୋଇ କହିଲା—

“ନା, ତୁମେ ତ ଆଉ ଖରାରେ ବେଶି ବୁଲନାହିଁ । ବୁଢ଼ା ମାଙ୍କଡ଼କୁ ବାଡ଼ି ଖାଉ ।”—ଓଃ-ଓହୋ ! କୁହୁରୁ କୁହୁ—କୁହୁରୁ-କୁହୁ । ସ୍ତ୍ରୀ-ହଳଦିବସନ୍ତ କୁନ୍ଥେଇ ଲାଗିଲା । ଆଉ ଅଳ୍ପଦିନ ପରେ ସେ ପ୍ରସବ କରିବ ।

କାଆ—କାଆ—କାଆ—

ଡାମରାକୁଆ ଆସି ସାହାଡ଼ାଗଛରେ ବସିଲା—

ମୁଁ ବୁଝୁଛି. ହଳଦିବସନ୍ତ, ତୁମେମାନେ ବଡ଼ ଖୋରୁ । ତୁମେ ହଳଦିବସନ୍ତଗୁଡ଼ାକ ବଡ଼ ନବୁଦ୍ଧିଆ । ଖାଲି ଦେହକୁ ଘଷି ମାଜି ରଙ୍ଗରଙ୍ଗେଇ ମଧୁରସଙ୍ଗୀତ ଗାନ କଲେ କେହି ଦୁନିଆରେ ବଞ୍ଚିରହି ପାରିବେ ନାହିଁ ବନ୍ଧୁ ! ସଂଗ୍ରାମ ଲୋଡ଼ା । ବୁଝିଲ, ସଂଗ୍ରାମ ଲୋଡ଼ା । ଆମେ କାଉଗୁଡ଼ାକ କାହାରି କାହାରି ଅତ୍ୟାଚାର ସହିପାରୁ ନା । ସେ ଯେ ହେଉ । ଆମ ପ୍ରତି ଖରାପ କଲେ ଆମେ ତା'କୁ ଥଣ୍ଟ ଆଉ ନଖରେ ଖୁମ୍ପି ଖୁମ୍ପି ଅସ୍ତବ୍ୟସ୍ତ କରିଦେବୁ; ଆଉ ନ ପାରିଲେ ଆମେ ପବ୍ଲିକ୍ ରାସ୍ତା ଉପରେ ବଡ଼ ପାଟିକରି ତାକୁ ଗାଳିଦେବୁ, ତାର ଇଜ୍ଜତ ମହତ ସାରି-ଦେବୁ । ସେଥିପାଇଁ ବୁଢ଼ା ମାଙ୍କଡ଼ ଆମ ବସାର ଛୁଇଁ ମାଡ଼େ

ନାଇଁ । ଥରେ କଜଳପାତି ପ୍ରତି ମଧ୍ୟ ଏହି ମାଙ୍କଡ଼ ଖରାପ ବ୍ୟବହାର କରିଥିଲା । ମାତ୍ର କଜଳପାତି ତା'କୁ ଦେଇଛି ଧରି ପାରେ । ତୁମେ ମାଙ୍କଡ଼ଟାକୁ ଜବତ କରି ପାରୁନାହଁ ?

କଣ ଆଉ କରି ବକୁଛ ! ବହୁ ଅନୁନୟ ବିନୟ କଲି, ମାତ୍ର ମାଙ୍କଡ଼ କି ଶୁଣୁଚି ? ତା'ର ଜିଦ ଲାଗିଛି, ସେ ଆମ ବସା ଭାଙ୍ଗିବ; ଅଥଚ ଆମେ ତାର କିଛି କ୍ଷତି କରିନୁ । କାଲି ପୁଣି ମୋ ସ୍ତ୍ରୀକୁ ରସିକତା କରି କହିଲା, ତୁମେ ହଳଦିବସନ୍ତ କୋଇଲି ଆଉ ଗୋବରି ଚଢ଼େଇ ଗୁଡ଼ାକ ବେଶ୍ୟା ଜାତି । ତୁମର ବସା ଗୋଟେ କଣ ହେବ ?

ପୁରୁଷ-ହଳଦିବସନ୍ତ ଏତିକ କହୁ କହୁ ହଠାତ୍ ଆକାଶରେ ଶୁଭିଲା—ଚରିଂ ଚରିଂ ଚରିଂ....

କାଉ ତାର ଡେଣା ଦିଟା ବୁଲେଇ ଉପରକୁ ଥଣ୍ଟ ଟେକିଲା—

"କାଆ-କାଆ-କାଆ-କଏ ?" ଓହୋ ଗଙ୍ଗେଇ ! ତା ହେଲେ ଆସନ୍ତୁ-ଆସନ୍ତୁ-ଆସନ୍ତୁ ।

"ଚରିଂ ଚରିଂ ଚରିଂ !"

ଗଙ୍ଗେଇ ଆସି ସେମାନଙ୍କ ପାଖରେ ବସିଲା ।

ଡାମରାକାଉ ପ୍ରଥମେ କହିଲା—

ଆଉ କଣ ହାଲ ଗଙ୍ଗେଇ ? ଆଜକାଲି ତ ତୁମରି-ମାନଙ୍କର କଟେ ବାର ପଡ଼ିଛି । ଗାଡ଼ିଆ-ପୋଖରୀ ସବୁ ଯେମିତି ଶୁଖିଲାଣି, ତୁମରିମାନଙ୍କ ବଜାର ବର୍ତ୍ତମାନ ସରଗରମ । ଆଜକାଲି ମାଛ ବି ବେଶ୍ ଦି'ଟା ମିଳୁଛି !

ଚରିଂ ଚରିଂ ଚରିଂ—ଆହେ ନାହିଁ ହେ—ମାଛ ! ଏ ମଣିଷ ଗୁଡ଼ାକୁଁ କଣ ମାଛ ଅଣ୍ଟୁଚି ? ଆଗେ ହରିଜନମାନେ ବେଶି ମାଛ

ଉପରେ ନିର୍ଭର କରୁ ନ ଥିଲେ । କାରଣ ଗେଣ୍ଡା-କୋଚଆଙ୍କ ଉପରେ ସେମାନଙ୍କର ଆମିଷ କ୍ଷୁଧା ମେଣ୍ଟୁଥିଲା । ମାତ୍ର ଆଜିକାଲି ଦେଉଳକୁ ପଶିବା ପାଇଁ ସେମାନେ ଗେଣ୍ଡା-କୋଚଆ ଛାଡ଼ି ଏବେ ମାଛ-ଇଚେଣ୍ଡି ଖାଉଛନ୍ତି । ଗେଣ୍ଡାକୋଚଆ ଖାଇଲେ ଯେମାନେ ସବର୍ଣ୍ଣ ହିନ୍ଦୁଙ୍କ ଦ୍ୱାରା ଅସଭ୍ୟ ବୋଲି ଗଣା ହେଉଥିଲେ, ମାତ୍ର ମାଛ ଖାଇଲେ ସଭ୍ୟ । ପୃଥିବୀର ଯେଉଁ ଅଂଶର ଲୋକେ ଅଯରପା ଝିଟିପିଟି ଖାଉଛନ୍ତି, ସେମାନେ କଣ ସଭ୍ୟ ନୁହନ୍ତି ? ସେମାନଙ୍କର କଣ ଅହିଂସା ପରମ ଧର୍ମ ନୁହଁ ? ଗେଣ୍ଡାକୋଚଆ ଯେଉଁ ଦିନୁଁ ଛାଡ଼ିଲେଣି, ସେ ଦିନୁଁ ତାଙ୍କ ଦେହରୁ ବଳ ଗଲାଣି । ଆମକୁ ବି ଆଉ କେରଣ୍ଡିଟିଏ ମିଳିବା ସହଜ କଥା ହୋଇ ନାହିଁ ।

କାଉ କହିଲା, କାଆ କାଆ—ଘୁ଼ଡ଼ ଘୁଡ଼ ଘୁଡ଼—

ଘୁଡ଼ ହେ, ମଣିଷଙ୍କ କଥାରୁ ଆମକୁ କଣ ମିଳିବ ? ଆମ କଥା ଆମେ ବୁଝିବା—।

ହଁ, ଶୁଣିଲଣି ଗଙ୍ଗେଇ ? ବଗୁଲି ଏଇ ହଳଦିବସନ୍ତ ଦିଇଟାକୁ ସେଇ ପାଜି ବୁଢ଼ାମାଙ୍କଡ଼ ବଡ଼ ହଇରାଣ କଲାଣି । ତିନି ଥର ଏମାନେ ଏଇ ବରଗଛରେ ବସା ବାନ୍ଧିଲେଣି । ତିନି ଥର ଯାକ ସେଇ ମାଙ୍କଡ଼ଟା ଆସି ତାଙ୍କ ବସାକୁ ବଦମାସୀ କରି ଭାଙ୍ଗୁଚି । ଯେତେହେଲେ ହଳଦିବସନ୍ତଗୁଡ଼ାକ ହେଲେ କବି ଆଉ ଗାୟକଙ୍କ ଜାତି, ମାନେ—ଶିଳ୍ପୀ । ସେମାନେ ଅଛନ୍ତି ବୋଲି ଆମ ପକ୍ଷୀଜାତିର ସଭ୍ୟତା କହ, ସଂସ୍କୃତି କହ, ସବୁ ବଞ୍ଚିରହିଚି । ଶିଳ୍ପୀମାନଙ୍କୁ ଶାନ୍ତିରେ ନ ରଖିଲେ, ଆମ ସମାଜର ଅଗ୍ରଗତି ଅସମ୍ଭବ ।

ସେମାନେ ଜାଣନ୍ତି ନାହିଁ, ବଗ କେତେବେଳୁ ଆସି ସେମାନଙ୍କଠାରୁ ଅଳ୍ପ ଦୂରରେ ଗୋଟିଏ ଡାଳରେ ଗୁପ୍ ମାରି ବସିଯାଇଛି । ବଗ ସାଧାରଣତଃ ଖୁବ୍ ଗମ୍ଭୀର । କାଉ ପରି ଗୁଡ଼ାଏ ବକ୍ ବକ୍ ହେବା ତାର ସ୍ୱଭାବବିରୁଦ୍ଧ । ଆଉ ମଧ୍ୟ କାଉଙ୍କ ସଙ୍ଗେ ବଗମାନଙ୍କର ପଟେ଼ ନାହିଁ । ବଗ ଗୋରା; ତେଣୁ ଖୁବ୍ ଗମ୍ଭୀର, ଗର୍ବୀ ଆଉ ଅସାମାଜିକ । କାଉ କଳା । ସୁତରାଂ ବଗ କାଉକୁ ପାଖ ପୂରାଏ ନାହିଁ କିମ୍ବା ଏଇ ବୃଥା ବାବଦୂକ କାଉଟାକୁ ସଭ୍ୟ ବୋଲି ମନେ କରେ ନାହିଁ । କାଉମାନଙ୍କ ପାଖରେ ଏକା ସାଙ୍ଗରେ ମଧ୍ୟ ବଗମାନେ ବସନ୍ତି ନାହିଁ ଏବଂ କେବଳ ଏଇ କଳାରଙ୍ଗଟା ପାଇଁ ପକ୍ଷୀମାନଙ୍କ ମଧ୍ୟରେ ଶ୍ରେଷ୍ଠ ସ୍ୱରଶିଳ୍ପୀ ଏବଂ କବି କୋଇଲିମାନଙ୍କୁ ମଧ୍ୟ ବଗମାନେ ଘୃଣା କରନ୍ତି ଏବଂ କୋଇଲିକୁ ଶିଳ୍ପୀର ସମ୍ମାନ ଦିଅନ୍ତି ନାହିଁ ।

ମାତ୍ର କାଉ ଏତେ଼ ପାଟି କରି ଏତେ଼ ବଡ଼ ବଡ଼ କଥା କହୁଥିବାର ଶୁଣି ବଗ ଆଉ ସହିପାରିଲା ନାହିଁ । ସେ ସେହି ସ୍ଥାନରୁ ପାଟି କରି କହିଲା—

ଆହେ ରଖ ତମର ବକ୍ତୃତା ! ସମାଜର ଶିଳ୍ପୀମାନଙ୍କ ପ୍ରତି ତୁମର ଶ୍ରଦ୍ଧା ଦେଖି ବରଂ ତୁମମାନଙ୍କ ପ୍ରତି ମୋର ଦୟା ଆସେ । ହଳଦିବସନ୍ତ ପ୍ରତି ମୋର ଅବଶ୍ୟ ଶତ୍ରୁତା ନାହିଁ । ମାତ୍ର ହେ ଅନ୍ଧ କାଉ ! ତୁମେମାନେ କେବଳ ଗୋଟିଏ ଆଖିରେ ଦେଖ; ମାନେ ଚକ୍ଷୁସ୍କାଣଃ ! ଏହି ଶିଳ୍ପୀ ଚଢ଼େଇଗୁଡ଼ାକ ବଡ଼ ସ୍ୱାର୍ଥପର । ସେମାନଙ୍କ ସଙ୍ଗେ ଆମ ସମାଜର କୌଣସି ସମ୍ପର୍କ ନାହିଁ । ସେମାନେ କେବଳ ବସନ୍ତଋତୁ ହେଲେ ଆମ ଆଡ଼କୁ ଆସନ୍ତି । ସେମାନଙ୍କର କି ଜନ୍ମଭୂମି ପ୍ରତି ମମତା ଅଛି ? ସେମାନେ

ସୁଖର ସାଥୀ । ସେମାନେ ଜନ୍ମଭୂମିର ବର୍ଷା ସହିବେ ନାଇଁ; ଶୀତ ସହିବେ ନାହିଁ, କେବଳ ବସନ୍ତଋତୁରେ ଆସି ବସନ୍ତ ସରୁ ସରୁ ପୁଣି କୁଆଡ଼େ ଉଡ଼ି ଚାଲିଯିବେ । ସେମାନଙ୍କର ଜାତୀୟତା ବୋଧ ଅଛି ? କୃତଘ୍ନ ସ୍ୱାର୍ଥପର—!

ହଳଦିବସନ୍ତ ଆଉ ସହିପାରିଲା ନାଇଁ । ଜୀବନର ସମସ୍ତ ଦୁଃଖ-ବେଦନା ଆଉ ଅଶ୍ରୁକୁ ନେଇ ସେ ସଙ୍ଗୀତ ରଚନା କରେ; ସମାଜର ସମସ୍ତ ଗରଳ ପାନ କରି ସେ ସମାଜକୁ ଅମୃତର ସନ୍ଧାନ ଦିଏ । ଆଉ ଏଇ ଛଦ୍ମବେଶୀ ଗର୍ବୀ କୁଟୀଳ ବଗଟା କହୁଛି କଣ ନା ଶିଳ୍ପୀଗୁଡ଼ାକ ସ୍ୱାର୍ଥପର, କୃତଘ୍ନ ! ଆଉ ଜାତୀୟତା ନାହିଁ । ହଳଦିବସନ୍ତ କହିଲା, ମୁଁ ଜାଣେ ବଗ, ତୁମମାନଙ୍କର ସମସ୍ତ ଚାଲବାଜି ଆଉ ଛଦ୍ମତାକୁ ଆମେ କ୍ଷମାକରିଛୁ । ଆମର ଜାତୀୟତା ନାହିଁ, ଅମେ ମାନୁଚୁ । ଶିଳ୍ପୀର ଜାତି ନାହିଁ । ସେ ଦେଶକାଳପାତ୍ରଠାରୁ ଖୁବ୍ ଊର୍ଦ୍ଧ୍ୱରେ । ଜାତୀୟତା ନାମରେ ତୁମେମାନେ ଖୁବ୍ ଠାଉରେ କରିସାରିଛ । ସମାଜକୁ ଶୋଷିବା ପାଇଁ ଏଇ ଜାତୀୟତାଟା ହିଁ ତୁମ ହାତରେ ବଡ଼ ଅସ୍ତ୍ର । ଏଇ ଜାତୀୟତାର ଦୋହି ଦେଇ ତୁମର ନେତୃତ୍ୱ କରିବା ଦିନ ଗଲାଣି । ଆଉ ସେ ଜାତୀୟତାର ଯୁଗ ନାହିଁ । ଏଇଟା ଆନ୍ତର୍ଜାତିକ-ତାର ଯୁଗ । ଆମେ ସବୁ ଆନ୍ତର୍ଜାତିକ । ସମଗ୍ର ବସୁଧା ଆମର କୁଟୁମ୍ବ । ପୃଥିବୀର ସମସ୍ତ ପତିତ, ନିର୍ଯ୍ୟାତିତ, ଆଉ ଅସହାୟ-ମାନଙ୍କର ଜାତି ଗୋଟିଏ—ଦେଶ ବି ଗୋଟିଏ । ତୁମମାନଙ୍କର ସମସ୍ତ କପଟତା ଓ ବଞ୍ଚକତାପୂର୍ଣ୍ଣ ସ୍ଲୋଗାନକୁ ମୀନମାନେ କେବଳ ବିଶ୍ୱାସ କରିଥିଲେ । ମାତ୍ର ତୁମେ ଜାଣିରଖ, ତୁମର ବେକର ରୁଦ୍ରାକ୍ଷମାଳାକୁ କଙ୍କଡ଼ା ଭଲକରି ଚିହ୍ନିଛି । କାରଣ

କଙ୍କଡ଼ାର ଦୁଇଟା ଟାଣ ମୁର୍ହଆ ଓ ଧାରୁଆ ଦାନ୍ତ ଅଛି । ହଉ, ଆଉ ବେଶି ପାଟି କରନାହିଁ । ଦୟା କରି ତୁମର ଅଣ୍ଟା ବନ୍ଧ କର ।

ବଗ ମନେ ମନେ ଖୁବ୍ ଉତ୍ତ୍ୟକ୍ତ ହୋଇ ଉଠିଲା । ମାଇଚଆ ହଳଦିବସନ୍ତର ତ ସାହସ କମ୍ ନୁହେଁ କନା । କାଉଟା ଆଗରେ ତା'କୁ କ ଅପମାନ ଦେଉଛି ! ବଗ ରାଗିଯାଇ ଡେଣା ଦୁଇଟାକୁ ଦୁଇ ଆଡ଼କୁ ଟେକି କହିଲା—

ଆମେ ଜାଣୁ, ତୁମମାନଙ୍କର କଥା କହିବାର ଦକ୍ଷତା ଅଛି ଏବଂ କେବଳ କଥା କହିବା ଛଡ଼ା ଶିଳ୍ପୀ ସମାଜରେ ଆଉ କଛି କାମ ପାଇଁ ଉପଯୁକ୍ତ ନୁହେଁ । ମାତ୍ର ଆମେ ବେଶି କଥା କହୁ ନାହିଁ । ଗୁଡ଼ାଏ ବକ୍ ବକ୍ ହେବା ଅମର ତୁଚ୍ଛବୁଦ୍ଧି ।

କାଉ କହିଲା—

କା-କା-କା ! ନା-ନା-ନା—ସେ କଥା ନୁହେଁ ମହାଶୟ— ତୁମମାନଙ୍କୁ କଥା କହି ଆସେ ନାହିଁ ବୋଲି ତୁମେମାନେ ଅତି ନିରୁପାୟ ଭାବେ ଗମ୍ଭୀର ହୋଇ ପଡ଼ିଛ । କାରଣ କଥା କହିବା ସମସ୍ତଙ୍କ ପକ୍ଷେ ସହଜ ନୁହଁ । ଆଉ ଶେଷରେ ଯାହାର କିଛି କହିବାକୁ ନାଇଁ, ସେ ଗମ୍ଭୀର ନ ହୋଇ ଆଉ ହେବ କଅଣ ? ଆମେ କାଉମାନେ ଅବଶ୍ୟ ଶିଳ୍ପୀ ନୋହୁଁ । ମାତ୍ର ଆମ୍ଭେମାନେ ବିପ୍ଳବୀ । ରାତିର ଘନଅନ୍ଧକାରକୁ ଆମେ ପାଟି କରି ତଡ଼ି ଦେଉ ଏବଂ ନୂତନ "ଉଷା"କୁ ସ୍ୱାଗତ ଜଣାଉ । ଶତ୍ରୁକୁ ମେଳି ବାନ୍ଧି ପାଟିରେ ତଡ଼ି ଦେବାରେ କ୍ଷମତା ଆମ କାଉମାନଙ୍କର ଅଛି । ଆଉ ହଳଦିବସନ୍ତ ଓ କୋଇଲିମାନଙ୍କ କଥା ଶୁଣ । ସେମାନଙ୍କ କଥା

ଶୁଣିବାକୁ ମଣିଷଗୁଡ଼ାକ ବ କାନ ଡେରିଥାନ୍ତି । କା-କା-କା ! ହାଃ ହାଃ ହାଃ ! କାଉର କଥା ଶୁଣି ବଗ ଆହୁରି ଚିଡ଼ିଗଲା ।

କକ୍କ୍, କକ୍କ୍, କକ୍କ୍ ! ହେ ବୋକା କାଉ ! ତୋର କେଉଁଦିନୁ ଶିଳ୍ପୀ ପ୍ରତି ଅନୁରାଗ ଆସିଲାଣି ? ମୂର୍ଖ ! ଶିଳ୍ପୀ କୋଇଲିର ପ୍ରଶସ୍ତି ଗାଉଚୁ ? ମାତ୍ର ଏଇ ଠକ ଶିଳ୍ପୀ କୋଇଲିଟା ତୁମମାନଙ୍କୁ କି ଦାରୁଣ ଭାବେ ଠକି ଚାଲିଯାଏ ? କୋଇଲିଙ୍କ ଛୁଆଙ୍କୁ ଡିମ୍ବ କାଳୁ ପାଳି ଶେଷରେ ସେମାନଙ୍କଦ୍ୱାରା ପ୍ରତାରିତ ହେବା ପରେ ବି ତୁମ୍ଭମାନଙ୍କର ଚୈତନ୍ୟ ଉଦୟ ହୋଇ ନାହିଁ ?

କାଉ ହସିଲା । ଆଉ କହିଲା—

ତା' ମୁଁ ମାନୁଛି; ମାତ୍ର ସେଥିପାଇଁ ଆମ୍ଭେମାନେ ଦୁଃଖିତ ନୋହୁଁ । ଶିଳ୍ପୀକୁ ବଞ୍ଚାଇବାର ଦାୟିତ୍ୱ ସମାଜର । ଆମେ ଆମର କର୍ତ୍ତବ୍ୟ କରୁ । କାରଣ ଆମେ ସବୁ ସାମାଜିକ ।

ବଗ ଏସବୁ କଥାରେ ଆଉ କିଛି ନ କହି ଚୁପ୍ ହୋଇ ସେ ଗଛରୁ ଉଡ଼ି ଚାଲିଗଲା ଏବଂ ବଗ ଚାଲିଗଲା ପରେ ସବୁ ଚଢ଼େଇଗୁଡ଼ାକ ତା' ପଛରେ ବୋବେଇ ଉଠିଲେ ।

କା, କା, କା !
କୁହୁରୁ କୁହୁ, କୁହୁରୁ କୁହୁ—
ଚିରିଂ, ଚିରିଂ, ଚିରିଂ—

ବଗ ବଡ଼ର ଅପମାନରେ ବହୁ ଦୂରକୁ ଚାଲିଗଲା । ଏହି ସମୟରେ କଜଳପାତି କୁଆଡ଼ୁ ଆସି ସେଠି ପହଞ୍ଚିଲା । କଜଳପାତିକୁ ଦେଖି ସବୁ ଚଢ଼େଇଗୁଡ଼ିକ ପକ୍ଷୀ ଥରେ ବୋବେଇ ଉଠି ତାକୁ ଅଭିବାଦନ ଜଣାଇଲେ ।

କଜଳପାତି ସମାଜରେ ମଧ୍ୟସ୍ଥର କାମ କରେ ଓ ଲୁଳ-ଲୋକୀ କର କଳକଜିଆ ମେଣ୍ଟାଏ ଏବଂ ଭଲରେ ନ ମେଣ୍ଟିଲେ କଜଳପାତି ନିଜର ଶକ୍ତି ଖଟାଇବାକୁ ଭୁଲେ ନାହିଁ ।

ଟିଆଙ୍ଗ୍ ଗୃଙ୍ଗ୍, ଟିଆଙ୍ଗ୍ ଗୃଙ୍ଗ୍ ! କଥା କଣ ? କଥା କଣ ?—କଜଳପାତି କାଉକୁ ପଚାରିଲା ।

କାଉ ହଳଦିବସନ୍ତର ସମସ୍ତ ଦୁରବସ୍ଥା ତାକୁ ଜଣାଇଲା । ବୁଢ଼ାମାଙ୍କଡ଼ର ଦାଉରେ ଏ ବରଗଛରେ ଆଉ ଅନ୍ୟ କୌଣସି ଚଢ଼େଇ ବି ବସା କରିପାରୁ ନାହାନ୍ତି । ତା' ଛଡ଼ା ଶ୍ରୀମତୀ ହଳଦି-ବସନ୍ତ ବର୍ତ୍ତମାନ ଗର୍ଭବତୀ ଏବଂ ଆଜିଠାରୁ ବସା ତିଆରି ନ କଲେ କେତେ ଅସୁବିଧା ହେବ ! କଜଳପାତି ବହୁ ଆଗରୁ ବସା ତିଆରି ସାରିଛି ଓ ବର୍ତ୍ତମାନ ସେ ଗୃହେଣି ଶିଶୁ-ସନ୍ତାନର ଜନକ । ତେଣୁ ହଳଦିବସନ୍ତର ଦୁଃଖରେ ସମଦୁଃଖୀ ହୋଇ ସେ ମାଙ୍କଡ଼ ପାଖକୁ ଗଲା ।

ବରଗଛରେ ମାଙ୍କଡ଼ ବସି ଘୁମାଉଛି ।

ଟିଅଙ୍ଗ୍ ଗୃଙ୍ଗ୍—ଟିଆଙ୍ଗ୍ ଗୃଙ୍ଗ୍—

କଜଳପାତି ମାଙ୍କଡ଼ର ମୁଣ୍ଡ ଉପରେ ଘୂରି ବୁଲିଲା ।

ଖାଂକାଂଖେ—ଖାଂକାଂଖେ ? ତୁ କିଏ ରେ—ତୁ କିଏ ରେ ?

ଟିଆଙ୍ଗ୍ ଟୃଙ୍ଗ୍—ଟିଆଙ୍ଗ୍ ଗୃଙ୍ଗ୍—ମୁଁ କଜଳପାତି । ବାପୁରା ହଳଦିବସନ୍ତର ବସା ଭାଙ୍ଗିବା କଣ ତୁମର ଠିକ୍ ହେଉଛି ?

"ହୁଁ"-ଖଂକାଂଖେ-ହୁଁ ! ଠିକ୍ ଭୁଲ ଆମେ ବୁଝୁ ନାହୁଁ । ଗଛଡାଳରେ ଡେଇଁ ବୁଲିବା ଆମର ଅଭ୍ୟାସ । ତା'

ଛଡ଼ା ଯେ ଶକ୍ତିଶାଳୀ, ତା' ପକ୍ଷେ ଭୂଲର ଓଜନ ଯେତିକି, ଠିକ୍‌ର ବି ଓଜନ ସେତିକି !

ଚଥାଙ୍ଗ୍ ଗୃଙ୍ଗ୍ ! ଠିକେ ଭାବି ଦେଖନ୍ତୁ ନା ! ଆମ ଭିତରେ କଳି କରିବାଟା କି ଅଶୋଭନୀୟ ! ତା' ଛଡ଼ା ହଳଦି-ବସନ୍ତର ସ୍ତ୍ରୀ ବର୍ତ୍ତମାନ ଆସନ୍ନପ୍ରସବା । କଥାଟା ଆମ ଭିତରେ ମୀମାଂସା କରିଦେବା ଭଲ; ନା କଣ କହୁଚ ?

ମାଙ୍କଡ଼ ତାଚ୍ଛଲ୍ୟ କରି କହିଲା—

ଖେଁ—ଖେଁ ! ଆରେ ଚଲ୍ ; ଜୋର ଯାହାର ମୂଲକ ତାହାର । ତୁମ କଜଳପାତିଆ ଭଲଲୋକଙ୍କ କଥା ମୋତେ ବେଶ୍ ଜଣାଅଛି ।

କଜଳପାତି ନିରାଶ ହୋଇ କହିଲା—

ଚଥାଙ୍ଗ୍ ଗୃଙ୍ଗ; ମୁଁ ତେବେ ରାଜାଙ୍କ ପାଖେ ତୁମ ନାମରେ ମକଦ୍ଦମା କରିବି ।"

ମାଙ୍କଡ଼ କହିଲା—

ଖଂ କାଂ ଖେ ହୁଁ—ଖଂ କାଂ ଖେ—କର୍-ନା ମକଦ୍ଦମା —ହୁଁ, ମୁଁ କି ମକଦ୍ଦମାକୁ ଡରିଚି ?

× × ×

ରାଜାଙ୍କ ଦରବାରରେ ହଳଦିବସନ୍ତ ମାଙ୍କଡ଼ ବିରୁଦ୍ଧରେ ମକଦ୍ଦମା କରିଛି । ଆଜି ମକଦ୍ଦମା ବିଚାର ହେବ । ହଳଦି ବସନ୍ତ ପକ୍ଷରେ ସାକ୍ଷ୍ୟ ଦେବାପାଇଁ ଆସିଛନ୍ତି କାଉ, ଗଙ୍ଗେଇ, କୋଇଲି ଆଉ କଜଳପାତି । କାଉ ହଳଦିବସନ୍ତ ପାଇଁ ଓକିଲାତି କରି ପ୍ରମାଣ କରିଦେଲା ଯେ ମାଙ୍କଡ଼ ଦୋଷୀ । ରଜା ମଧ୍ୟ ଭଲ

ବିଚାରକ । ସେ ମଧ୍ୟ କାଉର ଯୁକ୍ତିକୁ ବେଶ୍ ହୃଦୟଙ୍ଗମ କରି ପାରିଲେ । ତେଣୁ ରଜା କହିଲେ—

ହେ ଦୁଷ୍ଟମାଙ୍କଡ଼; ତୁମେ ଦୋଷୀ । ବିନା ଦୋଷରେ ହଳଦିବସନ୍ତର ବସା ଭାଙ୍ଗିଥିବାରୁ ତୁମକୁ କଠିନ ଦଣ୍ଡ ଦିଆଯିବ ।

ଚଢ଼େଇମାନେ ରାଜାଙ୍କର ରାୟ ଶୁଣି ମହାନନ୍ଦରେ ବୋବେଇ ଉଠିଲେ ମାତ୍ର ଦରବାରରେ ମାଙ୍କଡ଼ ଦୁଇ ହାତକୁ ଯୋଡ଼ି କହିଲା ମହାରାଜ ! ଧର୍ମାବତାର ! ଆପଣଙ୍କର ଆଦେଶ ଶିରୋଧାର୍ଯ୍ୟ ! ମାତ୍ର ଆପଣ ଦୟା କରି ଆଗପଛକୁ ଅନାଇ ବିଚାର କରନ୍ତୁ ।

ରଜା ପ୍ରଥମେ କିଛି ବୁଝି ନ ପାରି ପୁଣି ଥରେ କହିଲେ—

ହେ ଦୁଷ୍ଟ ମାଙ୍କଡ଼ ! ଆମ୍ଭର ନିଷ୍ପତ୍ତି ଚୂଡ଼ାନ୍ତ ଅଟେ । ହଳଦିବସନ୍ତର ବସା ଭାଙ୍ଗିଥିବା ଅପରାଧରେ ତୁମକୁ କଠିଣ ଦଣ୍ଡ ଦିଆଯିବ । ମାତ୍ର ମାଙ୍କଡ଼ ପୁନଶ୍ଚ ସେହିଭଳି ହାତଯୋଡ଼ି ଠିଆ ହୋଇ ବିନୟ ଭାବେ କହିଲା—

ମହାରାଜ, ଧର୍ମାବତାର ! ଆପଣଙ୍କ ନିଷ୍ପତ୍ତି ଅଧୀନର ଶିରୋଧାର୍ଯ୍ୟ; ମାତ୍ର ପ୍ରଭୁ ! ଦୟା କରି ଆଗପଛକୁ ଚାହିଁ ବିଚାରକରନ୍ତୁ ।

ରାଜା ଏଥିରେ ବିଚଳିତ ହୋଇ ବିସ୍ମୟ ସହକାରେ ସିଂହାସନ ପଛକୁ ଚାହିଁ ଦେଖିଲେ ଯେ ଗୋଟିଏ ବିଶାଳ ପଣସ ତାଙ୍କ ପଛପଟେ ରଖାଯାଇଛି । ତା'ପରେ ରଜା କିଛି ସମୟ ଗମ୍ଭୀର ରହି ହଳଦିବସନ୍ତକୁ ପ୍ରଶ୍ନ କଲେ—

ହେ ଅହଂକାରୀ ହଳଦିବସନ୍ତ, ଏହି ମକଦ୍ଦମାରେ ତୁମର ପ୍ରଥମ ଭୁଲ ହୋଇଅଛି । ତେଣୁ ଦଣ୍ଡ ତୁମେ ହିଁ ପାଇବ ।

ରଜାଙ୍କର ବିଚାର ହଠାତ୍ ଏପରି ପରିବର୍ତ୍ତନ ହେବାର ଶୁଣି କାଉ ଅତି ବିଚଳିତ ହୋଇ କହିଲା—

ଏ କପରି କଥା ମହାରାଜ ! ହଳଦିବସନ୍ତର ଦୋଷ ଏଥିରେ କେଉଁଠି ରହିଲା ? ଆପଣ ଠିକ୍ ଭାବେ ବିଚାର କରନ୍ତୁ ।

ରଜା କହିଲେ—

ଆରେ ନିର୍ବୋଧ କାଉ ! ମାଙ୍କଡ଼ ହେଉଛି ବଳବାନ ଜୀବ । ତା'ର ପ୍ରକୃତି ହେ ଗଛ ଡାଳରେ ଡେଇଁବା-ଇ ଡେଇଁବ ।

କାଉ କହିଲା—

ମାଙ୍କଡ଼ ଗଛଡାଳରେ ଡେଉଁ, ଆମର ସେଥିରେ କିଛି ଆପତ୍ତି ନାହିଁ । ମାତ୍ର ସେ ହଳଦିବସନ୍ତର ବସାକୁ ଡେଇଁ କରି ଭାଙ୍ଗିବ କାହିଁକି ?

ରଜା କହିଲେ—

କିନ୍ତୁ ମାଙ୍କଡ଼ ଯେଉଁ ଡାଳରେ ଡେଇଁବ, ହଳଦିବସନ୍ତ ସେ ଡାଳରେ ବସା କରିବ କାହିଁକି ? ଅତଏବ ଏହି ମକଦ୍ଦମାରେ ହଳଦିବସନ୍ତ-ଇ ପ୍ରକୃତ ଦୋଷୀ ଓ ସେଇ ପାଇବ କଠିନ ଦଣ୍ଡ ।

ମାଙ୍କଡ଼ ମହାନନ୍ଦରେ ରଜାଙ୍କୁ ସଲାମ୍ ଜଣାଇ ଡେଇଁ ଡେଇଁ ଦରବାର ତ୍ୟାଗ କଲା ଏବଂ ଚଢ଼େଇମାନେ ନିରାଶ ହୋଇ ନିରୁପାୟ ଭାବରେ ନୀରବରେ ଦଳବାନ୍ଧି ଉଡ଼ି ଆସିଲେ ।

ବାଟରେ ଆସୁ ଆସୁ ସେମାନେ ଦେଖିଲେ ଯେ, କଟପୋତ ଗୋଟିଏ ଶାମୁକାର ବାଗ୍ଧ ଅଣ୍ଟରେ ବନ୍ଧନ କରି ଉଡ଼ିଯାଉଛି ।

କାଉ କହିଲା—

ବନ୍ଧୁଗଣ ! ଏଇ ନିର୍ବୋଧ କପୋତଟିକୁ ଦେଖ । ସେ ଶାନ୍ତିର ବାର୍ତ୍ତା ବହନ କରି ଦେଶ ବିଦେଶରେ ଘୂରୁଛି । ମାତ୍ର ଏଭଳି ଶାସନ ଓ ବିଗ୍ରହର ବ୍ୟବସ୍ଥାରେ ଶାନ୍ତି କି ସମ୍ଭବ ?

ହଳଦିବସନ୍ତ କହିଲା, କୁହୁରୁ କୁହୁ, କୁହୁରୁ କୁହୁ ।

କଜଳପାତି କହିଲା—ଚିଆଙ୍ଗ୍ ଚୁଙ୍ଗ୍, ଚିଆଙ୍ଗ୍ ଚୁଙ୍ଗ୍ ।

ଗେଙ୍ଗେଇ କହିଲା — ଚିରିଂ ଚିରିଂ ଚିରିଂ ଚିରିଂ ।

ସେମାନେ କଅଣ କହିଲେ ? ? ? ? ?

# ଧନେଶ୍ୱର ଚରିତାମୃତଂ

## ଏକ

ମାସ ଶେଷବେଳକୁ ଧନେଶ୍ୱର ମନ ଭିତରେ ଗୋଟାଏ ଅସ୍ୱସ୍ତିକର ଶୃଙ୍ଖଳ ଅନୁଭବ କରନ୍ତି । ପୁରୁଣା ମାସଟା ସରି ସରି ଯାଉଛି, ନୂତନ ମାସର ପହିଲି ପାଖ ହୋଇ ଆସୁଛି । ଏହିଭଳି ଯେ କୌଣସି ସମୟ, ଯେ କୌଣସି ସ୍ଥିତପ୍ରଜ୍ଞ ବ୍ୟକ୍ତିର ମନକୁ ମଧ୍ୟ ବିଚଳିତ କରି ପକାଏ । ଶୀତଋତୁର ଶେଷ ଓ ଗ୍ରୀଷ୍ମ ଋତୁର ଆରମ୍ଭ କାଳ, ପୁଣି ବର୍ଷାଋତୁର ଶେଷ ଓ ଶୀତଋତୁର ଆରମ୍ଭ କାଳ ଏଇ ବସନ୍ତ ଓ ଶରତଋତୁ କାହା ମନକୁ ବିଚଳିତ କରନ୍ତି ନାହିଁ ? ସେହିଭଳି ଯୌବନ ଓ ବାର୍ଦ୍ଧକ୍ୟର ମିଳନ କାଳ, ପୁଣି ଶୈଶବ ଓ ଯୌବନର ସନ୍ଧିକାଳରେ ଯେତେ ସ୍ଥିର-ବ୍ୟକ୍ତି ହେଲେ ବି ମନରେ ଅସ୍ଥିରତା ଆସେ ।

କିନ୍ତୁ ଏତେ ଉଦାହରଣର ଦରକାର ବା କଣ ? ଧନେଶ୍ୱର ସାହୁଙ୍କ ଜୀବନରେ ପ୍ରତି ମାସର ଶେଷ ଓ ଆରମ୍ଭରେ ଏହିଭଳି ବର୍ଷକୁ ବାର ଥର ଚକ୍ରଶୃଙ୍ଖଳ ଆସିଥାଏ । ନିଜର ଆର୍ଥିକ ଅବସ୍ଥାର ଉନ୍ନତି ବିଧାନ କରିବା ଲାଗି ଓ ଭବିଷ୍ୟତ ପାଇଁ କିଛି କିଛି ସଞ୍ଚୟ କରିବା ଲାଗି ଧନେଶ୍ୱର ହଠାତ୍ ଅତି ମାତ୍ରାରେ ବ୍ୟଗ୍ର ହୋଇ ଉଠନ୍ତି । ଧନେଶ୍ୱର କୌଣସି କାର୍ଯ୍ୟରେ

ମନୋଯୋଗ କରିପାରନ୍ତି ନାହିଁ । ମନ ଭିତରେ ସହସ୍ର ଯୋଜନା ଆସେ, ଆଉ ଯାଏ ।

( ପ୍ରକାଶ ଥାଉ କି ଧନେଶ୍ୱର ଗୃହକାରି କରି ପେଟ ପୋଷନ୍ତି । )

ଥରେ ନଭେମ୍ବର ମାସରେ ତାଙ୍କ ମୁଣ୍ଡରେ ଏହି ଭଳି ବିଶୃଙ୍ଖଳା ଦେଖାଗଲା । ସେ ନିଜର ଏଇ ମାନସିକ ଅସ୍ଥିରତାକୁ ଘୋଡ଼ାଇବା ଲାଗି ମୁହଁରେ ଓ ଗଳାରେ ଯଥାସମ୍ଭବ ଗାମ୍ଭୀର୍ଯ୍ୟ ରକ୍ଷାକରି ଶୋଷଘର ଭିତରକୁ ପଶିଲେ । ଆଉ ପଢ଼ିବା କାର୍ଯ୍ୟରେ ମନୋଯୋଗିନୀ ସ୍ତ୍ରୀ କମଳାଦେବୀଙ୍କର ଅତି ନିକଟରେ ବସି ମନ୍ଦ୍ର କଣ୍ଠରେ ପ୍ରସ୍ତାବ ଦେଲେ—

ଆସନ୍ତା ମାସରେ ତିରିଶିଟି ଟଙ୍କା ଯେ କୌଣସି ପ୍ରକାରେ ଓ କାଢ଼ରେ ରଖିବାକୁ ହେବ । ତୁମେ ସବୁ ଯେମିତି ପାର ସେମିତି ଚଳ ।

ସ୍ତ୍ରୀ କମଳାଦେବୀ ସର୍ବଦା ଗମ୍ଭୀର ଓ ମିତଭାଷିଣୀ । ସ୍ତ୍ରୀ-ମାନଙ୍କ ମନକଥା କିଏ କହିପାରେ ? ଦେବା ନ ଜାନନ୍ତି କୁତୋ ମନୁଷ୍ୟ !! ମାତ୍ର ମୁହଁଟି ତାଙ୍କର ଦଶହରା ପର୍ବରେ କୁମ୍ଭାରେ ଗଢ଼ା ହୋଇଥିବା ଦେବୀମୁହଁଟି ପରି । ସେ ମୁହଁରେ ସାମୟିକ ଆବେଗ, ବିଶୃଙ୍ଖଳା ବା ହର୍ଷ, ବେଦନାର କୌଣସି ଭଙ୍ଗୀ କେବେବେଳେ ବି ପ୍ରକଟିତ ହୁଏ ନାହିଁ । ସେ ମୁହଁଟି ଗୋଟିଏ ମାତ୍ର ଭଙ୍ଗୀ ଫୁଟାଇଥାଏ । ତାହା ଏକ ସ୍ଥିର, ଗମ୍ଭୀର, ନିର୍ଲିପ୍ତ ଓ ସମ୍ବେଦନହୀନ ଭଙ୍ଗୀ । ଏହି ଭଙ୍ଗୀ ନେଇ ସେ ଜନ୍ମ ହୋଇ-ଥିଲେ ଏବଂ ଆଜି ତାଙ୍କର ଅଙ୍ଗପ୍ରତ୍ୟଙ୍ଗଗୁଡ଼ିକ ଭଳି ସେହି ଜନ୍ମଗତ ଭଙ୍ଗୀଟି କେବଳ ଆୟତନରେ ଯାହା ଯିନା ବଢ଼ିଛି— ମାତ୍ର ପରିବର୍ତ୍ତିତ ହୋଇନାହିଁ । ଧନେଶ୍ୱର ନିଜ ସ୍ତ୍ରୀଙ୍କର ଏହି

ଏକ ମାତ୍ର ଭଙ୍ଗୀ ସହିତ ଆଜି ପର୍ଯ୍ୟନ୍ତ ପରିଚିତ । ମଝିରେ କଣ୍ଟି ଦିନ ସେ ନିଜ ସ୍ତ୍ରୀଙ୍କ ମୁହଁରେ ଏହି ଭଙ୍ଗୀ-ବୈଚିତ୍ର୍ୟର ଅଭାବ ଦେଖି ଭାରି ମନକଷ୍ଟ କରିଛନ୍ତି । ଜୀବନରେ ସେ ଏଇ ଏକମାତ୍ର ନାରୀକୁ ବିବାହ କରିଛନ୍ତି ଓ ଭଲ ପାଇଛନ୍ତି । କୌଣସି ସ୍ତ୍ରୀ ଲୋକର ମୁହଁକୁ ସେ ସାହସ କରି ଅନାଇ ପାରିନାହାନ୍ତି । ମାତ୍ର ବେଳେ ବେଳେ ବନ୍ଧୁ ମେଳରେ ସିନେମା ଯାଇ ସେ ରୂପେଲି ପର୍ଦ୍ଦା ଉପରେ ନାରୀମୁଖର ନାନା ବିଚିତ୍ର ଭାବଭଙ୍ଗୀ ଦେଖି ବିହ୍ୱଳ ହୋଇଛନ୍ତି । ନାରୀର କଟାକ୍ଷ, ନାରୀର ଅଭିମାନ, ନାରୀର ଗାମ୍ଭୀର୍ଯ୍ୟ, ନାରୀର ଚୁମ୍ବନ ପ୍ରବଣ ମୁଗ୍ଧାନୁଭୂତି, ନାରୀର କାପଟ୍ୟ, ନାରୀର କାମନାକ୍ଷୁବ୍ଧ ହୃଦୟର ଆବେଗ-ଉନ୍ମାଦନା ଓ ଶୃଙ୍ଖଳା, ବିପଦରେ କାତରତା ଆଉ ବିପଦରେ ସ୍ଥିରତା ଆଦି ସବୁ ପ୍ରକାର ବିଚିତ୍ର ସୁନ୍ଦର ଅନୁଭବଗୁଡ଼ିକର ଅଭିନୟ ନାରୀ ମୁଖରେ ଦେଖି ଧନେଶ୍ୱର ଉତ୍‌ଫୁଲ୍ଲ ଓ ଭାବତରଙ୍ଗାୟିତ ହୃଦୟରେ ଘରକୁ ଫେରିଆସି ହୁଏ ତ ଦେଖନ୍ତି କଳାକାନ୍ଥର ପୃଷ୍ଠଭୂମିକାରେ ମିଞ୍ଜି ମିଞ୍ଜି କଳୁଚି ଗୋଟିଏ କରୋସିନ ଡିବି । ଆଉ ସେଇ ମଇଳା ଅନ୍ଧାର ଭିତରେ ଚକିକ ପିଠା ଉପରେ ବସିଛନ୍ତି କମଳାଦେବୀ । ସାରୁରୁ ଚୋପା ଛଡ଼ାଉଛନ୍ତି । ମୁହଁଟି ଚକିକ ଆଉ ସାରୁ ଉପରେ । ସେହି ପୁରାତନ ହାଣ୍ଡିପରି ମୁହଁ । ଧନେଶ୍ୱରଙ୍କର ଯୋତା ଶବ୍ଦରେ ସେ ଚମକି ନାହାନ୍ତି । ଧନେଶ୍ୱରଙ୍କର ଅନୁପସ୍ଥିତିରେ ସେ ଚିନ୍ତାନ୍ୱିତ ନ ଥିଲେ । ସ୍ୱାମୀଙ୍କ ଆଗମନରେ ବି ଉତ୍‌ଫୁଲ୍ଲ ହେବାର କୌଣସି ଲକ୍ଷଣ ତାଙ୍କଠାରେ ଦେଖା ଯାଇନାହିଁ । ସ୍ୱାମୀଙ୍କ ଆଡ଼କୁ ଥରେ ଗୁହଁଦେଇ ପୁଣି ସେ ସାରୁ ଓ ତାର ଚୋପା ଉପରେ ଦୃଷ୍ଟି ନିବଦ୍ଧ କରନ୍ତି । ବ୍ୟଥିତ ହୃଦୟରେ ଗୁମ୍ ମାରି ଦଣ୍ଡେ ଛିଡ଼ା ହୁଅନ୍ତି ଧନେଶ୍ୱର । ଆଶ୍ଚର୍ଯ୍ୟ ଏ ଲୋକ ! ଚକିକ, ସାରୁ ଆଉ ସ୍ତ୍ରୀଙ୍କର

ମୁହଁ । ଧନେଶ୍ୱର ଭାବନ୍ତି, ଏହା ପଞ୍ଚାଙ୍କିତ ଗୋଟିଏ ଛବି ମାତ୍ର । ସେ ଚଳଚ୍ଚିତ୍ର ଦେଖି ଆସିଛନ୍ତି, ଆଜି ଏଠି ଦେଖୁଛନ୍ତି, ଗୋଟିଏ ସ୍ଥିରଚିତ୍ର । ଧନେଶ୍ୱର ନିଃଶ୍ୱାସ ଛାଡ଼ନ୍ତି । ସ୍ତ୍ରୀଙ୍କର ମୁହଁରେ ଏହି ଭଙ୍ଗୀ, ବୈଚିତ୍ର୍ୟର ଅଭାବ ଉପଲବ୍ଧି କରି ସେ ଦୁଃଖରେ ଦୀର୍ଘନିଃଶ୍ୱାସ ଛାଡ଼ନ୍ତି । ଧନେଶ୍ୱରଙ୍କୁ ଭାରି ଖରାପ ଲାଗେ ଏଇ ନିର୍ଲିପ୍ତ ଗମ୍ଭୀର ଭଙ୍ଗୀମା । ମାତ୍ର ଆଉ ଉପାୟ କଣ ଅଛି ?

କିନ୍ତୁ ସବୁଦିନେ ତ ଆଉ ସେ ସିନେମା ଦେଖିଯାଆନ୍ତି ନାହିଁ ! କାର୍ଯ୍ୟକ୍ଷେତ୍ରରୁ କ୍ଳାନ୍ତ ମନରେ ଘରକୁ ଫେରି ଆସୁ ଆସୁ ବଜାରରୁ ପରିବା କିଣନ୍ତି, ଦୋକାନରୁ ସଉଦା କରନ୍ତି । ତଳକୁ ମୁହଁ ପୋତି, ବ୍ୟାଗ ଓହଳାଇ, ସାଇକେଲ ପେଛରେ, ସଞ୍ଜବେଳକୁ ସେ ଘରକୁ ଆସନ୍ତି । ରାତି ହୋଇ ଯାଇଥାଏ । ସାନ ଝିଅଟି ଶୋଇ ପଡ଼ିଥାଏ । ବଡ଼ଝିଅଟି ଦାଣ୍ଡଘରେ ଲଣ୍ଠନ ଜାଳି ବହି ଧରି ଚିତ୍କାର କରୁଥାଏ—ଅରଣା ମଇଁଷି ରହୁଛି ଅନାଇଁ
ମଇଁଷିର ପାଖ ନ ଯାଅ ଦିନାଇ ।

ହଠାତ୍ ଧନେଶ୍ୱର ବିରକ୍ତ ହୋଇ ଉଠନ୍ତି । ସବୁଦିନେ କଣ ଏଇ ଗୀତଟା ପଢ଼ା ଚାଲିଛି ? ଧନେଶ୍ୱର ଚିତ୍କାର କରନ୍ତି—

"ଆଲୋ ହେ ହୁଣ୍ଡୀ ! ତୋ' ଦ୍ୱାରା ପାଠ ହେବ ନାହିଁ । ତୁ ରନ୍ଧାବଢ଼ା ଶିଖ୍ । ମାସେ ହେଲାଣି କଣ ସେଇ ଗୋଟାଏ ପଦ ଧରିଛୁ—"ଅରଣା ମଇଁଷି ରହୁଛି ଅନାଇଁ....." ।

ତା'ପରେ ଧନେଶ୍ୱର ବର୍ଷକର ପୁଅଟିକୁ ଗେଲ କରିବାକୁ ଲାଗିଯାଇ ଦେଖନ୍ତି—ତାଙ୍କର ମାଆବୃଢ଼ୀ ପିଲାଟିକୁ ଗୋଡ଼ରେ ଶୁଆଇ ଗରମ ତେଲ ମାଲିସି କରୁଛନ୍ତି । ମାଆଙ୍କୁ ସତୁରି ବର୍ଷ ହେଲାଣି । କାନକୁ ଶୁଭୁ ନାହିଁ । କିନ୍ତୁ ଦିନ ରାତି,ପାଟି

କରିବାରେ ତାଙ୍କର ବାକ୍‌ଶକ୍ତିର କିଛି ଅପଚୟ ହୁଏ ନାହିଁ । ତାଙ୍କର ଧାରଣା ଯେ ପୁଅ ବହୁତ ଟଙ୍କା ରୋଜଗାର କରୁଛି । ମାତ୍ର ନିଜର ଅଯୋଗ୍ୟ ପଣରୁ ଓ ବୋହୂର ବେହିସାବୀ ଗୁଣରୁ ଟଙ୍କାଗୁଡ଼ାକ ପାଣି ପରି ବହିଯାଉଛି । ତାଙ୍କର ସବୁଠାରୁ ବଡ଼ ରାଗ ହେଉଛି ବାସନ ମାଜିବାକୁ ଆସୁଥିବା ଚାକରାଣୀଟା ଉପରେ । ମାସକୁ ପାଞ୍ଚଟି ଟଙ୍କା ସେ ନିଏ; ଆଉ ସଞ୍ଜେ ସକାଳେ ବାସନ ମାଜି, ପାଣି ଦେଇ, ତା' ଘରକୁ ଚାଲିଯାଏ । ଏଭଳି ଚାରୋଟି ଘର ସେ ଆଦରିଛି । କୋଉଦିନ କଖାରୁ ଫାଳେ ବା ବାଇଗଣ ଗୋଟାଏ ବା ତରକାରି କିଛି ସେ ଗଲାବେଳେ ମାଗି ନେଇଯାଏ ଏବଂ ଏହିପରି କରି ସେ ଚଳେ । କିନ୍ତୁ ଧନେଶ୍ବରଙ୍କ ମାଆ କହନ୍ତି, "ସେ ଚାକରାଣୀଟା ଏମିତି ଏମିତି କରି ମାସକୁ ୩୦-୪୦ ଟଙ୍କାରୁ କମ୍ ନେଉନାହିଁ । ଦରମା ପାଞ୍ଚ ଟଙ୍କା ପାଇଲେ କଣ ହେଲା ?"

ଅବଶ୍ୟ ଧନେଶ୍ବର ବୁଝାଇ ପାରନ୍ତେ ଯେ—"ମା, ମୋର ତ ଦରମା ହେଲା ମୋଟେ ଦୁଇଶ ଟଙ୍କା । ସେଥିରୁ ଘରଭଡ଼ା ଗଲା କୋଡ଼ିଏ ଟଙ୍କା । ବାକୀ ୧୮୦ ଟଙ୍କାରୁ ସେ ଚାକରାଣୀ ଯଦି ମାସକୁ ୩୦ ୪୦ ଟଙ୍କା ନେଉଥାଏ, ତେବେ ମୁଁ, ତୁ, ତୋ ବୋହୂ, ତୋର ଦୁଇ ନାତୁଣୀ ଓ ସାନ ପୁଅଟି ପୁଣି ମାସକ ଯାକ ଚଳୁଛନ୍ତି କେମିତି ?"

ମାତ୍ର ଧନେଶ୍ବର ଏ ଚେଷ୍ଟା କରନ୍ତି ନାହିଁ । କାରଣ ସେ ଜାଣନ୍ତି, ଯେ ଶୁଣିପାରେ ନାହିଁ, ତାକୁ ଅନ୍ତତଃ ଗପିବାକୁ ଦିଆଯିବା ଉଚିତ । ବାଧା ଦେଲେ ପାପ ହୁଏ । ଏ ଦୁନିଆରେ ଯେଉଁମାନେ ଶୁଣନ୍ତି ନାହିଁ, ସେଇମାନେ ତ ଗପନ୍ତି ବେଶି । ନ ଗପିଲେ ପୁଣି ବଞ୍ଚିବେ ସେମାନେ କିପରି ?

ଧନେଶ୍ୱର ନିଜ ଟଙ୍କା ପଇସାର ହିସାବର ଗୁପ୍ତରହସ୍ୟ କାହା ଆଗେ ଖୋଲିବାକୁ ପ୍ରସ୍ତୁତ ନୁହନ୍ତି । ତାଙ୍କ ସଂସାରରେ ଅଭାବ ଅଛି ବହୁତ । ମାତ୍ର ଅଭାବବୋଧ ତାଙ୍କ ମନକୁ ଦରିଦ୍ର କରିଦେଇ ନାହିଁ । ବଡ଼ ବଡ଼ ଜିନିଷ ଅର୍ଥାତ୍ ୫୦୦-୬୦୦ ଟଙ୍କାର ରେଡ଼ିଓ, ଖଣ୍ଡେ କାର୍, ଗ୍ରାମରେ କୋଠାଟିଏ ଢିଆରି ଆଦି ମହାର୍ଘ ଅଭାବବୋଧ ଯାହା ତାଙ୍କ ଶ୍ରେଣୀର ଲୋକଙ୍କ ମୁଣ୍ଡରେ ଲଦି ହୋଇ ରହିଛି, ଧନେଶ୍ୱର ସେ ସବୁର ଅଭାବ କେବେ ଅନୁଭବ କରି ନାହାନ୍ତି । ମାତ୍ର ତାଙ୍କର କ୍ଷମତାଧୀନ ପାରିବାରିକ ସାନ ସାନ ଅଭାବଗୁଡ଼ିକର ନିରାକରଣ ପାଇଁ ଧନେଶ୍ୱର ଖୁବ୍ ତତ୍ପର । ଘରୁ ଗୁଆ ସରିଗଲେ ସଙ୍ଗେ ସଙ୍ଗେ କଣାଯିବ, ଲୁଗା ଚିରିଗଲେ ନୂଆ ଲୁଗା କଣାଯିବ ଏବଂ ପାନ ସରିଗଲେ ସଙ୍ଗେ ସଙ୍ଗେ ପାନ କଣାଯିବ । ଧନେଶ୍ୱର ଜାଣନ୍ତି, ସେ ଧନୀ ନୁହନ୍ତି । ମାତ୍ର କୁତ୍ସିତ ଦାରିଦ୍ର୍ୟ ପ୍ରତି ତାଙ୍କର ଅତିଶୟ ଘୃଣା । ସେ କହନ୍ତି ଖର୍ଚ୍ଚ କାର୍ପଣ୍ୟଟା-ହିଁ କୁତ୍ସିତତମ ଦାରିଦ୍ର୍ୟ । ଧନୀକର କାର୍ପଣ୍ୟରେ ପୁଣି ଫୁଟିଉଠେ ଦାରିଦ୍ର୍ୟର ବୀଭତ୍ସତମ ରୂପ ।

ଏହି ଦର୍ଶନ ନେଇ, ଭବିଷ୍ୟତ କଥା ନ ଭାବି ଧନେଶ୍ୱର "ବର୍ତ୍ତମାନ" କାଳରେ 'ଧନେଶ୍ୱର' ହୋଇ ରହିଥାନ୍ତି । ଟଙ୍କା କରଜ ହୁଏ, ଟଙ୍କା ଶୁଝାଯାଏ । ମାତ୍ର କିଛି ବଳକା ଜମା ରହିପାରେ ନାହିଁ; କିନ୍ତୁ ଏଇ କେତେ ଦିନ ଧରି ଧନେଶ୍ୱରଙ୍କ ବାପା, ଶ୍ୱଶୁର ଆଉ ଶୁଭାକାଙ୍କ୍ଷୀ ବନ୍ଧୁ ଓ ଗୁରୁଜନମାନେ ଭବିଷ୍ୟତ ଲାଗି ସଞ୍ଚୟଶୀଳ ହେବାକୁ ବହୁ ଉପଦେଶ ଓ ସତର୍କବାଣୀ ଶୁଣାଇବା ଫଳରେ ଆଜିକାଲି ଧନେଶ୍ୱର ଅନୁଭବ କରୁଛନ୍ତି ଯେ ତାଙ୍କର କିଛି ଟଙ୍କା ପ୍ରକୃତରେ ଭବିଷ୍ୟତ ଲାଗି ସଞ୍ଚୟ କରିବା ଉଚିତ । ତେଣୁ ଏଇ କେତେଦିନ ଧରି ମାସର ଶେଷ ଓ ମାସର

ଆରମ୍ଭ କାଳ ମଧ୍ୟରେ ସେ ସ୍ୱଳ୍ପସଞ୍ଚୟ ଯୋଜନାର ଲକ୍ଷ ଲକ୍ଷ ପ୍ରସ୍ତାବ ସମ୍ବନ୍ଧରେ ସ୍ତ୍ରୀଙ୍କ ସଙ୍ଗେ ଆଲୋଚନା କରୁଛନ୍ତି ଏବଂ କିଭଳି ଗୃହପରିଚାଳନା ଫଳରେ ସ୍ୱଳ୍ପ-ସଞ୍ଚୟ-ଯୋଜନା ସଫଳ ଓ ସମ୍ଭବ ହୋଇ ପାରିବ, ସେ ବିଷୟରେ ବହୁ ଗମ୍ଭୀର ଭାଷଣମାନ ସ୍ତ୍ରୀଙ୍କୁ ଶୁଣାଉଛନ୍ତି ।

ସ୍ତ୍ରୀ କିନ୍ତୁ ସ୍ୱାମୀଟିକୁ ଭଲଭାବେ ବୁଝିଛନ୍ତି । ସେ ଜାଣନ୍ତି— ନାମରେ "ଧନେଶ୍ୱର" ଏଇ ସ୍ୱାମୀଟି ତାଙ୍କର, କେବଳ କଥାରେ-ଇ ସ୍ୱର୍ଗକୁ ନିଶୁଣି ବାନ୍ଧି ଦେଇପାରନ୍ତି । ସ୍ୱଳ୍ପସଞ୍ଚୟ-ଯୋଜନା ସମ୍ବନ୍ଧେ ପ୍ରସ୍ତାବ ଦେବା କଥାରେ ତାଙ୍କୁ ଅବା କେତେ କଷ୍ଟ ଲାଗେ ?

ସେ କଣ ସ୍ୱାମୀଙ୍କର ସ୍ୱଳ୍ପ-ସଞ୍ଚୟ-ଯୋଜନା ବିଷୟକ ବକ୍ତୃତା ଶୁଣିନାହାନ୍ତି ନା ଶୁଣୁନାହାନ୍ତି ? କିନ୍ତୁ ଖାଲି ବକ୍ତୃତାରେ କି ସଞ୍ଚୟ ହୁଏ ? ତେଣୁ ଧନେଶ୍ୱର ଯେତେବେଳେ ନୂତନ ଉନ୍ମାଦନା ନେଇ ଯଥାସମ୍ଭବ ଗାମ୍ଭୀର୍ଯ୍ୟ ରକ୍ଷା କରି ମନ୍ଦ୍ରସ୍ୱରରେ ରୋଷଘରେ ସ୍ତ୍ରୀଙ୍କୁ ପ୍ରସ୍ତାବ ଦେଲେ—

"ଯେଭଳି ହେଉ, ଏ ମାସରେ ତିରିଶି ଟଙ୍କା ଡାକଘରେ ରଖିବାକୁ ହେବ, ତୁମେ ସବୁ ଯେମିତି ଚଳ ।"

କମଳାଦେବୀ ସେ କଥାରେ ବିଶେଷ ଧ୍ୟାନଶୀଳା ବା ବିଚଳିତା ନ ହୋଇ ମନ ଭିତରେ ବୋଧହୁଏ ଟିକେ ହସିଲେ । ସଙ୍ଗେ ସଙ୍ଗେ ଧନେଶ୍ୱର ଆସନ୍ତା ମାସର ରୋଜଗାର ଦୁଇଶ ଟଙ୍କାରୁ କିପରି ଟ୩୦୲ ବଳକା ରଖାଯାଇପାରେ, ସେ ସମ୍ବନ୍ଧେ ଗୋଟିଏ ଖସଡ଼ା ପ୍ରସ୍ତୁତ କଲେ । ଚାଉଳ ଟ୨୫୲, ଡାଲି ଟ୧୫୲, ଦୁଗ୍ଧ ଟ୨୦୲, ମାଛ, ମାଂସ ଟ୧୦୲, ପରିବା ଓ ଅନ୍ୟାନ୍ୟ ଟ୨୦୲ ଇତ୍ୟାଦି ଇତ୍ୟାଦି । ହିସାବ ପରେ ଦେଖାଗଲା ଆଉ ଟ୪୦୲ ବଳି

ପଡ଼ୁଛି । ଧନେଶ୍ୱର ଉତ୍‌ଫୁଲ୍ଲ ହୋଇ ତାଳିଟାଏ ମାରି କହିଲେ :—

"ଶହେଶ ଟଙ୍କା କଥା ଶୁଣ; ଦଶ ଟଙ୍କା ଆକସ୍ମିକ ଦୁର୍ଘଟଣା ଲାଗି ରଖି ଆଉ ଟ୩୦୯ ନିଶ୍ଚୟ ଡାକଘରେ ରଖି ହେବ । ତୁମ୍ଭେ ଆଜିଠୀ ଖରଚପତ୍ରର ହିସାବ ରଖ ନାହିଁ । ଚନ୍ଦ୍ରଚୂଡ଼ବାବୁଙ୍କ ସ୍ତ୍ରୀ ଯେମିତି ତାଙ୍କ ଘର ଚଳାଉଛନ୍ତି, ତୁମର ସେଥିରୁ ଯଥେଷ୍ଟ ଶିକ୍ଷା କରିବାର ଅଛି । ଗୃହପରିଚାଳନାରେ ଓଡ଼ିଆଣୀମାନେ ବଙ୍ଗାଳୁଣୀଙ୍କ ପାସଙ୍ଗରେ ପଡ଼ିବେ ନାହିଁ । ତୁମେ ଦେଖ, ଏହି ହିସାବରେ ଯେମିତି ଏ ମାସ ଚଳିବ । ମୋର କିଛି ଖର୍ଚ୍ଚ ନାହିଁ । ଏତେ କଥାରୁ କଣ ମିଳୁଛି ! ଦରମା ପାଇବା ମାତ୍ରେ ମୁଁ ସେଇ ଅଫିସରୁ ସିଆଡ଼େ ସିଆଡ଼େ ଡାକଘରକୁ ଟ୩୦୯ ପଠାଇଦେବି । ବାକି ଟଙ୍କାରେ ତୁମେ ଚଳ ନ ଚଳ ।"

ଏତକ କହି ଧନେଶ୍ୱରଆତ୍ମ ସନ୍ତୋଷ ଲଭ କଲେ ଏବଂ ସତେ ବା ଟ୩୦୯ ସେ ରଖି ସାରିଲେଣି, ସେହି ଭଳି ଭାବ ଦେଖାଇ ସେ ଚୁଲି ଉପରେ ବସିଥିବା କଡ଼ାଇକୁ ଚାହିଁ କହିଲେ—

"ଏ କଣ ଭାଜିବାକୁ ବସିଛ ? ସୁଜି ? ମୁଁ ପରା ଜାଣେ, ପଇସା ସବୁ ଏଇଥିରେ ବେଶି ଖର୍ଚ୍ଚ ହୋଇ ଯାଉଛି । ଚୂଡ଼ା ଆଣ, ଚୂଡ଼ା ! ଆମେ ଏଥର ଚୂଡ଼ା-ଗୁଡ଼ ଖାଇବା । ଗୋବର୍ଦ୍ଧନ ବାବୁ ଆଠ ଶହ ଟଙ୍କା ପାଉଛନ୍ତି । ତାଙ୍କ ଘରେ ତ ସମସ୍ତେ ଚୂଡ଼ା-ଗୁଡ଼ ଖାଉଛନ୍ତି । ଆମେ ଏବେ କୋଉ ମନ୍ତ୍ରୀଙ୍କ ପୁଅ କି ? ଦେଖ, କାଲିଠାରୁ ଏ ସୁଜିଫୁଜି ବନ୍ଦ କର । ଆଉ ଦେଖ, ମାଛ କି ମାଂସ ହେଲାଦିନ ଆଉ ଡାଲି କରିବ ନାହିଁ । ହଁ, ସବୁଦିନେ ଡାଲି କରିବା ଗୋଟେ କଣ ଦରକାର ? ହଳଧରବାବୁଙ୍କ ଘରେ ତେନ୍ତୁଳପାଣି ଗୁରୁ, ଆଉ ପରିବା ଝିଙ୍କାରେ ଚଳୁଛି । ସେ ତ

ପୁଣି ଗୃରିଶ ଟଙ୍କା ଦରମା ପାଉଛନ୍ତି ! ବାସ୍ତବିକ ତୁମେ ଆଦୌ ସଂସାରକୁ ଦେଖୁ ନାହଁ । କେବଳ ରୋଷେଇ ଗଣ୍ଡେ କରିଦେଲେ ତ ସବୁ ହୋଇଗଲା ନାହିଁ । ବଜାରକୁ ଗଲେ ସିନା ଜାଣନ୍ତ ଜିନିଷପତ୍ରର ଦାମ କେତେ ? ହଁ, ଏଥରକ ଆମର ଗୃରୁ କର । ଆମେ ସବୁ ଏଥର ଗୃରୁ ଖାଇବା ।'

ଶ୍ରୀ କମଳାଦେବୀ ଦେଖିଲେ, "ଆଜ ତିରିଶ ତାରିଖ । ପ୍ରତ ମାସର ତିରିଶ ତାରିଖଠାରୁ ଆଗତ ମାସର ପାଞ୍ଚ ତାରିଖ ପର୍ଯ୍ୟନ୍ତ ସ୍ୱାମୀଙ୍କ ମୁଣ୍ଡରେ ଏହିଭଳି ରୋଗର ପ୍ରତକ୍ରିୟା ଦେଖାଯାଏ । ତା' ପରେ ୬ ତାରିଖ ଟପିଲେ, ସ୍ୱାମୀ ପୁଣି କଛିଦନ ସୁସ୍ଥ ଓ ସ୍ଥିତପ୍ରଜ୍ଞ ବ୍ୟକ୍ତି ଭଳି ସ୍ୱାଭାବକ ବ୍ୟବହାର କରନ୍ତି । ସ୍ୱାମୀଙ୍କ ପ୍ରସ୍ତାବ ଓ ଭାଷଣରେ ସେ ପୂର୍ବଭଳି ନୀରବ ରହିଥାନ୍ତେ । ମାଷ ଦରମା ପାଇବା ମାତ୍ରେ ସେଇଆଡ଼େ ସିଧା ଡାକଘରକୁ ଯଦ ସେ ୩୦ ଟଙ୍କା ପଠାଇ ଦିଅନ୍ତି, ତେବେ ଏ ମାସରେ କପରି ଘର-ଖର୍ଚ୍ଚ ଚଳିବ, ସେ କଥାରେ ସନ୍ଦେହଶୀଳା ହୋଇ ସେ କହିଲେ—

"ଘର ଶୀତ ପଡ଼ିଲାଣି । ତୁମକୁ ସେଦନୁ କହୁଛି, ପୁଅ ଲାଗି ଖଣ୍ଡେ ଗରମ ଜାମା କଣି ଆଣ; କନ୍ତୁ ତୁମେ ସେ କଥାକୁ ଜମା ଶୁଣୁ ନ ନାହଁ ।"

ଧନେଶ୍ୱର ହଠାତ୍ ଆବେଗାତଶଯ୍ୟରୁ ଖସି ଆସି ଚନ୍ତାଶୀଳ କଣ୍ଠରେ କହିଲେ—

"ପ୍ରକୃତରେ ଅନେକ ଦନ ଧରି କେବଳ ପୁଅ ଲାଗି ଖଣ୍ଡିଏ ସ୍ୱେଟର କଣିବ ବୋଲି ଭାବୁଛି । ପୁଣି ଏ ଶୀତ ଯାହା ପଡ଼ିଲାଣି, ମୋର ବି ଖଣ୍ଡିଏ ସ୍ୱେଟର ଦରକାର ହେଲାଣି । ଝିଅ ଦୁଇଟାଙ୍କ ଲାଗି ଏ ବର୍ଷ ଆଉ ଗରମ ଜାମା କଣିବା ନାହିଁ । ସେଇ

ପୁରୁଣାରେ ଚଳନ୍ତୁ । ତେବେ କେବଳ ଆମ ଦୁଇ ଜଣଙ୍କର ସ୍ୱେଟର ଲାଗି ଅନ୍ତତଃ ପନ୍ଦର ଟଙ୍କାରୁ କମ୍‌ରେ ତ ହେବ ନାହିଁ ।!!" .

ଠିକଏ ଉପରକୁ ମୁହଁ ଉଠାଇ ଧନେଶ୍ୱର କଣ୍ଠ ସମସ୍ୟା ଚିନ୍ତା କଲଭଳି ହୋଇ ଦାର୍ଶନିକ ଗଳାରେ କହିଲେ—

"ଆଚ୍ଛା, ଦେଖିବା, ଦେଖିବା ।"

ସ୍ତ୍ରୀ କହିଲେ—

"ଦେଖିବ ଆଉ କୋଉଥିରୁ ? ତିରିଶ ଟଙ୍କା ତ କହୁଚ ମେଇଅଡ଼େ ଡାକଘରେ ରଖିବ । ଆଉ କେଇଟା ଟଙ୍କା ରହିବ ଯେ..."

ଧନେଶ୍ୱର ଅଳ୍ପ ବିରକ୍ତ କଣ୍ଠରେ କହିଲେ—

"କାହିଁକି ହେବ ନାହିଁ ? ଏ ମାସର ଘରଖର୍ଚ୍ଚ ମୁଁ ବୁଝିବି । ତୁମେ କେବଳ ଚୁପ୍ ହୋଇ ଦେଖେଇ କର । ଏଇ ମାସରେ ମୁଁ ଦେଖାଇଦେବି—କିପରି ହିସାବୀ ହୋଇ ଅଳ୍ପ ଟଙ୍କାରେ ଘରଖର୍ଚ୍ଚ ଚଳାଯାଇପାରେ ।"

ତାଙ୍କ ସ୍ତ୍ରୀ ପୁଣି କହିଲେ ସ୍ଥିର ଗଳାରେ—

"ତୁମେ ଏ ମାସରେ ଘରଖର୍ଚ୍ଚ ବୁଝିବ ଯେ; କିନ୍ତୁ ଡାକଘରେ ତିରିଶି ଟଙ୍କା ରଖିଦେଲେ ଆଉ ଟଙ୍କା କୋଉଠୁ ଆସିବ ଯେ ପୁଅ ଲାଗି ସ୍ୱେଟର କିଣିବ ?"

ଧନେଶ୍ୱର ମାଆ ଆସି ପହଞ୍ଚିଲେ । ଧନେଶ୍ୱର ଟଙ୍କା ପଇସାର ଏ ସବୁ ଆଲୋଚନା ବନ୍ଦ କରିବା ଲାଗି କହିଲେ—

"ଆଚ୍ଛା, ଦେଖିବା-ଦେଖିବା, ଟଙ୍କା କୁଆଡ଼ୁ ଆସୁଛି କୁଆଡ଼େ ଯାଉଛି, ଏ ସବୁ ବିଷୟରେ ତୁମେ କଣ ଜାଣିଚ ?"

ଧନେଶ୍ୱରଙ୍କ କାଲୁଣୀ ମାଆ ଭଲ ଭାବେ ନ ଶୁଣିପାରି ତାଙ୍କ ମନଇଚ୍ଛା ଯାହା ବୁଝି କହିଲେ—

"ସବୁ ସେଇ ସବାଖାଇ ଗୃହକର୍ତ୍ତୀଙ୍କ ନଉଛୁ । ଫିଇଦିନ ଖାଲି ଆଠଣାର ଫର୍ଦ୍ଦ ସେ ନଉଛୁ । ମୁଁ କହୁଛି ପରା, ମୋ କଥା ତ କେହି କାନକୁ ନଉନାହାଁ—"

ଏଇ ବରକ୍ତକର ପରିସ୍ଥିତିରେ ବ ଧନେଶ୍ୱର ଓ କମଳା ଦେବୀ ମନ ଭିତରେ ଟିକେ ହସିଲେ ।

ସଭା ଭଙ୍ଗ ହେଲା ।

( ଦୁଇ )

ନୂତନ ମାସ ପଡ଼ିଥିଲା । ଗୃହ୍ଣି ଗୃହ୍ଣି ପାଞ୍ଚ ତାରିଖ ବି ଆସିଗଲା । ଦରମା ପାଇବା ମାତ୍ରେ ତିରିଶଟି ଟଙ୍କା ଧନେଶ୍ୱର ଡାକଘରେ ରଖି ସାରିଛନ୍ତି । ଏ ମାସର ଘରଖର୍ଚ୍ଚ ବି ସେ ନିଜେ ସ୍ତ୍ରୀ ହାତରୁ ଛଡ଼ାଇ ନିଜ ହାତକୁ ନେଇଛନ୍ତି । ମନ ଭିତରେ ଭାରି ଖୁସି । ସାତ ବର୍ଷ ଗୃହକର୍ତ୍ତା କରି ସାରିବା ପରେ ଧନେଶ୍ୱର ପାସ୍‌ବୁକ୍‌ରେ ଗୋଟିଏ ନୂତନ ଅଙ୍କ ଦେଖିଲେ—ଦୁଇ ଶହ ଟଙ୍କା—ଟ୨୦୦୲ । ବାଃ ବାଃ ! ପ୍ରତି ମାସରେ ଯଦି ଏହିଭଳି ତିରିଶ ଟଙ୍କା ଜବରଦସ୍ତି ଡାକଘରେ ରଖାଯାଏ, ତେବେ ବର୍ଷକୁ ହେଲା—ବାର ଶୂନେ ଶୂନ୍, ବାର ତିରିକ ଛତିଶି, ଏମିତି ଦେଖାହେଲା ତିନିଶ ଷାଠିଏ ଟଙ୍କା । ଏ ଦୁଇଶ ଟଙ୍କା ମିଶି ହେଲା ଟ୫୬୦୲ । ଗଲା, ତେଣିକି ତ ବଢ଼ି ଗ୍ଲାବ ସଞ୍ଚୟ । ପ୍ରତି ମାସରୁ ଟ୩୦୲ କାଟି ମିଶାଇ ମିଶାଇ ଧନେଶ୍ୱର ଏକାନିଶ୍ୱାସକେ ଯାଇ ଦଶ ହଜାର ପାଖେ ପଡ଼ିଗଲେ । ତାଙ୍କର ହଠାତ୍ ମନେହେଲା—ଏ ପ୍ୟାଣ୍ଟ ଆଉ ତାଙ୍କ ପେଟକୁ ହେଉନାହିଁ । ଭାରି କଷ୍ଟ ହେଉଛି । ପିନ୍ଧିଥିବା ହାଓ୍ୱାଇନଟି ସତେ ବା ତାଙ୍କ ଗୋଡ଼କୁ ଆଉ ପାଉନାହିଁ । ଆଉଗୋଟେ ହୁଗୁଳା ହାଓ୍ୱାଇନ୍ ନ କିଣିଲେ ଚଳିବ ନାହିଁ । ଧନେଶ୍ୱର

ଭାବିଲେ । ସେ ବୋଧହୁଏ, ଖୁବ୍ ଫୁଲୁଛନ୍ତି ଏବଂ ଏ କଥା ବି ମନେ ମନେ ଠିକ୍ କଲେ ଯେ, ସେ ହଠାତ୍ ଏପରି ଫୁଲିବାଟା କେବଳ ସଞ୍ଚୟର ପରିଣାମ ଅଟେ । ଯେତେ ଟନିକ୍ ଖାଅ, କିଛି ଲାଭ ନାହିଁ । ମାତ୍ର ସ୍ୱାସ୍ଥ୍ୟବର୍ଦ୍ଧନ ଲାଗି Silver Tonic ବା ରୌପ୍ୟ ରସାୟନ ହିଁ ଅଦ୍ୱିତୀୟ । .

ଧନେଶ୍ୱର ଦଶହଜାରି ମନ ନେଇ ଦଶ ଜଣଙ୍କ ସଙ୍ଗେ କଥାବାର୍ତ୍ତା କଲେ । ରାଜପଥରେ ଦଶହଜାରି ଚାଲିରେ ସେ ନିଜର ସ୍ୱାତନ୍ତ୍ର୍ୟ ପ୍ରକାଶ କଲେ । ନିଜଠାରୁ ଅଧସ୍ତନ କର୍ମଚାରୀ-ମାନଙ୍କ ଆଗରେ ସ୍ୱଳ୍ପସଞ୍ଚୟ ଯୋଜନାର ପରିଣାମ ସମ୍ବନ୍ଧେ ଭାଷଣ ଦେଲେ ଏବଂ ନିଜଠାରୁ ଉପରିସ୍ଥ କର୍ମଚାରୀ ଓ ସଞ୍ଚୟପ୍ରବଣ ଧର୍ମ ପରିଚିତ ବ୍ୟକ୍ତିମାନଙ୍କ ଭଳି ଦଶହଜାରି ଗଳାରେ ନିଃସଙ୍କୋଚରେ ପ୍ରକାଶ କଲେ—

"କି ଯୁଗ ଆସି ପହଞ୍ଚିଲା—ଗୋଟାଏ ଟଙ୍କା ବି ପକେଟରେ ବଳୁନାହିଁ ! ········· ଭଗବାନ ଯେତିକି ବାଉଁଶକୁ ସେତିକି ପୋଲ ଦେଇଛନ୍ତି । ········· ତେବେ ଟଙ୍କା କୁଆଡ଼ୁ ଆସୁଛି, କୁଆଡ଼େ ଯାଉଛି; ଯେ ଦଉଚି, ସେ ନଉଚି, ପୁଣି ବି ଦଉଚି, ଦେଲବାଲା ଦଉଚି ନଉଚି, ଆମର କୋଉଥିରେ ହାତ ଅଛି ?"

ପନ୍ଦର ତାରିଖ ପର୍ଯ୍ୟନ୍ତ ଧନେଶ୍ୱର ତାଙ୍କ ସଂସାରକୁ ନିଜ ମନ ମୁତାବକ ଚଳାଇଲେ । ନିଜେ ଘରଖର୍ଚ୍ଚ ବୁଝୁଥିବାରୁ ଓ ସେ ଛଅଶି ଟଙ୍କା ମୂଳରୁ ଡାକଘରେ ଜମା ରଖିଦେଇ ଥିବାରୁ ସେ ମନଇଚ୍ଛା ପରିବା ଓ ମାଛ କିଣିଲେ । ଆତ୍ମସନ୍ତୋଷରେ ବେଶି ବେଶି ବଜାର ସଉଦା କଲେ ଓ ଦଶହଜାରି ମନରେ ଭିକାରି ବୈଷ୍ଣବମାନଙ୍କୁ ଘରଦ୍ୱାରେ ଦୋ ପଇସି, ଅଣି ଇତ୍ୟାଦି ଅକୁଣ୍ଠିତ ଭାବେ ଦାନକଲେ ।

କିନ୍ତୁ ପନ୍ଦର ତାରିଖ ପରେ ଦିନେ ଧନେଶ୍ୱର ଅନୁଭବ କଲେ ଯେ ଅବଶିଷ୍ଟ ପନ୍ଦର ଦିନ ଚଳିବା ଲାଗି ତାଙ୍କ ପାଖେ ଆଉ ଟଙ୍କା ନାହିଁ । ଦାଣ୍ଡପିଣ୍ଡାରେ ବସି ସେ ଏହି କଥା ଚିନ୍ତା କରୁଛନ୍ତି, ଏମନ୍ତ ସମୟରେ ପୋଷ୍ଟମ୍ୟାନ ହାତରୁ ଖଣ୍ଡେ ଜରୁରୀ ଚିଠି ପାଇ ସେ ଖାମ୍ ଖୋଲିଲେ । ସ୍ତ୍ରୀ ପାଖରେ ଠିଆ ହୋଇଛନ୍ତି । ଚିଠିରେ ଶହେ ମାଇଲ ପଥ ରେଳଯାତ୍ରା କରିବା ଲାଗି ଅକସ୍ମାତ୍ ଜବରଦସ୍ତି ନିମନ୍ତ୍ରଣ ଆସିଥିଲା ।

ନିମନ୍ତ୍ରଣ ? ? ?

ସ୍ତ୍ରୀଙ୍କର ବିସ୍ମୟ କଟାଇବା ଲାଗି ଧନେଶ୍ୱର ଭାବଗମ୍ଭୀର କଣ୍ଠରେ ଗଦ୍ୟକବିତା ଆବୃତ୍ତି କଲା ଭଳି କହିଲେ—

"ହଁ, ଆପାତତଃ ଏହାକୁ ନିମନ୍ତ୍ରଣ ରୂପେ ଗ୍ରହଣ କରିବାକୁ ହେବ ।" ଜଣେ ପାଶ୍ଚାତ୍ୟ କବିଙ୍କର "ବୋଲି" ଉଦ୍ଧାର କରି ସେ ପୁଣି କହିଲେ—

ଅମୁକ କବିଙ୍କ ମତାନୁସାରେ ଜୀବନର ପ୍ରତ୍ୟେକ ଆକସ୍ମିକ ଦୁର୍ଘଟଣାକୁ ସ୍ୱାଗତ କର, ଦୈବୀ ସୁଯୋଗରୂପେ । ହାତର ଲୁହା ବେଡ଼ିକୁ ମନେକର ସୁନାର ବଳୟ.........
ରୋଗର ଯନ୍ତ୍ରଣାକୁ ଧରିନିଅ ଭୋଗର ପ୍ରତିକ୍ରିୟା ବୋଲି.........
ଆଉ ଦୁର୍ଭାଗ୍ୟର ତାଗିଦାକୁ କୁହ ସୌଭାଗ୍ୟର ନିମନ୍ତ୍ରଣ— ତାହାହେଲେ ବଞ୍ଚିବା ହେବ ସାର୍ଥକ, ଆଉ ଜୀବନ ହେବ ସହଜ ଓ ସୁବିଧା...

କମଳାଦେବୀ ଧନେଶ୍ୱରଙ୍କର ପାଶ୍ଚାତ୍ୟ କାବ୍ୟଦର୍ଶନ ନ ଶୁଣି ଚିଠିଟିକୁ ନିଜେ ପଢ଼ିସାରି ଘଡ଼ିଏ ଗୁମ୍ ମାରି ବସିଲେ । ଧନେଶ୍ୱରଙ୍କ ଶ୍ୱଶୁର ଅର୍ଥାତ୍ କମଳାଦେବୀଙ୍କ ବୃଦ୍ଧ ପିତା ମାରାତ୍ମକ ରୋଗଶଯ୍ୟାରେ—କନ୍ୟା ଓ ଜାମାତାଙ୍କୁ ଦେଖିବା ଲାଗି ଜରୁରୀ ଚିଠି ପଠାଇଛନ୍ତି ।

ଏଥରିଙ୍କୁ ମିଶାଇ ବିଭିନ୍ନ ସ୍ଥାନ ଓ ପରିସ୍ଥିତିରୁ ଏହିଭଳି ଅକସ୍ମାତ୍ ଜବରଦସ୍ତି ନିମନ୍ତ୍ରଣ, ଧନେଶ୍ବର ଏହି ବର୍ଷକ ମଧ୍ୟରେ ପ୍ରାୟ ପାଞ୍ଚ ଥର ବାଧ ହୋଇ ରକ୍ଷାକଲେଣି ଏବଂ ନିଜର ଅନିଚ୍ଛା ସତ୍ତ୍ବେ ସେ ଏହି ନିମନ୍ତ୍ରଣ ରକ୍ଷା କରିବାରେ ବହୁ ଅର୍ଥ ଏ ବର୍ଷକ ମଧ୍ୟରେ ଅପବ୍ୟୟ କଲେଣି । ଏହି ବର୍ଷକ ମଧ୍ୟରେ ସାନ ଶଳାର ବାହାଘର ଲାଗି ଧନେଶ୍ବର ଉପହାରରେ ଷାଠିଏଟି ଟଙ୍କା ଖର୍ଚ୍ଚ କରିଛନ୍ତି । ବଦଳରେ ପାଇଛନ୍ତି ନିଜେ ଖଣ୍ଡେ ଦଶ ଟଙ୍କିଆ ଶାନ୍ତିପୁରୀ ଜୋଡ଼ ଓ ସ୍ତ୍ରୀ ପାଇଛନ୍ତି ଖଣ୍ଡେ ବାର ଟଙ୍କିଆ କଳାମେଘୀ ଶାଢ଼ୀ । ମଝିଆଁ ଶାଳୀର ବାହାଘରରେ ସେହିଭଳି ପଚିଶ ଟଙ୍କା ଖରଚ କରି ବଦଳରେ ସେ ପଚାଶ ଟଙ୍କାର ମାଲ ଲାଭ କରିଛନ୍ତି । ନିଜ ସ୍ତ୍ରୀଙ୍କର ଦେହ ଭଲ କରିବା ପାଇଁ ସେ ପଚିଶ ଟଙ୍କାରୁ କମ୍ ଖର୍ଚ୍ଚ କରିଥିବେ ନାହାନ୍ତି । ନିଜ ସାନ ଭାଇର ବ୍ରତଘରରେ ସେ ଏଇ ଅଳ୍ପଦିନ ତଳେ ଖର୍ଚ୍ଚ କରିଛନ୍ତି ଶହେ ଟଙ୍କା ଓ ପାଇଛନ୍ତି ଚେଙ୍ଗା...

ପୁଣି ଆଜି ଏଇ ନିମନ୍ତ୍ରଣ ! ବିରକ୍ତିରେ, ଅନୁଶୋଚନାରେ ଧନେଶ୍ବରଙ୍କର ଭୂଇଁରେ ମୁଣ୍ଡପିଟିବା କଥା । ମାତ୍ର ଧନେଶ୍ବର ଆଉ ଗୁଡ଼ାଏ ବେଶି ଚିନ୍ତା କଲେ ନାହିଁ । ସମସ୍ତ ଦୁଃଖ ଓ ଅନୁଶୋଚନାକୁ ବାୟୁରେ ପରିଣତ କରି ଖୁବ୍ ଜୋର୍‌ରେ ନାକ ବାଟେ ଛାଡ଼ିଦେଲେ । ବିଛଣା ଓ ଟ୍ରଙ୍କ ସଜଡ଼ା ସଜଡ଼ି କରିବାକୁ ସ୍ତ୍ରୀଙ୍କୁ କହି ସେ ଛୁଟି ଲାଗି ଦରଖାସ୍ତ ପଠାଇଦେଲେ । କେହି ଏ ଆକସ୍ମିକ ଦୁର୍ଘଟଣା ଉପରେ କୌଣସି ଆଲୋଚନା କଲେ ନାହିଁ । ଗମ୍ଭୀର ଓ ନିର୍ଲିପ୍ତ ଭାବେ ସମସ୍ତେ ଖାଇପିଇ ଚଞ୍ଚଳ ଷ୍ଟେସନକୁ ଯିବା ଲାଗି ପ୍ରସ୍ତୁତ ହେଲେ । ସମସ୍ତେ ଏଇ ଦୁର୍ଘଟଣାଟିକୁ ସ୍ବାଭାବିକ ଭାବେ ଗ୍ରହଣ କରିବାକୁ ନିଜ ଭିତରେ ଅନୁମାନ

ଚେଷ୍ଟା କରୁଛନ୍ତି ମାତ୍ର ନିଜର ବେଦନାକୁ ପ୍ରକାଶ କରିବାକୁ କେହି କାହା ପାଖେ ଯାଇ ନୁହନ୍ତି । ତେଣୁ କୌଣସି ଉପଦେଶ, ଅନୁଯୋଗ ବା ବିରକ୍ତି ପ୍ରଦର୍ଶନ କରି ସମସ୍ତେ ପରିସ୍ଥିତିକୁ ସମ୍ଭାଳି ନେବାକୁ ପ୍ରାଣାନ୍ତକ ଭାବେ ଚେଷ୍ଟାକଲେ ।

କିନ୍ତୁ ଏଇ ବିପଦ କାଳରେ ବି ଧନେଶ୍ୱରଙ୍କ ମୁଣ୍ଡରେ ଯୁବା-ପୁରୁଷସୁଲଭ ଗୋଟିଏ କୌତୂହଳ ବା କ୍ରୀଡ଼ାମନୋବୃତ୍ତି ଡ଼ିକିଲା । ବିପଦକାଳରେ ବା ଏହିଭଳି ନିରୁପାୟ ଆକର୍ସିକ ଦୁର୍ଘଟଣାବେଳେ ହିଁ ତାଙ୍କ ମୁଣ୍ଡରେ ଗୋଟିଏ କୌତୁକାବହ କଥା ଜୁଟିଥାଏ । ଏ ଯେପରି ବିପଦ ବା ଦୁଃଖର ବ୍ୟଙ୍ଗଚିତ୍ର ଆଙ୍କି ଆମୋଦ ପାଇବା କଥା !

ପଡ଼ଶାଘରୁ କୋଡ଼ିଏଟି ଟଙ୍କା ଧାର କରି ଧନେଶ୍ୱର ତାକୁ ଗୋପନରେ ପକେଟ ମଧ୍ୟରେ ରଖିନେଲେ । ଆଉ ସ୍ତ୍ରୀଙ୍କୁ ଧୀର ଗଳାରେ କହିଲେ—

"ଏଥର ଯିବା ଆସିବା ଖର୍ଚ୍ଚଟା ତୁମେ ତୁଲାଅ । ମୋ ପାଖେ ଆଉ ଜମା ଟଙ୍କା ନାହିଁ ।"

ସ୍ତ୍ରୀ କହିଲେ—

"ମୋ ପାଖେ ଆଉ ଟଙ୍କା କାହିଁ ମ ? ତୁମେ ତ ଘରଖର୍ଚ୍ଚ ବୁଝୁଚ..."

ଧନେଶ୍ୱର ଭାବିଲେ—ସ୍ତ୍ରୀ ନିଶ୍ଚୟ କିଛି ଟଙ୍କା ହାତରେ ନେଉଛନ୍ତି । ସ୍ତ୍ରୀଲୋକଗୁଡ଼ାକ ଲୁଗୁଲୁଗିରେ ଟଙ୍କା କାରବାର ଚମତ୍କାର କରିପାରନ୍ତି । ତା' ନ ହେଲେ "ଟଙ୍କା ନାହିଁ"— "ଟଙ୍କା ନାହିଁ" କହି କହି ମାସକଯାକ କମଳାଦେବୀ ଘରଖର୍ଚ୍ଚ ପୁଣି ଚଳାନ୍ତି କିପରି ? ଧନେଶ୍ୱର ସ୍ଥିର କଲେ, ସେ କୋଡ଼ିଏ ଟଙ୍କା ସାଙ୍ଗରେ ନେଉଛନ୍ତି ବୋଲି ସ୍ତ୍ରୀଙ୍କୁ କହିବେ ନାହିଁ । ଏ

ଯାତ୍ରାକାଳରେ ସ୍ତ୍ରୀ ବାଟଖର୍ଚ୍ଚ ତୁଲାନ୍ତୁ । ସେ ଟଙ୍କାପଞ୍ଝାରେ ରହିବେ । ନିଜ ପାଖେ ଆଦୌ ଟଙ୍କା ନାହିଁ ବୋଲି ସ୍ତ୍ରୀଙ୍କୁ ବରାବର କହୁଥିବେ ଏବଂ ଉପଯୁକ୍ତ ବେଳା ପହୁଞ୍ଚିଲେ ସେ ନିଜର ଗୁପ୍ତଧନ ଅକସ୍ମାତ୍ ବାହାର କରି ଖର୍ଚ୍ଚ କରିବେ ଓ ଏହି ଭଳି ଗୁପ୍ତଧନର ହଠାତମଠ ଖେଳ ଦେଖାଇ ସେ ସ୍ତ୍ରୀଙ୍କୁ ବିସ୍ମୟାଭିଭୂତ କରିଦେବେ । ବାଃ ବାଃ ! ଧନେଶ୍ୱର ମନ ଭିତରେ ଅତି ମାତ୍ରାରେ ଫୁଲିଯାଇ, ଖୁସିଥାଏ ହୋଇ ଫୁଲ୍ ପ୍ୟାଣ୍ଟକୁ ପେଟ ଉପରକୁ ଟେକିଲେ । ଆଉ କହିଲେ—

"ଯୁଆଡ଼ୁ ହେଲେ ଟଙ୍କା କେଇଟା ଏଥର ବାଟଖର୍ଚ୍ଚ କର, କଣ ଆଉ କରାଯାଏ ?"

× × ×

ରିକ୍‌ସା ଆସିଲା । ଦୁଇ କନ୍ୟା ଓ ଏକ ପୁତ୍ର ପରିବେଷ୍ଟିତ ଧନେଶ୍ୱର ପରିବାର ରିକ୍‌ସାରେ ଅଧିରୂଢ଼ ହୋଇ ଷ୍ଟେସନରେ ପହୁଞ୍ଚିଲେ ।

× × ×

ଟ୍ରେନ୍ ଭିତରେ ଧନେଶ୍ୱର ସ୍ତ୍ରୀଙ୍କର ସାମନା ବେଞ୍ଚରେ ବସିଲେ । ସ୍ୱାମୀ-ସ୍ତ୍ରୀ କେହି କାହାକୁ କିଛି କଥା କହିଲେ ନାହିଁ । କଣ ବା କଥାବାର୍ତ୍ତା ସେମାନେ କରନ୍ତେ ? ସ୍ତ୍ରୀ ମୁହଁକୁ ହାଣ୍ଡି ପରି କରି ଫାଲୁ ଫାଲୁ ଆଖିରେ ଗୃହିଁ ରହିଛନ୍ତି । କଣ ଭାବୁଛନ୍ତି ? କିଛି ଭାବୁଛନ୍ତି କି ନାହିଁ, ସେ କଥା ତାଙ୍କ ମୁହଁରୁ ଜାଣିବା କଷ୍ଟକର । ଧନେଶ୍ୱର କିନ୍ତୁ ତଳକୁ ମୁହଁ ପୋତି ବସି ରହିଛନ୍ତି । ସେ ଯେତେବେଳେ କିଛି ଚିନ୍ତାକରି ପାରନ୍ତି ନାହିଁ, ସେତେ-ବେଳେ ତଳକୁ ମୁହଁ ମୋଡ଼ି ସେ ପରିସ୍ଥିତିକୁ ଅନୁଭବ କରନ୍ତି ।

ତାଙ୍କର ମନେହେଲା, ସତେ ବା ସେ ନିଜେ କିଛି କରୁନାହାନ୍ତି । ସେ କେବଳ ଭାଗ୍ୟ-ରଥର ଗୋଟିଏ ଚକ ମାତ୍ର । କେଉଁ ଅଦେଖା ଇଞ୍ଜିନ୍‌ର ଘୋଷରାରେ ସେ ଚକ ଭଳି କେବଳ ଲକ୍ଷ୍ୟହୀନ ଭାବେ ଘୂରି ଲାଗିଛନ୍ତି । ଟ୍ରେନ ଘୂରୁଛି, ପୃଥିବୀ ଘୂରୁଛି, ସୂର୍ଯ୍ୟ ବି ଘୂରୁଛନ୍ତି, ଘୂରୁଛନ୍ତି, ଅସୀମ ଗ୍ରହ, ଉପଗ୍ରହ-ଘୂରୁଛନ୍ତି ଅସୀମ ଅଣୁ ପରମାଣୁ । ଏମାନଙ୍କ ସଙ୍ଗେ ବି ଧନେଶ୍ୱର ତାଙ୍କର ପରିବାର ସହ ଏକ ଅଜଣା କେନ୍ଦ୍ରର ପରିଧିରେ ଘୂରି ବୁଲୁଛନ୍ତି । ନିଜର ସ୍ୱାତନ୍ତ୍ର୍ୟ ବୋଲି କିଛି ନାହିଁ । ଟ୍ରେନର ଚକ ଭଳି ଜୀବନ ଘୂରୁଛି । ଏଇ ଘୂର୍ଣ୍ଣନ ଭିତରେ ବାରି ହେଉ ନାହିଁ ଅନ୍ଧାରରୁ ଆଲୁଅକୁ ଅଲଗା କରି, ଦୁଃଖଠାରୁ ସୁଖକୁ ଅଲଗା କରି, ହାସ୍ୟଠାରୁ କ୍ରନ୍ଦନକୁ ଅଲଗା କରି ସବୁ ଏକାକାର; ଘୂର୍ଣ୍ଣନ ଭିତରେ ସବୁ ଏକାକାର । ଧନେଶ୍ୱର ଏଇ ଘୂର୍ଣ୍ଣନଟାକୁ-ଇ ଅନୁଭବ କରିଛନ୍ତି । ସେ ଘରେ ଥିଲେ । ସେଠି ଘର, ବଗିଚା, ଅଫିସ ଆଉ ବଜାରରେ ଘୂରୁଥିଲେ । ହଠାତ୍ ପୁଣି ରେକ୍‌ସା ତାଙ୍କୁ ଷ୍ଟେସନକୁ ଘୂରାଇ ଆଣିଲା । ସଙ୍ଗେ ସଙ୍ଗେ ଟ୍ରେନ୍ ପୁଣି ତାଙ୍କୁ ଆଗକୁ ଘୂରାଇ ଦେଉଛି । ସେ କଣ ଏଇ ସବୁ ଘୂରିବା ଲାଗି ନିଜେ ପ୍ରସ୍ତୁତ ଥିଲେ ପୂର୍ବରୁ ? ତାଙ୍କର ମନେ-ପଡ଼ୁଛି ଷ୍ଟେସନରେ ଚଞ୍ଚଳ ଗତିଶୀଳ ଜନତା ।

କିଏ ଟ୍ରେନ ଚଢ଼ୁଛି, କିଏ ବା ଓହ୍ଲାଉଛି । ସମସ୍ତେ ଖାଲି ବିନା ଯୋଜନାରେ ଘୂରୁଛନ୍ତି ।

ହଠାତ୍ ଟ୍ରେନ୍‌ରେ ବ୍ରେକ୍ ଲାଗି ଟ୍ରେନ୍ ଗୋଟିଏ ଷ୍ଟେସନରେ ଅଟକିଲା । ଧନେଶ୍ୱର ତଳୁ ମୁହଁ ଉଠାଇ ସ୍ତ୍ରୀଙ୍କ ଆଡ଼କୁ ଚାହିଁଲେ । ଛୁଆଟି ମାଆଠାରୁ କ୍ଷୀର ଶୋଷୁଛି । କମଳାଦେବୀ ମୂଳରୁ ଯେଉଁ ଭଙ୍ଗୀରେ ବସିଥିଲେ, ତା'ର

ପରିବର୍ତ୍ତନ ହୋଇନାହିଁ । ମୁହଁ ଆଉ ଆଖିର ଭଙ୍ଗୀରେ ଏକ ଉଦ୍‌ବେଗହୀନ ନାଳିପ୍ତ ସ୍ଥିରତା ।

ସ୍ତ୍ରୀଙ୍କ ଭଙ୍ଗୀ ଆଉ ଗୃହାଣୀରେ ଏଇ ସ୍ଥିରତାକୁ ଧନେଶ୍ୱର ପୁଣି ଥରେ ଅନୁଭବ କଲେ । ସେ ଭାବିଲେ, ଧରାଯାଉ ଏଇ ସ୍ତ୍ରୀ ଲୋକଟି ମୋର କେନ୍ଦ୍ର । ଏହି କେନ୍ଦ୍ର ସ୍ଥିର । ମୁଁ ଏହାର ଗୋଟିଏ ଗ୍ରହ ପରି ଏହାର ଚାରିପଟେ ଘୂରୁଅଛି ।

ଟ୍ରେନ ପୁଣି ଚାଲିଲା—

ସ୍ତ୍ରୀଙ୍କୁ ସ୍ଥିର କେନ୍ଦ୍ର ମନେ କରି, ଧନେଶ୍ୱର ତାଙ୍କୁ ମୁହଁ ପୋଡି ପୁଣି ଥରେ ଘୂରିଲେ ମନେ ମନେ—

ସ୍ତ୍ରୀ ବସିଛନ୍ତି ପଲଙ୍କ ଉପରେ । ସାରୁରୁ ଗ୍ରେପ୍ ଛଡ଼ାଉଛନ୍ତି । ଆଖିର ଗୃହାଣୀ ସ୍ଥିର, ଗମ୍ଭୀର, ଉଦ୍‌ବେଗହୀନ । ଧନେଶ୍ୱର ବ୍ୟାଗରୁ ପରିବା ଅଜାଡ଼ୁଛନ୍ତି—ଆଳୁ, କଦଳୀ, ବାଇଗଣ, ପିଆଜ ।

ପୁଣି ଘୂରୁଛନ୍ତି—

ଦୁଧ, ମାଛ, ଜାମା, ମାଠିଆ, ଚାଉଳ ଆଉ ମୂଷାଯନ୍ତା ।

ପୁଣି ଘୂରୁଛନ୍ତି—

ଇନ୍‌ସୁରାନ୍‌ସ, ସେଭିଙ୍ଗ୍‌ସ ବ୍ୟାଙ୍କ୍, ହାତ ଉଧାରି ।

ପୁଣି ଘୂରୁଛନ୍ତି—

ଶଳା ବାହାଘର, ଶାଳୀ ବାହାଘର । ପୁତୁରା ବ୍ରତଘର ।

ପୁଣି ଘୂରୁଛନ୍ତି—

ଡାକ୍ତରଖାନା, ରକ୍ତହୀନତା, ଇଂଜେକ୍‌ସନ, କମଳାଲେମ୍ବୁ ।

ପୁଣି ଘୂରୁଛନ୍ତି—

ବୁଢ଼ା ଶ୍ୱଶୁର, ବହୁମୂତ୍ର, ରକ୍ତଚାପ, ପୁଞ୍ଜରୋଗ ।

ପୁଣି ଘୂରୁଛନ୍ତି—

କଟକ, ପୁରୀ, ବାଲେଶ୍ୱର, ସମ୍ବଲପୁର ।

ଟ୍ରେନ୍ ଗୃଲିଛି । ଧକାଧକ୍—ଧକାଧକ୍ ଧକାଧକ୍ !

ଧନେଶ୍ୱର ତଳକୁ ମୁହଁ ପୋତି ଟ୍ରେନ୍‌ର ଧକାଧକ୍ ସଙ୍ଗେ ତାଳ ପକାଇ ମନ ଭିତରେ ଖୁବ୍ ଜୋର୍‌ରେ ଘୂରି ଗୃଲିଛନ୍ତି । ସ୍ତ୍ରୀ ସେହିଭଳି ଗମ୍ଭୀର ହୋଇ ବସି ରହିଛନ୍ତି । ହଠାତ୍ ଧନେଶ୍ୱର ପେଟ ଭିତରେ ଅସ୍ୱସ୍ତିକର ଆଲୋଡ଼ନ ଅନୁଭବ କଲେ । ଗଳ୍ ଗଳ୍ ହୋଇ ଯାହା ଖାଇଥିଲେ, ବାନ୍ତି କରି ପକାଇଲେ । ଟ୍ରେନର ଗତି କମି ଆସୁଛି । ଗୋଟିଏ ଷ୍ଟେସନରେ ଗାଡ଼ି ବନ୍ଦ ରହିଲା । କମଳାଦେବୀ ପୁଅକୁ ବଡ଼ଝିଅ ହାତରେ ଦେଇ ପୂର୍ବ ପରି ନିର୍ବିକାର ଚିତ୍ତରେ ଧନେଶ୍ୱରଙ୍କ ପିଠି ଆଉଁଷିଲେ । ତାଳରୁ ପାଣି ଦେଇ କୁଳୁକୁଞ୍ଚା କରାଇଲେ । କମଳାଦେବୀ ପାଣି ଡାଳି କାମେରାରୁ ବାନ୍ତି ସଫା କଲେ ଏବଂ ଗମ୍ଭୀର ଭାବେ ଦୃଢ଼ ଗଳାରେ ସ୍ୱାମୀଙ୍କୁ ଆଦେଶ ଦେଲେ—

"ସ୍ଥିର ହୋଇ ସେଇ ବେଞ୍ଚ ଉପରେ ଶୋଇପଡ଼ ।" ଧନେଶ୍ୱର ସ୍ତ୍ରୀଙ୍କର ପରିଚର୍ଯ୍ୟାରେ ଖୁସି ହୋଇ ଓ ତାଙ୍କର ଉଦ୍‌ବେଗହୀନତାରେ ଦୁଃଖିତ ହୋଇ ସ୍ଥିର ଭାବେ ଶୋଇ ରହିଲେ। ଗାଡ଼ି ପୁଣି ଗୃଲିଲା ।

ଧନେଶ୍ୱର ପରିବାର ଶ୍ୱଶୁରଘରେ ପହଞ୍ଚିଲେ । ଧନେଶ୍ୱର ବୁଝିଲେ ଯେ ରୋଗ୍‌ଣ ବୃଦ୍ଧ ଶ୍ୱଶୁରଙ୍କ ଅବସ୍ଥା ଅନେକ ପରିମାଣରେ ଭଲ ଅଛି । ଏମାନଙ୍କୁ ଦେଖି କେହି ବିଶେଷ ଉଦ୍‌ବେଗଶୀଳ ବା ବିଚଳିତ ହେଲେ ନାହିଁ । ସମସ୍ତେ ତାଙ୍କର ଉପସ୍ଥିତିକୁ ସହଜ ଓ ସ୍ୱାଭାବିକ ଭାବରେ ଗ୍ରହଣ କଲେ ।

ଶ୍ୱଶୁର ଭଲ ଅଛନ୍ତି ଜାଣି ଧନେଶ୍ୱର କେତେକ ପରିମାଣରେ ଆଶ୍ୱସ୍ତ ହେଲେ । ରକ୍ତଗୃପ ରୋଗ । ବୃଦ୍ଧାବସ୍ଥା— ମଝିରେ

ମଝିରେ ଉଦ୍ବେଗଜନକ ପରିସ୍ଥିତି ପହୁଞ୍ଚଯାଏ । ସମସ୍ତେ ବ୍ୟସ୍ତ ହୋଇ ଉଠନ୍ତି । ଗୃହଅଟାଳି ଜଟୁଗୃହ ହୋଇ ଯାଏ । ହଠାତ୍ ଧନେଶ୍ୱରଙ୍କର ମନ ପୁଣି ଖରାପ ହେଲା । ବୃଥାଟାରେ କୋଡ଼ିଏ ତିରିଶିଟି ଟଙ୍କା ଅପବ୍ୟୟ ହେଲା । ଏ ମାସରେ ୩୦ ଟଙ୍କା ଡାକଘରେ ଜମା ରଖିଥିବା ମନେ ପକାଇ ସେ ଭିତରେ ଭିତରେ ଘୋର ବ୍ୟସ୍ତ ହୋଇ ଉଠଲେ । ସ୍ତ୍ରୀଙ୍କ ଆଡ଼କୁ ଅନାଇଲେ; ମାତ୍ର ତାଙ୍କ ମୁଖରେ କୌଣସି ଉତ୍ତେଜନା ବା ବିରକ୍ତିକର ଭଙ୍ଗୀର ଚିହ୍ନ ନାହିଁ । ସେ ଯେପରି ସୁଖେଷୁ ବିଗତସ୍ପୃହ ଦୁଃଖେଷ୍ୱନୁଦ୍ବିଗ୍ନମନା ଏକ ଚିରନ୍ତନ ନାରୀମୂର୍ତ୍ତି ! ! ଧନେଶ୍ୱର ଦିନେ ଶ୍ୱଶୁରଘରେ ରହି ଆସନ୍ତା ଦିନ ସକାଳ ଗାଡ଼ିରେ ପୁଣି କର୍ମସ୍ଥଳୀକୁ ଫେରି ଆସିବାକୁ ସ୍ଥିର କଲେ ।

( ୩ )

ତତ୍ପର ଦିନ ରବିବାର । ଧନେଶ୍ୱର ପରିବାର ରେକ୍ସାରେ ବସି ଷ୍ଟେସନ୍‌କୁ ବାହାରିଲେ । ରବିବାର ଯୋଗୁଁ ବଜାରରେ ଅନେକ ଦୋକାନ ବନ୍ଦ ରହିଛି । ଦଶଟାବେଳେ ଗାଡ଼ି ଆସିବ । ସେମାନେ ସକାଳ ଆଠଟାରୁ ଶ୍ୱଶୁରଘରୁ ବାହାରି ଆସିଛନ୍ତି । ବାଟରେ ବଜାର ଭିତରେ ରେକ୍ସା ଅଟକାଇ ହଠାତ୍ ଧନେଶ୍ୱର, ତଳକୁ ଓହ୍ଲାଇଲେ । ସ୍ତ୍ରୀଙ୍କ ଅଜାଣତରେ ନିଜ ପାଖରେ ଥିବା ଗୁପ୍ତଧନକୁ ଖର୍ଚ୍ଚ କରି ହଠାତ୍ ଖେଳ ଦେଖାଇବାର ଏହା ହିଁ ଉପଯୁକ୍ତ ସମୟ । ଧନେଶ୍ୱର ଫଳ ଦୋକାନରୁ କିଛି ଫଳ କିଣିଲେ । ସ୍ତ୍ରୀଙ୍କ ଲାଗି ଖଣ୍ଡିଏ ଭଲ ଦାମିକା ବ୍ଲାଉଜ୍ ମଧ୍ୟ କିଣିଲେ । ଜୋତା ଦୋକାନକୁ ଯାଇ ସ୍ତ୍ରୀଙ୍କ ଲାଗି ହଳେ ଭଲ ଚପଲ କିଣି ମୁହଁରେ ସ୍ମିତହାସ୍ୟ

ଉଲୁଟାଇ ରସିକା ନାଗରଙ୍କ ପରି ରେକ୍ସାରୂଢ଼ା ସ୍ତ୍ରୀଙ୍କ ମାଖରେ ପ୍ରେମର ଅର୍ଘ୍ୟ ଧରିବା ଭଙ୍ଗୀରେ ଠିଆହେଲେ । ସ୍ତ୍ରୀଙ୍କ ମୁହଁରେ କିନ୍ତୁ ସେହି ଏକାଭଳି ନିର୍ଲିପ୍ତ ଓ ଗମ୍ଭୀର ଭଙ୍ଗିମା ।

କମଳାଦେବୀ କହିଲେ—

"ମୋର ସିଲେଇ ଯନ୍ତ୍ରଟା" ଭାଙ୍ଗି ଯାଇଛି ।

ହଁ, ଗୋଟାଏ ବଡ଼ ଆଲୁମିନିଅମ୍ ହାଣ୍ଡି ବି ଦରକାର, ସେଗୁଡ଼ାକ ଏଠି ଭାରି ଶସ୍ତା । ଗୋଟେ କିଣିନେଲେ ଯାଆନ୍ତା, ତୁମ ପାଖେ ଆଉ ପଇସା ହେବ ?"

ଧନେଶ୍ୱର ଅତି ମାତ୍ରାରେ ଫୁଲିଯାଇ ନିଜକୁ ରାଜା ସୌଦା-ଆରବ ବୋଲି ମନେ କରି ପ୍ଲାଷ୍ଟିକ୍ ମନିବ୍ୟାଗ୍ ଟା ଗୁପ୍ତ ପକେଟରୁ କାଢ଼ି ଧରିଲେ, ଆଉ ନବାବ୍ଙ୍କ ଠାଣିରେ କହିଲେ—

"ତୁମର ଯାହା ଯାହା ଦରକାର କିଣି ନିଅ, ପଇସା ଅଛି କି ନାହିଁ, ସେ ବିଷୟରେ ତୁମ ମୁଣ୍ଡ ଘ ଉଛି କାହିଁକି ?"

ଉତ୍ତର ଶୁଣି କିନ୍ତୁ ସ୍ତ୍ରୀଙ୍କ ମୁହଁରେ ଭଙ୍ଗୀର କିଛି ପରିବର୍ତ୍ତନ ହେଲ ନାହିଁ । ସିଲେଇଯନ୍ତ୍ର କିଣାହେଲା । ଆଲୁମିନିଅମ୍ ହାଣ୍ଡି କିଣାଗଲା, କିଣା ବି ଗଲା ଗୋଟାଏ ସାବୁନ୍ ଖୋଳ, ଆଉ ଗୋଟାଏ ଲୁହା କରଚୁଲ୍ଲୀ ।

ମାତ୍ର ଧନେଶ୍ୱରଙ୍କ ମନ କାହିଁକି କେଜାଣି ଭାରି ଖରାପ ହୋଇଗଲା । ତାଙ୍କ ପାଖେ ଆଦୌ ଟଙ୍କା ନାହିଁ ବୋଲି ସେ ମୂଳରୁ ସ୍ତ୍ରୀଙ୍କୁ କହିଦେଇଛନ୍ତି । ଆସିବାବେଳର ବାଟଖର୍ଚ୍ଚଟା ବି ସେ ଖର୍ଚ୍ଚ ନ କରି ସ୍ତ୍ରୀଙ୍କଦ୍ୱାରା କରାଇଛନ୍ତି । ଫେରିବାବେଳର ଖର୍ଚ୍ଚ ମଧ୍ୟ ସ୍ତ୍ରୀଙ୍କୁ ବହନ କରିବାକୁ ପଡ଼ିବ ବୋଲି ସେ କାଲି ଘରୁ ବାହାରିବାବେଳୁ ସତର୍କବାଣୀ ଶୁଣାଇ ଦେଇଛନ୍ତି, ଅଥଚ ଏପରି ଆକସ୍ମିକ ଭାବରେ ସ୍ତ୍ରୀଙ୍କ ଆଗରେ, ପୁଣି ସ୍ତ୍ରୀଙ୍କ ପାଇଁ ସେ

ଯେ ଅକାତରେ ଟଙ୍କା ଖର୍ଚ୍ଚ କରି ଏହି ହଟଚମଟ ଖେଳ ଉଲ୍ଲସିତ ହୋଇ ଦେଖାଇଛନ୍ତି; ଏଥିରେ କଣ ଆଶ୍ଚର୍ଯ୍ୟ ହେବାର କିଛି ନାହିଁ ? ? ସ୍ୱାଭାବିକ ଭାବରେ ଯେ କୌଣସି ପତ୍ନୀ ଏଥିରେ ଉଲ୍ଲସିତ ହୁଅନ୍ତା; ବିସ୍ମୟପୂର୍ଣ୍ଣ ଆଖିରୁ ପ୍ରଶଂସା ଓ ମୁଗ୍ଧତାର ଜ୍ୟୋତି ଝୁଣି ଝୁଣି ମେ ହସି ହସି ହୁଏ ତ ପଚାରନ୍ତା—

"ଟଙ୍କା ପଇ ନ ଥିଲା ବୋଲି ମୂଳରୁ କହୁଥିଲ ? କୁଆଡ଼ୁ ଆଣିଲ ଏତେ ଟଙ୍କା ? କପଟୀ କଣ୍ଟୁଚ ଏତେ କୃପଣ ? ତୁମେ ଏତେ ଦୁଷ୍ଟ ? ଏତେ ଧୂର୍ତ୍ତ ? ଏତେ ଶଠ ?"

ମାତ୍ର କାହିଁ ? କମଳାଦେବୀଙ୍କ ଭଙ୍ଗୀରେ ଯେ କୌଣସି ପରିବର୍ତ୍ତନ ନାହିଁ ! କୌଣସି ପରିସ୍ଥିତି ତାଙ୍କ ମନରେ କୌଣସି ପ୍ରକାର ପ୍ରଭାବ ପକାଇ ପାରୁ ନାହିଁ ? ଧନେଶ୍ୱର ହୃଦୟ ମଧ୍ୟରେ ଅତି କରୁଣ ଭାବେ ହତାଶ ହୋଇ ପଡ଼ିଲେ । ବଡ଼ ବିରକ୍ତ ମଧ୍ୟ ବୋଧକଲେ । ଆଚ୍ଛା, ସ୍ତ୍ରୀ ଲୋକଟେ ଏଇଟା ! ଏଇଟା କ କିଛି ଅନୁଭବ କରିପାରେ ନାହିଁ ? ଯେଉଁ ନାରୀର କୌତୂହଳ ନାହିଁ, ଜିଜ୍ଞାସାବୋଧ ନାହିଁ, ବିସ୍ମୟ ନାହିଁ, ଉଲ୍ଲାସ ନାହିଁ, କାତରତା ନାହିଁ, ମୋଟ ଉପରେ ଏତେ ଟିକେ ଭାବପ୍ରବଣତା ବ ନାହିଁ—ସେଇଟା ନାରୀ ନା ପଥର ?

ଧନେଶ୍ୱରଙ୍କ ହୃଦୟ ବିଦୀର୍ଣ୍ଣ ହେଲା । ସ୍ତ୍ରୀଙ୍କର ଏହି ସମ୍ବେଦନ-ହୀନତାରେ ଏଇ ନିର୍ବଶୋକ୍ତିରେ ସେ ଅତି ଅସହାୟ ଭାବରେ ଭଗ୍ନହୃଦୟ ହୋଇ ମନ ଭିତରେ ସ୍ତ୍ରୀଙ୍କୁ ସମ୍ପର୍କିବାକୁ ଲାଗିଲେ—

ଏଇଟା ନାରୀ ନା ମାଟି ?

ଏଇଟା ଜୀବନ୍ତ ନା ମୃତ ?'

ଏହିଭଳି ଭଳି ଅବସ୍ଥାରେ ସ୍ତ୍ରୀ ପୁଣି ମୁହଁ ଖୋଲିଲେ—

"ଆଉ ଯଦି ପଇସା ଅଛି, ତେବେ ପୁଅ ଲାଗି ସ୍ୱେଟର ଖଣ୍ଡେ ଏଇଠୁ କିଣିନେଲେ ଯାଆନ୍ତା ।"

ସ୍ତ୍ରୀଙ୍କଠାରୁ ଏଇ ପଦକ ଅନୁରୋଧ ବାଣୀ ଶୁଣି, ଧନେଶ୍ୱରଙ୍କର କ୍ଳାନ୍ତ ପୁରୁଷକାର ପୁଣି ଝାଡ଼ହୁଡ଼ ହୋଇ ଉଠିଲା । ନାରୀଠାରୁ ସମବେଦନା; ସହାନୁଭୂତି ଓ ପ୍ରଶଂସା ଲାଗି ଭାବପ୍ରବଣ ଖାଲି ଆଶା ଛାଡ଼ି ସେ ପୁଣି ପୁରୁଷୋଚିତ ବୀର-ଦର୍ପରେ ପକେଟରୁ ମନିବ୍ୟାଗ୍ କାଢ଼ି ହାତରେ ଧରି ଦୋକାନ ଭିତରକୁ ପଶିଲେ ।

ଦୋକାନ ଆଗରେ ରେକ୍ସା ଉପରେ ଦୁଇ ଝିଅ ଆଉ ଛୋଟିଆ ପୁଅଟିକୁ ଧରି କମଳାଦେବୀ ବସି ରହିଛନ୍ତି । କମଳା ଦେବୀଙ୍କ ମୁହଁରେ ସିନା ଉତ୍କଣ୍ଠା ବା ଉଦ୍‌ବେଗର ଲେଶମାତ୍ର ଚିହ୍ନ ନ ଥିଲା, କିନ୍ତୁ ଝିଅ ଦୁଇଟି ଉତ୍କଣ୍ଠା ଆଉ କୌତୂହଳ-ପୂର୍ଣ୍ଣ ଆଖିରେ ଦୋକାନ ଭିତରକୁ ଚାହିଁ ରହିଛନ୍ତି । ତାଙ୍କ ଦେହରେ ଦୁଇ ବର୍ଷ ତଳର ମଇଳା କଟ୍‌ସ ଉଲ୍‌ର ପୋଷାକ; ସେଥିରୁ ପୁଣି ରଙ୍ଗ ଛାଡ଼ିଲାଣି । ଦେହକୁ ଛୋଟ ହୋଇ ଆସିଲାଣି । ନୂଆ ପୋଷାକ ଲାଗି ସେମାନଙ୍କ ମନ ମଧ୍ୟରେ ବି ଅଦମ୍ୟ ଲାଳସା କିନ୍ତୁ ସେମାନେ ଭଲ ଭାବେ ଜାଣନ୍ତି ଯେ ତାଙ୍କ ପାଇଁ ଆଉ ଏ ବର୍ଷ ଗରମ ଜାମା କିଣାଯିବ ନାହିଁ । କାରଣ ଧନେଶ୍ୱର-ଦମ୍ପତି ଏ ବର୍ଷର ଶୀତଋତୁ ଆରମ୍ଭରୁ ଏ ବିଷୟରେ ନିଷ୍ପତ୍ତି ଗ୍ରହଣ କରି ସାରିଥିବା କଥା ସେମାନେ ଶୁଣିଛନ୍ତି । ତେଣୁ ନିଜର ଅଭାବ-ବୋଧ ଲୋଭକୁ ଦମନ କରି, ସେମାନେ ନୂଆ ପୁଅର ନୂଆ ଗରମ ଜାମାଟି ଦେଖିବା ଲାଗି ଉଦ୍‌ଗ୍ରୀବ ଆଉ ବ୍ୟାକୁଳ ହୋଇ ଚାହିଁ ରହିଛନ୍ତି । ନୂଆ ପୁଅଟି ନୂଆ ଜାମା ପିନ୍ଧିବାର ଦେଖିଲେ-ଇ ସେମାନେ ନିଜେ ନୂଆ ଜାମା ପିନ୍ଧିବାର

କ୍ଷୁଧା ମେଣ୍ଟାଇବେ । ଅପରର ଭୋଗ ଦେଖି ନିଜର କ୍ଷୁଧା ମେଣ୍ଟାଇବା ପ୍ରକୃତିକୁ ସେମାନେ କାହାଠାରୁ ଜ୍ଞାତସାରରେ ଶିଖିନାହାନ୍ତି । ଧନେଶ୍ୱରଙ୍କ ପରିବାର ଭଳି ସ୍ୱଳ୍ପ ଉପାର୍ଜନକ୍ଷମ ଅଥଚ ଭଲ ଶିକ୍ଷିତ ପରିବାରର ପିଲାମାନେ ଆହାର, ନିଦ୍ରା, ଭୟ, ମୈଥୁନ ଭଳି ଏହାକୁ ପ୍ରବୃତ୍ତିରୂପେ ଜନ୍ମରୁ ହିଁ ଲଭ କରନ୍ତି ଏବଂ କ୍ରମେ ସେମାନେ ସେହି ପ୍ରବୃତ୍ତିଟି ଦ୍ୱାରା ନିଜ ମନର ସ୍ୱାଭାବିକ ରୁଚି ଓ ଲୋଭ ଆଦିକୁ ଦମନ କରି ଶିଖିଛନ୍ତି ଘୁଏଁ ଘୁଏଁ; ଯେମିତି ଶିଖିଛନ୍ତି, ନୂଆ ପୁଅ ଜନ୍ମ ହେବା ପରେ ଆଉ ଗାଈ ଦୁଧ ଖାଇବା ଲାଗି ଲୋଭ ନ କରିବାକୁ, ଯେମିତି ଶିଖିଛନ୍ତି ସକାଳେ ପ୍ଲେଟ ଭୋଗେଇଟିରେ ମାତ୍ରଦତ୍ତ ପରିମିତ ମୁଢ଼ି ଖାଇବାବେଳେ ଆଉ ବେଶି ମୁଢ଼ି ଲାଗି ଅଝଟ ନ କରିବାକୁ, ଯେମିତି ଶିଖିଛନ୍ତି, ସାନ ମାଛ ଖଣ୍ଡି ସହ, ଦୁଇ ଖଣ୍ଡ ଆଳୁ ଓ ଟିକିଏ ଝୋଳରୁ ବେଶି ନ ମାଗି ସେତିକ ଲଗାଇ ଭାତ ଖାଇ ଦେବାକୁ । କାମନାରେ ସଂଯତ ଲୋଭଶୂନ୍ୟ ବାଳସୁଲଭ ଚପଳତାହୀନ, ନିରିମାଖୀ ଏଇ ଧନେଶ୍ୱରଙ୍କ ପିଲାଗୁଡ଼ିକ ବାପ ମାଆଙ୍କ ପରି ସଂସାରରୁ ଆଉ ବେଶି କିଛି ଆଶା କରନ୍ତି ନାହିଁ, କରିବେ ବି ନାହିଁ । ପିଲାଦିନୁ ସେମାନେ ହିସାବରେ ବଢ଼ିଛନ୍ତି, ତାଙ୍କ ଲାଗି ବାପ ମାଆଙ୍କର ଦିନରାତି ହିସାବ । ମରିଗଲେ ବି ସେମାନେ ସେହି "ହିସାବ"ରେ ମରିବେ ।

ସେହି ପିଲାଗୁଡ଼ିକ ରିକ୍ସା ଉପରେ ମାଆ ଗୋଡ଼ ତଳେ ବସି ଦୋକାନ ଆଡ଼କୁ ଉଦ୍‌ବେଗରେ ଚାହିଁ ରହିଛନ୍ତି । ବାପା ନୂଆ ପୁଅଲାଗି ସ୍ୱେଟର କିଣୁଛନ୍ତି । କେମିତି ହବ ତାର ରଙ୍ଗ, କେତେଡ଼େ ହେବ ତାର ସାଇଜ୍ । ନିଜପାଇଁ ନ ହେଉ ପଛେ, ପୁଅଲାଗି ସ୍ୱେଟର କିଣା ହେବାର ଆନନ୍ଦରେ ସେମାନେ ଉନ୍ମତ୍ତ

ହୋଇ ପଡ଼ୁଛନ୍ତି । ମନ୍ଦିରେ ମନ୍ଦିରେ ମାଆ କୋଳରୁ କୁଆ ଧୁଅଟିକୁ ଟାଣି ଆଣି ତାକୁ ନଚାଇ ନଚାଇ ଉଚ୍ଚସ୍ୱରରେ ଚିତ୍କାର କରି ଗେଲ କରୁଛନ୍ତି—

ନୂଆ ପୁଅ, ନୂଆ ଜାମା ପିନ୍ଧିବ ରେ—
ନାଳ ଜାମା, ନାଲିଜାମା
କଳା ଜାମା, ଛିଟଜାମା
ଗରମ୍ ଜାମା, ଭଲ ଜାମା
ନୂଆପୁଅ ନୂଆ ଜାମା ପିନ୍ଧିବରେ—
ନୂଆ ପୁଅ ଭଲ ସ୍ୱେଟର ପିନ୍ଧିବରେ—।

ଦୋକାନ ଭିତରେ ଠିଆ ହୋଇ ଧନେଶ୍ୱର ମନ ବ୍ୟାଗଟି ଗୋଟାଏ ହାତରେ ଧରିଛନ୍ତି—ଖୋଲି ନାହାନ୍ତି । ଭଲ କ ଭଲ ସ୍ୱେଟର ଦେଖାଉଛି ଦୋକାନୀ । ଅନ୍ୟ ହାତଟିରେ ପରଖ କରୁଛନ୍ତି ଧନେଶ୍ୱର ସଫ୍ଟ ଉଲ୍, ରଫ୍ ଉଲ୍, କଟ୍ସ ଉଲ୍ ଆଉ ଖାଣ୍ଟି ସୂତାର ସ୍ୱେଟରଗୁଡ଼ିକ । ହରେକ୍ ରକମର, ହରେକ୍ ରଙ୍ଗର—ହରେକ୍ ଫେସନ୍‌ର କଟିଂ ! ପନ୍ଦର ଟଙ୍କା--ଏଗାର ଟଙ୍କା, ସାତଟଙ୍କା, ପାଞ୍ଚ ଟଙ୍କା ଆଉ ତା' ତଳକୁ ନେଇ ହେବ ନାହିଁ । ନେଇ ବ ହେବ ନାହିଁ ପାଞ୍ଚ ଟଙ୍କାର ଉପରକୁ । ଧନେଶ୍ୱରଙ୍କ ଶ୍ରେଣୀର ଲୋକମାନଙ୍କର ପ୍ରଧାନ ଅସୁବିଧା ହେଉଛି—ସେମାନଙ୍କର ରୁଚିବୋଧ, ସେମାନଙ୍କର ଶକ୍ତି ଅପେକ୍ଷା ଯଥେଷ୍ଟ ବେଶି । ଯଥେଷ୍ଟ ବେଶି ମଧ୍ୟ ସେମାନଙ୍କ ଅପେକ୍ଷା ଶକ୍ତିଶାଳୀମାନଙ୍କର ରୁଚିବୋଧଠାରୁ ।

ଧନେଶ୍ୱର ପାଞ୍ଚ ଟଙ୍କିଆ ସ୍ୱେଟରଟାକୁ ହାତରେ ଧରିଲେ । ଦୋକାନୀ ଭାବଭଙ୍ଗୀରୁ ସବୁ ବୁଝିପାରି ତାଙ୍କ ହାତରୁ ସ୍ୱେଟରଟି ଆଣି କାଗଜରେ ଗୁଡ଼ାଇଲାଣି । ଧନେଶ୍ୱର ମନିବ୍ୟାଗ୍

ଖୋଲିଲେ । ତାଙ୍କ ମୁଣ୍ଡରେ ବ୍ରଜ ଖସିପଡ଼ିଲ । ଆଉ ଯେ ମାତ୍ର ଦୁଇଟି ଟଙ୍କା ଅବଶିଷ୍ଟ ଅଛି ! ଧନେଶ୍ୱର ଏ ପର୍ଯ୍ୟନ୍ତ ସ୍ତ୍ରୀଙ୍କ ଆଗରେ ପୁରୁଷୋଚିତ ହ୍ୱାଟ୍‌ମଚ୍ ଖେଳରେ ଖର୍ଚ୍ଚ କରିବା ନିଶାରେ ଥିଲେ । ସ୍ତ୍ରୀଙ୍କୁ ବସ୍ତୁଯୁଗାଭିଭୂତ କରିବାଲାଗି ଉନ୍ମାଦନାରେ ସେ ଜମା ଖର୍ଚ୍ଚ ମିଳାଇ ହିସାବ କରି ପାରି ନାହାନ୍ତି । ଦୋକାନୀ ସ୍ୱେଟରଟିକୁ କାଗଜରେ ଗୁଡ଼ାଇ ଧନେଶ୍ୱର ହାତକୁ ବଢ଼ାଇ ଦେଲାଣି । ଧନେଶ୍ୱର ଅଜାଣତରେ ସେଇଟିକୁ କାଖରେ ଜାକି ସାରିଛନ୍ତି । ଆଉ ବର୍ତ୍ତମାନ ଭାବିବାର ସମୟ ନାହିଁ । ଅନୁଶୋଚନାର ବେଳ ନାହିଁ । ହାୟ ହାୟ-ଏତେ ଚଞ୍ଚଳ, ଏତେ ସହଜରେ ମାତ୍ର କେତୋଟା ଟଙ୍କା ପାଇଁ ସେ ଅପଦସ୍ତ ହେବେ ?

ଧନେଶ୍ୱର ସ୍ୱେଟରଟି କାଖରେ ଜାକି ଦୋକାନୁ ବାହାରି ଆସିଲେ । ରେକ୍‌ସା ପାଖକୁ ଯାଇ ସ୍ତ୍ରୀଙ୍କୁ ବ୍ୟସ୍ତକଣ୍ଠରେ କହିଲେ—

"ଆଉ ତିନିଟା ଟଙ୍କା ଦିଅ; ମୋ ପାଖେ ମାତ୍ର ଦୁଇଟା ଟଙ୍କା ଅଛି । ସ୍ୱେଟରଟା ୫ ଟଙ୍କା ପଡ଼ୁଛି ।"

କମଳାଦେବୀ ଚହଁକି ଉଠି କହିଲେ—

"ତମେ ପାଗଳ ନା କଅଣ ? ମୋ ପାଖରେ ଟଙ୍କା କାହିଁ ? ଗୋଟାଏ ବି ପଇସା ନାହିଁ ।"

ଧନେଶ୍ୱର ନାରୀର ଗୋପନୀୟ ପ୍ରକୃତି ଉପରେ ପୁନର୍ବାର ଆସ୍ଥା ପୋଷଣ କରି କହିଲେ—

"ଓଃ—ଦିଅ ଟଙ୍କା ! ଶେଷେ ଟ୍ରେନ୍‌ବେଳ ହୋଇ ଗଲାଣି । ଦେଲ ଦେଲ··ଦିଅ ଚଞ୍ଚଳ ।"

କମଳାଦେବୀ ଦୃଢ଼ଗଳାରେ ଉତ୍ତର ଦେଲେ—

"ତୁମ ଦେହ ଛୁଉଁଛ; ମୋ ପାଖରେ ଅଧଲାଟିଏ ବି ନାହିଁ । ମତେ ବିଶ୍ୱାସ କର । ମୁଁ ଆଉ ପଇସା କୋଉଠୁ ଆଣିବି ? ଯାହା ବା ଥିଲା, ଆସିଲାବେଳେ ତ ସବୁ ବାଟଖର୍ଚ୍ଚରେ ଗଲା— । ତୁମେ ତ ଏ ମାସରେ ଘରଖର୍ଚ୍ଚ ବୁଝୁଛ, ମୋର ଧାରଣା—ତୁମେ କୋଉଠୁ ଧାର କରି ବେଶି ଟଙ୍କା ଆଣିଥିବ ବୋଲି ସିନା ?"

ପାଟିତୁଣ୍ଡରେ ରେକ୍‌ସା ପାଖେ ଲୋକ ଜମିଗଲେ । ଧନେଶ୍ୱର ନୈରାଶ୍ୟ, ଅପମାନ ଓ ବ୍ୟର୍ଥତାରେ ଘାଣ୍ଟିଘୋଡ଼ି କରୁଣ ଆଉ ଆହତ ଗଳାରେ କହିଲେ—

"ତା' ହେଲେ କଣ ସ୍ୱେଟରଟା ଫେରାଇ ଦେବି ?"

ସ୍ତ୍ରୀ ମଧ୍ୟ ସେହିଭଳି ଦୃଢ଼ ଗଳାରେ କହିଲେ—

"ଆଗ ଟ୍ରେନ୍‌ରେ ଯିବା ଲାଗି ଟଙ୍କା କଥା ଭାବ । ସ୍ୱେଟର କଥା କଣ କହୁଚ ?"

ଧନେଶ୍ୱର ଆଉ କାଳବିଳମ୍ବ ନ କରି ଦୋକାନ ଆଡ଼କୁ ମୋହିଁଲେ । ତାଙ୍କର ମନେପଡ଼ୁଥିଲା—ବାଲ୍ୟକାଳରେ ପଠିତ ମଧୁରାଓଙ୍କ ଲିସବନ୍ ଭୂମିକମ୍ପ ପ୍ରବନ୍ଧର ଗୋଟିଏ ଅସହାୟ କାତର କଣ୍ଠର ସତର୍କବାଣୀ—

"ଆଗ ପ୍ରାଣରକ୍ଷାର ଉପାୟ ଚିନ୍ତା କର । ଏହା ପିପାସା ଶାନ୍ତିର ସମୟ ନୁହେଁ ।"

ହାୟ ହାୟ ! ଏଇ ପୈତୃକପ୍ରାଣଟି କଣ କେବଳ ଭୂମିକମ୍ପର ତାଡ଼ନାରେ ମୁଣ୍ଡ ଉପରେ କୋଠାର ଛାତ ଭୁଷୁଡ଼ି ପଡ଼ିଲେ ଯାଏ; ଆଉ ପିପାସାରେ ତୋଟି ଶୁଷ୍କହେଲେ ମଧ୍ୟ ଯାଏ ନାହିଁ ? ଯୋଉ ପ୍ରାଣ ଯିବାର କଥା, ସେ ଯେପରି ହେଲେ ବି ଯାଏ ।

ଧନେଶ୍ୱର ଅପମାନ ଓ ଆତ୍ମଗ୍ଲାନିକୁ ଯଥାଶକ୍ତି ଦମନ କରି ଦୋକାନୀ ହାତକୁ ସ୍ୱେଟରଟି ବଢ଼ାଇଦେଇ କହିଲେ—

"ନାଃ, ଆପଣ ରଖନ୍ତୁ । ଏଟା ପସନ୍ଦ ହେଲା ନାହିଁ । ମୁଁ ପରେ ଆସି ନେଇଯିବି ।"

ଶେଷରେ ପରି ଧନେଶ୍ୱର ରେକ୍ସା ପାଖକୁ ଫେରିଆସିଲେ । ଝିଅ ଦୁଇଟିଙ୍କର ମୁହଁଟିମାନ ନୈରାଶ୍ୟରେ ଶୁଖି ଯାଇଛି । ଝାପ୍ସା ଆଖିରେ ସେମାନେ କାତର ହୋଇ ଚାହିଁ ରହିଛନ୍ତି । ଦୋକାନ ଆଡ଼ୁ ଏକ ମିଳିତକଣ୍ଠର ଉପହାସର ଶବ୍ଦ ମାଡ଼ି ଆସୁଛି । ଧନେଶ୍ୱର ପରାହତ ହୃଦୟରେ ପଛକୁ ନ ଚାହିଁ ରେକ୍ସା ଉପରକୁ ଉଠିଲେ । ଅଭି ଦୃଢ଼ଗଳାରେ ରେକ୍ସାବାଲାକୁ ହୁକୁମ ଦେଲେ—

ଏ ରେକ୍ସା—ଫେରା ଫେରା— ! ଏ ଗାଡ଼ିରେ ଆମେ ଯିବା ନାହିଁ । ଚାଲ, ସହରକୁ ଫେରିଚାଲ । ସଞ୍ଜଗାଡ଼ି ଆମ ପାଇଁ ଭଲ ସୁବିଧା ହେବ ।

ରେକ୍ସାବାଲା ଆଉ ଷ୍ଟେସନକୁ ନ ଯାଇ ରେକ୍ସା ଫେରାଇଲା । ଧନେଶ୍ୱର ଭିରି ସ୍ତ୍ରୀଙ୍କ ଆଡ଼କୁ ଚାହିଁଲେ । ସ୍ତ୍ରୀଙ୍କ ମୁହଁରେ ଭଙ୍ଗୀର କିଛି ପରିବର୍ତ୍ତନ ହୋଇନାହିଁ । ମାତ୍ର ଦୁଇ ଆଖିରୁ ତାଙ୍କର ଝରିପଡ଼ୁଛି ଦୁଇଟି ଅଶ୍ରୁଧାରା । ଧନେଶ୍ୱର ସ୍ତ୍ରୀଙ୍କ କାନ୍ଧରେ ହାତ ରଖି ଅନୁନୟ କରି କହିଲେ—ଛି ! ତୁମେ କାନ୍ଦୁଚ ? ମୋ ରାଣୀଟା ପରା, ମୋ ସୁନା, କାନ୍ଦ ନାହିଁ । ଛି ଛି ! ବାସ୍ତବିକ ମୋର ବଡ଼ ଭୁଲ ହୋଇଗଲା । ମୋତେ କ୍ଷମା କର । ଛି-ଛି ! ମୋ ରାଣୀ, ଆଉ କାନ୍ଦ ନାହିଁ, ଦିଅ ଦିଅ, ପୁଅକୁ ମୋ କୋଳକୁ ଦିଅ ।

ଧନେଶ୍ୱର ସାନ ପୁଅଟିକୁ ମାଆକୋଳରୁ ତା' ଅନିଚ୍ଛା ସତ୍ତ୍ୱେ ଟାଣିଆଣି ନିଜେ ଗେଲ କରୁ କରୁ ପିଲଟି ଖବ୍ ଚତ୍କାର କରି କାନ୍ଦଉଠିଲା; ଆଉ ମା କୋଳକୁ ଯିବାକୁ ବ୍ୟସ୍ତ ହୋଇ ରଡ଼ି ଛାଡ଼ିଲା । ଧନେଶ୍ୱର ଆଉ ସମ୍ଭାଳି ପାରିଲେ ନାହିଁ । ଛୁଆଙ୍କ ଭଳି ଭେ ଭେ କାନ୍ଦଉଠିଲେ । ମାଆ କାନ୍ଦୁଛନ୍ତି, ବାପା କାନ୍ଦିଲେଣି । ଝିଅ ଦୁଇଟି ଏ ପର୍ଯ୍ୟନ୍ତ କାନ୍ଦିବେ ବୋଲି ଅପେକ୍ଷା କରିଥିଲେ । ସେମାନେ ବି ଭେ ଭେ କାନ୍ଦଉଠିଲେ । ଏ କାନ୍ଦଣା ଅସହାୟର ଅର୍ଦ୍ଧିତର ନିରୁପାୟର ଆଉ ଧନେଶ୍ୱର ଭଳି କରୁଣ ମଧ୍ୟବିତ୍ତ ପରିବାରର ପିଲମାନଙ୍କର ।

ରେକ୍ସା ଛୁଟିଚ୍ଛିଲଚ୍ଛି ଧନେଶ୍ୱରଙ୍କ ଶ୍ୱଶୁରଘର ଅଭିମୁଖେ । ସ୍ୱେଟର ଦୋକାନ ବନ୍ଦ ପଛରେ ପଡ଼ି ରହିଲଣି ।

× × ×

ଖୁବ କମ ସମୟରେ ରିକ୍ସା ଏଇ ପରାଜିତ ବ୍ୟର୍ଥ ହତାଶ ଆଉ ଦରିଦ୍ରର ଅପମାନିତ ମଧ୍ୟବିତ୍ତ ପରିବାରଟିକୁ ଯଥାସ୍ଥାନରେ ପହଞ୍ଚାଇଦେଲା ।

## ବୁଦ୍ଧନାଥ ସୈରିନ୍ଧ୍ରୀଦେବୀ ଓ ଛାବଲ

## ଉପାଖ୍ୟାନମ୍

ବହୁତ ବୁଲାବୁଲି ଆଉ ଖୋଜାଖୋଜି ପରେ ବୁଦ୍ଧନାଥ ଶେଷରେ ଘରଟିଏ ପାଇଲେ । ହଉ ପଛେ ଘରଟି କର୍ମକ୍ଷେତ୍ରଠାରୁ ତିନି ମାଇଲ ଦୂରରେ, ଗୋଟିଏ ଆବର୍ଜନାପୂର୍ଣ୍ଣ ସଂକୀର୍ଣ୍ଣ ଗଳି ଭିତରେ । ଘର ଆଗରେ ଖୋଲା ନର୍ଦ୍ଦମା । ବୁଦ୍ଧନାଥ ଭାବିଲେ, ଭଲ ହେଲା; ପିଲାଏ ପିଣ୍ଡା ଉପରେ ବସି ନର୍ଦ୍ଦମାରେ ସୁବିଧାରେ ହଗିବେ । ଘର ବୋଇଲେ ଦୁଇ ବଖରା । ଗୋଟିଏ ରୋଷଘର, ସେଇ ବି ଭଣ୍ଡାରଘର । ଆଉ ଗୋଟିଏ ଶୋଇବାଘର ଏବଂ ଘରୁ ବାହାରକୁ ଆସିବା ଲାଗି ଗୋଟିଏ ସଂକୀର୍ଣ୍ଣ ଦ୍ୱାର । ପ୍ରବେଶ ଦ୍ୱାରର ବାମ ପଟକୁ ସ୍ୱୟଂ ଘରବାଲାର ଭେଜାଲ୍ ଦୋକାନ । ବୁଦ୍ଧନାଥ ମନେ ମନେ ଖୁସିହେଲେ । ଭାଗ୍ୟରେ ଥିଲେ ଏ ସୁଯୋଗ ମିଳେ । ଗୁଡ଼ଜଳ, ଡାଲି, ଗୁଆ ଓ ଚାଉଳ ପ୍ରଭୃତି ଜିନିଷ ଲାଗି ଆଉ ବେଶି ଦୂରକୁ ଯିବାକୁ ପଡ଼ିବ ନାହିଁ । ପୁଣି ପ୍ରବେଶ ଦ୍ୱାରର ଦକ୍ଷିଣ ପଟକୁ ଗୋଟିଏ ପରିବା ଦୋକାନୀ ବି ଭଡ଼ା ନେଇ ଦୋକାନ ମେଲେଇଛି । ବୁଦ୍ଧନାଥ ମନ ଭିତରେ ଖୁସିରେ କୁରୁଳିଲେ । "ଖୋଦା ଜିସ୍‌କୁ ଦିଆ ତୋ ଛପର ଫାଡ଼ିକର ଦିଆ ।"

ଘରଭଡ଼ା ମାସକୁ ତିରିଶ ଟଙ୍କା ଆଗତୁରା ଦେଇ ବୁଦ୍ଧନାଥ ସଙ୍କଟମୁକ୍ତ ହେଲେ ସେଇ ଘର ଭିତରେ ଢୁକିଲେ । ଦୁଇଟା ଟ୍ରଙ୍କ୍—ତିନିଟା ସୁଟ୍‌କେଶ୍। ଗୋଟିଏ ପିଲଙ୍କ ଦୋଳି, ବୁଦ୍ଧନାଥଙ୍କ ପରିବାରର ବିଛଣା— ଜଣ୍ଟି ବନ୍ଧାପଟ, ସାଇକେଲ, ବାସନକୁସନ, ତିନି ଗୁରିଟା ଝୋଟିକଇ, ବାଉଁଶିଆ—ଆଉ ଏହାପରି ଢେର ଢେର ଜିନିଷ-ପତ୍ରରେ ଟଣ ଲମ୍ବା ଘରର ଅଧେ ପୂରିଗଲା ।

ବୁଦ୍ଧନାଥ ଗୃହିଣୀ ସୌରନ୍ଧ୍ରୀଦେବୀ କିନ୍ତୁ ଘର ଦେଖି ମୁହଁ ମୋଡ଼ିଦେଲେ । "ଏଇ ଘର ! ! ! ଏଇଟା ଘର ନା ଛେଳି ଗୁହାଳ !! ପାଞ୍ଚ ପାଞ୍ଚଟା ପିଲଙ୍କୁ ନେଇ ଏମିତିକା ଘରେ ମୁଁ ଏବେ ସମ୍ଭାଳିବି କେମିତି ? ଛୁଆଏ ବୁଲିବେ କୋଉଠି—ଖେଳିବେ କେଉଁଠି ? ଖାଇବେ କୋଉଠି ? ଶୋଇବେ ବା କୋଉଠି ? ଏମିତିକା ଘରଟିଏ ଯେ ଭିତରେ ଆଠ ହାତର ଅଗଣାଟିଏ ବି ନାହିଁ । ମଲା ମୋର ! ଯେମିତି ମଣିଷଟିଏ, ସେମିତିକା ଘରଟିଏ ଏକା ତୁମ ଭାଗ୍ୟକୁ ମିଳିଛି ।"

ବୁଦ୍ଧନାଥ ଚିଡ଼ିଗଲେ ।

"ଖାଲି କଣ ମୋ ଭାଗ୍ୟକୁ ଏମିତିକା ଘରଟିଏ ମିଳିଛି ? ତୁମ ଭଳି ଘରଣୀଟିଏ ବି ମିଳିଛି । ଏମିତି ଗ୍ରହରେ ତୁମର ଜନ୍ମ ଯେ କୁନାଟବୋଉ, ସନ୍ତୋଷ ତୁମ ଜାତକରେ ନାହିଁ । ଆତ୍ମ-ସନ୍ତୋଷ ଯେ କି ସ୍ୱର୍ଗୀୟ ପଦାର୍ଥ, ଏହା ତୁମେ ପାଞ୍ଚଟା ପିଲାର ମାଆ ହେଲ—ତଥାପି ଆଜଯାଏ ବୁଝିଲ ନାହିଁ । ବୁଝିଲ, ଆତ୍ମ-ସନ୍ତୋଷ ଠାରୁ ବଳି ପଦାର୍ଥ ନାହିଁ । ଏ ସଂସାରରେ ସୁଖୀ କିଏ ? ଆଚ୍ଛା କହିଲ ଦେଖି—ତୁମକୁ ଏଇ ସାମାନ୍ୟ କଥାଟିଏ ପଚାରୁଛି—କହିଲ—କୁହ ।"

ସୈରିନ୍ଧ୍ରୀ ଦେବୀ ସେଠୁ ଉଠିଯାଇ ଜିନିଷପତ୍ର ସଜଡ଼ାସଜଡ଼ି କରୁ କରୁ ମନ ମଧ୍ୟରେ ଗାଉଁ ଗାଉଁ ହେଲେ—

"ମୋର ଗରଜ ପଡ଼ିଛି ତୁମ ସଙ୍ଗେ ବକ୍ ବକ୍ ହେବାକୁ । ଯାହା ମୁହଁକୁ ଲାଜ ନାହିଁ·····"

"ସୁଖୀ ହେଉଛି ସେହିଜନ—ଶୁଣୁଛ—ହଇଏ କୁନାବୋଉ ! ଶୁଣ, ମଜା ମଜା—କଥାଟିଏ ଆରମ୍ଭ କରିଦେବ—ଖୁଁଚିଟିଏ ମାରି-ଦେବ—ଆଉ ଅସଲ ତତ୍ତ୍ୱ କଥା ଆରମ୍ଭ ହେଲାବେଳକୁ ତୁମେ ତୁମର·····ଛି-ଛି-ଛି ! ଭଗବାନ ତୁମକୁ ମଣ୍ଡରେ ନାଗି-ଜନ୍ମ ଦେଇଛନ୍ତି ! ଶୁଣିଯାଅ ଶୁଣିଯାଅ, ଶୁଣ ହେ କୁନାବୋଉ ! ଶୁଣୁଛ ?"

"କଅଣ ? କଅଣ ? କଅଣ ? କହିବଟି !" ସୈରିନ୍ଧ୍ରୀ ଦେବୀ ଘର ମଧ୍ୟରୁ ବାହାରି ଆସି ଠମ୍ ଠମ୍ ହୋଇ ଛିଡ଼ା ହୋଇଗଲେ ବୁଦ୍ଧନାଥଙ୍କ ଆଗରେ—

"ସୁଖୀ ହେଉଛି ସେହିଜନ—ଯେ ଅଳ୍ପକରେ ଆତ୍ମ-ସନ୍ତୋଷ ଲାଭ କରେ । ଯାହା ପାଏ, ସେତିକରେ ସନ୍ତୁଷ୍ଟ ହୋଇ ପରାତ୍ପର ପରମେଶ୍ୱରଙ୍କ ନିକଟରେ ଜାନୁପାତ ପୂର୍ବକ ପ୍ରାର୍ଥନାକରି କୃତଜ୍ଞତା ଜଣାଏ—"ପ୍ରଭୋ" !!!

ବୁଦ୍ଧନାଥ ହଠାତ୍ ଭାବବିହ୍ୱଳ ହୋଇ ସ୍ତ୍ରୀଙ୍କ ଆଗରେ ଆଣ୍ଠୁମାଡ଼ି ବସି ହାତଯୋଡ଼ି ଭାବ ଗଦ୍‌ଗଦ୍ କଣ୍ଠରେ ପରମେଶ୍ୱରଙ୍କ ନିକଟରେ ଜଣାଇଲେ—

"ପ୍ରଭୋ ! ତୁମର ମହିମା ଅନନ୍ତ-ଅପାର । କେ ପାରିବ ବୁଝି ତୋର ମହିମାର କଥା ? ତୁ ନାଥ ପରମ ଦୟାଳୁ—ଦୁଷ୍ଟ ନିବାରି ସନ୍ଥ ପାଳୁ ।"

ବୁଦ୍ଧନାଥଙ୍କ ବଡ଼ପୁଅ ଯେ କି ପଞ୍ଚମ ଶ୍ରେଣୀରେ ପଢ଼ୁଛି— ସେ ମାଆଙ୍କ ଆଗରେ ବାପାଙ୍କର ଏହି ଆତ୍ମସମର୍ପଣ ଦୃଶ୍ୟ ଦେଖି ହୋ ହୋ ହୋଇ ହସି ଚିତ୍କାର କରି ପାଖ ଘର ଭଉଣୀମାନଙ୍କୁ ଡାକିଲା—

"ର ରେ ଝୁନା-ମୁନା-ସୁନା ! ଦଉଡ଼ି ଆସ ଦେଖିବ ! ବାପା କିମିତି ବୋଉ ଆଗରେ ନିଲ୍ ଡାଉନ୍ ହୋଇଛନ୍ତି !"

ସବୁ ପିଲାଯାକ ଆସି ହୋ ହୋ ହୋଇ ହସି ହାଲ୍ଲାକରି ତାଳିମାରି ନାଚିଲେ ।—

"ହୋ, ହୋ, ହୋ ! ବାପା ନିଲ୍ ଡାଉନ୍ ହୋଇଛନ୍ତି ରେ ! ବାପା ନିଲ୍ ଡାଉନ ହୋଇଛନ୍ତି ।"

ସୈରିନ୍ଧ୍ରୀଦେବୀ ରାଗରେ ଗାଳିଗଲେ—"ଓହୋ ! ଏଡ଼ିକି ଅଲାଜୁକ ତୁମେ—ଏଡ଼ିକି ଅଲାଜୁକ ! —ବୁଢ଼ା ହେଲଣି—ଛି ଛି ତୁମ ମୁଣ୍ଡ—ତମ ମୁହଁକୁ ଟିକିଏ ଲାଜନାହିଁ । —ମଲି ମୋର— ଏମିତି ପୋଡ଼ାକପାଳ !!"

ସୈରିନ୍ଧ୍ରୀଦେବୀ କାନ୍ଦି କାନ୍ଦି ଗଳାରେ ସେଠୁ ଉଠି ଆସି ରାଗରେ ପିଲାଙ୍କୁ ଚାଟିଙ୍କେ ଲେଖାଏଁ ଛେଚି ଦେଇଗଲେ । ସାଙ୍ଗେ ସାଙ୍ଗେ ହାସ୍ୟରସ କରୁଣ ରସରେ ପରିଣତ ହେଲା । ଉଠିଲା କନ୍ଦନର ରୋଳ । "ମରିଗଲି ମରିଗଲି—ଏଁ ଏଁ କେଁ କେଁ ଚିତ୍କାର ପାଟି –"

ବୁଦ୍ଧନାଥ ଧ୍ୟାନରୁ ଉଠି ପିଲାଙ୍କୁ ବୁଝାଇ ଲାଗିଲେ କାହାକୁ କାଖାଇ, କାହାକୁ ମୁଣ୍ଡାଇ । କାହାକୁ ଚିନି ଲାଞ୍ଚଦେଇ, କାହାକୁ ବା ବସକୁଟ । ଓହୋ ! ଏକ ଘଣ୍ଟା ପରେ କମିଲା ଚିତ୍କାର । ବିଭୁ କୃପାରୁ ପିଲାମାନେ ଶୋଇଲେ ।

ବୃଦ୍ଧନାଥ ସ୍ତ୍ରୀଙ୍କ ଅଜାଣତରେ ଅନ୍ଧାର ଭିତରେ ଈଶ୍ୱରଙ୍କ ପାଖେ ଚଟ୍‌ପଟ୍‌ ପ୍ରାର୍ଥନା କରିନେଲେ—

"ଅସ୍ମମାରମ୍ଭ ଶୁଭାୟ ଭବତୁ"।

ସେ ଯାହାହେଉ, ବୃଦ୍ଧନାଥ ଚରିବାର ସେହ୍ନାଦନୁ ସେହି-ଘରେ ରହିବାକୁ ଅଭ୍ୟାସ କଲେ। ବୃଦ୍ଧନାଥଙ୍କର କିଛି ଚିନ୍ତା ନ ଥିଲା। ସେ ଆତ୍ମ-ସନ୍ତୋଷ ଜନିଷଠାକୁ ପାଚୁପର୍ଯ୍ୟନ୍ତ ଅଭ୍ୟାସ କରି ନେଉଛନ୍ତି । ମାତ୍ର ସୈରିନ୍ଧ୍ରୀଦେବୀ ତାଙ୍କୁ ସେ ଅଭ୍ୟାସ କରାଇଦେଲେ ନାହିଁ । ସବୁଦିନେ ରାତି ପାହିଲେ-ଇ ସୈରିନ୍ଧ୍ରୀ ଦେବୀ ବିଛଣାରୁ ଉଠି ଆଗ ଘର ଉପରେ ବଡ଼େ ଅସନ୍ତୋଷ ପ୍ରକାଶ କରନ୍ତି।—

"କେମିତି ଏ ଘରେ ମଣିଷ ଚଳିବ ! ପାଇଖାନାଟିଏ ବି ନାହିଁ, ବାରିପଟେ ଗୋଟେ କଚ୍ଚା ପାଇଖାନା। ସେଥିରେ ପୁଣି ଫ୍ଲାଟ୍‌ର ଫାମିଲି ଝାଡ଼ା ଫେରିବେ। ସେ ପୁଣି ପ୍ରତିଦିନ ସଫା ହେଉନାହିଁ ! ମରଣ ଯା ହେଉନାହିଁ !!"

ସହଜେ ସୈରିନ୍ଧ୍ରୀଦେବୀ କୋଷ୍ଠକାଠିଣ୍ୟ ଧାତୁର ସ୍ତ୍ରୀ ଲୋକ। ଏଥିରେ କି ତାଙ୍କୁ ଝାଡ଼ା ମାଡ଼େ ! ସବା ସାନ ଛୁଆଟିକୁ ଦଶ ମାସ ହୋଇନାହିଁ—ଏଣେ ଆଉ ଗୋଟିଏ ଜନ୍ତୁ ରହିଲେଣି ଗର୍ଭରେ। ଦେହରେ ଆଉ ରକ୍ତ ନାହିଁ । ରକ୍ତହୀନତା ଯୋଗୁଁ ସୈରିନ୍ଧ୍ରୀଦେବୀ ଅସ୍ୱାଭାବିକଭାବେ ଅକାଳ ଚଢ଼ା ହୋଇ ଉଠିଚନ୍ତି। ଅଳ୍ପ କଥାରେ ବୃଦ୍ଧନାଥଙ୍କୁ ଅକଥ୍ୟ ଭାଷାରେ ଗାଳି ଦେଉଛନ୍ତି। ଛୁଆଗୁଡ଼ାଙ୍କୁ ପିଟୁଛନ୍ତି। ସବୁବେଳେ ଛୁଆଗୁଡ଼ାଙ୍କର ଚେଁ ଚାଁ କେଁ କାଁ ରେ ଘର ଫାଟିପଡ଼ୁଚି । ଏଥିରେ କି ଘରେ ଶାନ୍ତି ରହେ ? ଅଗଣାଟା ସବୁବେଳେ ସନ୍‌ସନ୍‌ଆ । ଛୁଆଏ ଅନବରତ ମୁତୁଛନ୍ତି, ପାଣି ଢାଳୁଛନ୍ତି। ମାଟି ଜଳର ଅଧାଭୁଷୁଡ଼ା

କୂଅଟିଏ । ସେ ପୁଣି ମଝିରୁ ଦୁଇ ଭାଗ ହୋଇଛି । ତା' ଭିତରେ ଖାଉଆ ପାଣି, ଆଉ ସେଥିରେହଜାରେକ୍ ରକମର ପୋକ ଅନାଦି କାଳରୁ ସଗୁଷ୍ଟିମେ ବସାବାନ୍ଧି ରହିଛନ୍ତି ।

ସୌଦାମିନୀଦେବୀ ବାଲଟିଏ ପାଣି କାଢ଼ି କାଢ଼ି ଦୁମ୍‌କିନା ବାଲଟିଟାକୁ କୂଅ ଉପରେ କଚାଡ଼ିଦେଲେ, ଆଉ ମନେ ମନେ ଗାରୁ ଗାରୁ ହେଲେ ।

"ଘର ଯେମିତି, କୂଅ ବି ସେମିତି ! ଏ ପାଣି ପିଇଲେ ଭଲ ଲୋକ ବି ରୋଗିଣା ହୋଇଯିବ । ଦୁଆରଟା ସବୁବେଳେ ଜଳଉଛି ଯେ ପିଲାଗୁଡ଼ାଙ୍କୁ ଅନବରତ ଥଣ୍ଡି କାଶ ଲାଗି ରହୁଛି । ଦାଣ୍ଡକୁ କଣ ଟିକିଏ ବାହାର ହେଉଛି ? ଦାଣ୍ଡଦୁଆର ମୁହଁରେ ଢ' ଢ'ଟା ଦୋକାନ ଯେ ସବୁବେଳେ ମଣିଷ ଗହଳ । ଘରବାଲାଟା ଯେମିତି ଯଂଖ—ଉଞ୍ଚେ ବି ଜାଗା ଖାଲି ଦେହ ନାହିଁ, ସବୁ ଭଡ଼ା ଲଗାଇ ଦେଇଛି ଏମିତି ଯଂଖ ହାବୁଡ଼େ ଏକା ତମର ଭଳି ମଣିଷ ପଡ଼ନ୍ତି ! କାହିଁକି ଆଉ କ'ଣ ଭଲ ଘର ମିଳୁ ନାହିଁ ?"

ବୁଦ୍ଧନାଥ ଶତା କୋଥଳ ମେଲାଇ ଗୀତାର ନିଷ୍କାମଯୋଗ ଅଧ୍ୟାୟ ପଢ଼ୁଥିଲେ—ତଡ଼ାରେ ଚଣ୍ଡଗୋଳ ହେବାରୁ ବଉଳରେ ହାତଯୋଡ଼ି କହିଲେ—

"କୁନାବୋଉ ! ତୁମକୁ କୃତାଞ୍ଜଳପୁଟରେ ପ୍ରାର୍ଥନା କରୁଅଛି କି ତୁମେ ମୋର ମସ୍ତିଷ୍କଟିକୁ ବୃଥାରେ ନଷ୍ଟ କର ନାହିଁ । ତିରିଶ ଟଙ୍କାରେ ଏହାଠାରୁ ଆଉ ଭଲ ଘର ମିଳିବ ନାହିଁ । ତମେ ପ୍ରତିଦିନ ଏମିତି ବକ ବକ ହେଲେ ମୁଁ ଆଉ କଣ କରିବି ?"

ସୌଦାମିନୀ ଦେବୀ କଣ କହିବାକୁ ଯାଉଥିଲେ, ଏହି ସମୟରେ ଦାଣ୍ଡରେ ଚିତ୍କାର ଶୁଭିଲା । ବୁଦ୍ଧନାଥ କୋଥଳୀ ଥୁଡ଼ ଦେଇ ଦାଣ୍ଡକୁ ଦୌଡ଼ିଲେ । ସାନ ଝିଅଟା ଗୁରୁଣ୍ଡି ଗୁରୁଣ୍ଡୀ ଏକୁଣ୍ଡି

ଉପରୁ ନର୍ଦ୍ଦମାରେ ଖସିପଡ଼ି ପଙ୍କରେ ଜଡ଼ସଡ଼ ହୋଇଗଲୁଣି । ଲୋକ ଜମି ଯାଇଛନ୍ତି । ପାଟି ଶୁଭୁଛି । ବୁଦ୍ଧନାଥ ପିଲାଟିକୁ ନର୍ଦ୍ଦମାରୁ ଉଦ୍ଧାର କଲେ । କୂଅ ପାଖକୁ ଆଣି ତାକୁ ଧୋଇ ସାବୁନରେ ଘଷାକଲେ । ସୈରନ୍ଧ୍ରୀ ଦେବୀ ତାତି ଯାଇ ଚଣ୍ଡୀରୂପ ଧରିଛନ୍ତି । "ଆଜି ଏ ଘର ଛାଡ଼ି । ନ ହେଲେ ମୁଁ ଆଜ ଯାଉଛି ଗାଁକୁ, ନ ହେଲେ ମୋ ବାପଘରକୁ । ଆରେ କୁନା ! ଆଲୋ ନିଆଁ ଲାଗି ସୁନା ! ଆଣ ସବୁ ପେଣ୍ଡ ପିନ୍ଧ । ସମସ୍ତେ ଚାଲ । ସେହି ରହନ୍ତୁ ଏକା ଏ ଘରେ । କାହାକୁ ସେ ରଖିବ ନି । ସମସ୍ତଙ୍କୁ ମାରିବ । ଚାଲ ରେ ଚାଲ, ଆଲୋ ସୁନା ! କଲୋ ଆସୁଛୁ ନା ନାହିଁ ?"

ବୁଦ୍ଧନାଥ କିଂକର୍ତ୍ତବ୍ୟବିମୂଢ଼ ହୋଇ ଦୋଷୀଟିଏ ଭଳି କାନ୍ଥକୁ ଆଉଜି ଛିଡ଼ା ହୋଇଛନ୍ତି । ପ୍ରକୃତରେ ଏ ଅଭିଯୋଗର କିଛି ଉତ୍ତର ନାହିଁ । ଏହା ଯଥାର୍ଥ । କିନ୍ତୁ ଏହା ବୋଲି ଆଉ କଣ କରାଯାଏ ? ସ୍ତ୍ରୀଙ୍କୁ ଆଉ କିଛି କହିବାକୁ ସେ ଉଚିତ ମନେକରୁ ନାହାନ୍ତି । ପଦେ କହିଲେ ତାହା ନିଆଁରେ ଘିଅ ପକାଇଲା ଭଳି ହେବ । କିନ୍ତୁ ସ୍ତ୍ରୀ ଯେଉଁଭଳି ରଡ଼ି ଛାଡ଼ିଲେଣି, ନିଶ୍ଚୟ ସାହିଲୋକେ ଅଳ୍ପକାଳ ମଧ୍ୟରେ ଘର ଭିତରେ ଜମିଯିବେ । ଆଉ ଶେଷରେ ଇଜ୍ଜତଟା ଯିବ । କଣ କରାଯିବ ? କିଛି ଉପାୟ ସ୍ଥିର ନ କରୁଣୁ ହଠାତ୍ ଦାଣ୍ଡଦୁଆରୁ କିଏ ଡାକିଲା—

"ବୁଦ୍ଧନାଥ ଅଛୁ କି ରେ ???"

ବୁଦ୍ଧନାଥ ପ୍ରଥମେ ସ୍ୱର ଚିହ୍ନି ପାରିଲେ ନାହିଁ । ଦାଣ୍ଡ ଦୁଆରକୁ ଯାଇ ଦେଖିଲେ, ପିଲାଦିନର ବନ୍ଧୁ ଆଦିକନ୍ଦ ବାହାରେ ରିକ୍ସା ଛିଡ଼ା କରାଇ ନିଜେ ଦୁଆର ମୁହଁରେ ଠିଆହୋଇଛି ।

"ଆରେ ଅ.ଦ୍ଵକନ୍ଦ ! କଣ ଭାଇ ! ଆଜକୁ ପନ୍ଦର କୋଡ଼ିଏ ବର୍ଷ ହେଲା ଦେଖାନାହିଁ ! ସେହି ତ ମେଟ୍ରିକ ପଢ଼ିବାବେଳୁ— ଆ, ଆ ଭାଇ, ଭିତରକୁ ଆ ।"

ଆଦ୍ଵକନ୍ଦକୁ ଦାଣ୍ଡରେ ଠିଆକରାଇ ବୁଦ୍ଧନାଥ ଚଞ୍ଚଳ ଘର ଭିତରକୁ ପଶିଲେ । ଆଉ ଧୀର ଗଳାରେ ସୈରନ୍ଧ୍ରୀ ଦେବୀଙ୍କ ପାଖକୁ ଯାଇ ପ୍ରାର୍ଥନା କଲେ—

"ହେଇଟି ହେ ! ଶୁଣୁଛ କୁନାବୋଉ ! ଅ.ମର ଗ୍ରାମର ସେ ମୋର ସାଙ୍ଗ ଆଦ୍ଵକନ୍ଦ ଆସିଛୁ । ନିକଏ ଟାଟି ବନ୍ଦ କର । ପରେ ପଛେ ସେ ଗଲେ ଭାରି ପାଟି ଆରମ୍ଭ କରିବ । ତମ ମହାଭାରତ ଯୁଦ୍ଧର ଆଉ ଓଳିଏ ମାନ ଆପାତତଃ ବର୍ତ୍ତମାନ ଲାଗି ବାକୀ ଥାଉ ।

ସୈରନ୍ଧ୍ରୀ ଦେବୀ ଭଦ୍ରଘରର ଝିଅ ଆଉ ଭଦ୍ରଘରର ବୋହୂ । ମନର ରାଗ ମନରେ ରଖି ସେ ଆଉ ବଚସା ନ କରି ଶୋଇବାଘରକୁ ଉଠିଗଲେ । ବୁଦ୍ଧନାଥ ଖୁସି ହୋଇ ମନେ ମନେ ଈଶ୍ଵରଙ୍କୁ ପ୍ରାର୍ଥନା କଲେ—

"ଯଦା ଯଦା ହି ଧର୍ମସ୍ୟ ଗ୍ଲାନିର୍ଭବତି ଭାରତ—ହେ ପ୍ରଭୁ; ଯେତେବେଳେ କଳିର ମାତ୍ରା ଜୋର୍‌ରେ ବଢ଼ି ଉଠେ ଆଉ ସାଧୁମାନେ କିଂକର୍ତ୍ତବ୍ୟବିମୂଢ଼ ହୋଇ ବ୍ୟସ୍ତ ବିକଳ ହୋଇ-ପଡ଼ନ୍ତି; ତୁମେ କେବେ ମଧୁସୂଦନ ରୂପରେ—କେବେ ବୈଷ୍ଣବ ଚୌଧୁରୀ ରୂପରେ, କେବେ ଯୋଗେନ୍ଦ୍ର ଦାସ ରୂପରେ—କେବେ ବା ରାଜୁମାହାନ୍ତି ରୂପରେ, କେବେ ବା ଆଦ୍ଵକନ୍ଦ ରୂପରେ ସହସା ଆବିର୍ଭୂତ ହୋଇ ଭକ୍ତ ସ୍ଵାମୀମାନଙ୍କୁ ଏହିପରି ମହାକାଳସ୍ଵରୂପିଣୀ ଗୃହିଣୀମାନଙ୍କ ହସ୍ତରୁ ରକ୍ଷାକର । ପ୍ରଭୁ ହେ ! ତମର ଏହି-

ଅଘଟଣଘଟଣପଟୀୟସୀ ଶକ୍ତି ଆମ ଭଳି ନରାଧମମାନଙ୍କୁ ଅଗୋଚର ।”

ତା ପରେ ବୁଦ୍ଧନାଥ ଘରକୁ ଯାଇ ଆନନ୍ଦକନ୍ଦଙ୍କୁ ଘର ଭିତରକୁ ଡାକିଲେ । ଆନନ୍ଦକନ୍ଦ ଆସିଲେ, ପାନ ଖାଇଲେ, ପିଣ୍ଡାରେ ମଶିଣା ପକାଇ ବସିଲେ ।

“ଆଉ, ଆଜିକାଲି କ'ଣ କରୁଛ ଆନନ୍ଦକନ୍ଦ ? ବହୁଦିନ ହେଲା ତୁ କୁଆଡ଼େ ଅନ୍ତର୍ଦ୍ଧାନ ହୋଇଥିଲୁ ? କଣ କହ ମ ?”

“କଣ ଆଉ ଭାଇ କହିବି ? ମୁଁ ଟିକିଏ ଭାଇ ବ୍ୟସ୍ତ ଅଛି । କେତେ ଘାଟରୁ ପାଣି ପିଇ ପିଇ ଆସିଲିଣି—ମାଟ୍ରିକ ଖଣ୍ଡିକ ହେଲା ନାହିଁ, ତମେ ସବୁ କେତେ ପାଠ ପଢ଼ିଲ । ସେ ଯାହାହେଉ, ଗୁଡ଼ାଏ ଦିନ କଣ୍ଟ୍ରାକ୍ଟି କଲି କଲିକତାରେ । ବହୁ ପଇସା କମେଇଲି । ବହୁ ପଇସା ବି ଉଡ଼ାଇଲି । ତା ପରେ ଥୋଡ଼େଦିନ ଠାଠାରେ ବି ଚାକିରି କଲି । ଚାକିରି ଭାଇ ଆମମାନଙ୍କ ଭଳି ଲୋକଙ୍କୁ ପୋଷାଏ ନାହିଁ । ଶେଷକୁ ତାକୁ ବି ଛାଡ଼ିଲି । ସାହାବ ସାଙ୍ଗରେ ପଡ଼ିଲା ନାହିଁ । ବର୍ତ୍ତମାନ ଗ୍ରାମରେ ଲୁଗା ଦୋକାନଟିଏ ନେଇଛି । ସାଙ୍ଗେ ସାଙ୍ଗେ ଗୁଆଗୁଣ୍ଡି ଆଉ ମନୋହରୀ ଦୋକାନଟିଏ ବି ବସାଇଛି । ବ୍ୟବସାୟରେ ଭଲ ଦି'ପଇସା ମିଳୁଛି ବୁଦ୍ଧନାଥ ! କିନ୍ତୁ ଭାରି ଖଟଣି, ଭାରି ଝିଂଜଟ, ଘଡ଼ିଏ ନିଶ୍ୱାସ ମାରିବାକୁ ତରନାହିଁ । ଦେଖୁନୁ, ତୋ ପାଖେ ପାଞ୍ଚ ମିନିଟ ବସିବାକୁ ଇଚ୍ଛା ଥିଲେ ବି ଆଉ ବସି ପାରୁନାହିଁ । ହଉ, ମୁଁ ଯାଉଛି, ତୁ ଥା । ହଁ ବୁଦ୍ଧନାଥ ! ଯାହା ହେଉ, ତୁ ଆମର ଏଠି ଘର ଖଣ୍ଡେ ପାଇଛୁ । ଭାରି ଭଲ ହେଲା । ମଝିରେ ମଝିରେ କଟକ ଆସି ମଣିଷ ରହିବା ସକାଶେ ଭାରି ଅଡ଼ୁଆରେ ପଡ଼ୁଥିଲି । ମୁଁ ଫେର୍ ଆସିବି ଯେ—

ହଁ ବୁଦ୍ଧନାଥ ! ଏ କେତୁଟା କେରୋସିନ୍ ପଟାର ଚାଉଳ ମୁଁ ଏଠି ରଖିଦେଇ ଯାଉଛି । ପରେ ଆସି ନେଇଯିବି । ବର୍ତ୍ତମାନ ଷ୍ଟେସନରୁ ମାଲ୍ ପାଇଲି । ୧୫ଦିନ ହେଲା ଆସି ମାଲ୍ କଲିକତାରୁ ପଡ଼ିଛି । ବହୁତ ଗୁର୍ଜ ଚଢ଼ିଗଲା; ଅଧିକା କଣ କରିବି ଭାଇ, ଜଣେ ବୋଲି ମଣିଷ, ଏଣେ ବଜାରେ ଫଳ । ଏହି ୫ଟା ଚାଉଳ, କାଚ ଜିନିଷ କିଛି ଅଛି, କିଛି ବାସନାତେଲ ଓଗେରା; ଆଉ ଦୁଇଟାରେ ରେଡ଼ିମେଡ଼୍ ପେଣ୍ଟ-କୁର୍ତ୍ତା ସବୁ ଅଛି । ଏଥର ଆଉ ଗ୍ରାମକୁ ନେଇ ହେବ ନାହିଁ । ମାଲ ଆସିବାର କଥା ମାସକ ଆଗରୁ । ଏତେ ଡେରିରେ ଆସି ଏବେ ପହୁଞ୍ଚିଲା । ମୁଁ କରେ କଣ ? ନଈରେ ପାଣି ଆସିଗଲାଣି । ଆଉ ମଟରରେ ଯିବା କଥା ଅସମ୍ଭବ । ଡଙ୍ଗାରେ ନେବାର ବନ୍ଦୋବସ୍ତ କରିବି । ଡଙ୍ଗା ଏବେ ସହଜରେ ମିଳୁଚି କୋଉଠି ?

ଏତିକ ଜିନିଷ ଲାଗି ତ ଆଉ ଗୋଟେ ଡଙ୍ଗା ଭଡ଼ା ନେବି ନାହିଁ ! ଓର ଉଣ୍ଡି ବୋଝେଇ ଡଙ୍ଗା ଯଦି କାହାର ଯାଉଥିବ, ତେବେ ମୋର ଏଇ କେଇଟା ଜିନିଷ ସେଥିରେ ପକାଇଦେବି । ହଉ ଭାଇ ଥା; ମୋର ଆଉ ବେଳ ନାହିଁ । ହେ ରେକ୍ସାବାଲା ! ଆଣ, ଧର; ସେ ଚାଉଳଗୁଡ଼ାକ ଏ ଘର ଭିତରକୁ ଆଣ ।

ଧରାଧରି କରି ଆନନ୍ଦ ଓ ରେକ୍ସାବାଲା କେରୋସିନ୍ ପଟାର ଚାଉଳଗୁଡ଼ିକୁ ଆଣିଲେ ଏବଂ ପିଣ୍ଡାରେ ଥୋଇଦେଇ ଚାଲିଗଲେ । ସେମାନେ ଗଲା ପରେ—

ବୁଦ୍ଧନାଥ ବନ୍ଧୁତାର ଖାତିରରେ ଅବଶ୍ୟ କିଛି କହି ପାରିଲେ ନାହିଁ । ମାତ୍ର ପରେ ଭାବିଲେ, ଏଇ ଯେ ପାଞ୍ଚ ପାଞ୍ଚଟା ଚାଉଳ; ଏ ସବୁ ରହିବ କୋଉଠି ? ଆଉ ଘରେ ଜାଗା କାହିଁ ?

ପିଣ୍ଡା ତ ନାହିଁ । ଯାହା ଟିକେ ଅଛି, ସେଠି ବସି ଖିଆପିଆ କରା-ଯାଉଛି । ବଖରାଏ ତ ମୋଟେ ଶୋଇବାଘର । ସେ ପୁଣି ଚଟାଣଟା ସିମେଣ୍ଟ ନୁହଁ, କଚ୍ଚା । କେଉଁଠି ଏ ଚାଉଳ ସବୁ ରହିବ ? ବୁଦ୍ଧନାଥ ମହାଚିନ୍ତାରେ ପଡ଼ିଲେ ।

ସୈରିନ୍ଧ୍ରୀ ଦେବୀ ଏ ପର୍ଯ୍ୟନ୍ତ ଭଦ୍ରତା ଖାତିରରେ କିଳ ମଧ୍ୟରେ ଲୁଚିଥିଲେ । ହଠାତ୍ ପଦାକୁ ବାହାରି ଆସି ଦୁଆରେ କରେହିନ୍ ପଟାର ଏତେଗୁଡ଼ାଏ ଚାଉଳ ଦେଖି ତାଙ୍କ ମୁଣ୍ଡକୁ ପୁଣି ପିତ୍ତ ଚଢ଼ିଗଲା । ସେ ଆଉ ଗୌରଚନ୍ଦ୍ରିକା ନ କରି ସିଧା ଆରମ୍ଭ କଲେ—

"ହଉ, ଏଥରକ ଆମେ ଯାଉଛୁ । ଏ ଘରେ ତମେ ଏଣିକି ଚାଉଳ ସବୁ ରଖ । ଯୋଉ ତ ଘର ! ବଖରାଏ ବୋଲି ଘର ! କୋଉ ପସନ୍ଦରେ ତମେ ତାଙ୍କର ଚାଉଳଗୁଡ଼ାକ ଏଠି ରଖିବାକୁ "ହଁ" ମାରିଦେଲ ? ନାଇଁ, ନାଇଁ, କେମିତିକା ପସନ୍ଦ ତୁମର ? ସେ ତାର କଟକ ଆସିଛି, ବ୍ୟବସାୟ କରୁଛି, ସେ ତାର ଯୋଉଠି ଜିନିଷପତ୍ର ରଖିଥାନ୍ତା । ତମେ କାହିଁକି ଏଡ଼େ ବାହାଦୂରୀ ଦେଖାଇ ତା' ଚାଉଳ ସବୁ ରଖିଲ ? ଲାଜ ନାହିଁ ତମ ମୁହଁକୁ ? କୋଉ ଏମିତି ପାଞ୍ଚ ମହଲା ଘର ଭଡ଼ା ନେଇ ରହିଛ ଯେ—

ବୁଦ୍ଧନାଥ ଦୋଷୀ ଭଳି ଅତି ନିମ୍ନଗଳାରେ କହିଲେ—

"ମୁଁ ଏ ଚାଉଳ ସବୁ..ରଖିଲି ନା ସେ ବଳେ ବଳେ ରଖି ଦେଇଗଲା ?"

"କାଇଁକି, ତମେ ମନା କଲ ନାହିଁ !"

"ତା ମୁଁ ଆଉ କେମିତି ମନା କରି ଥାଆନ୍ତି । କେତେ କାଳ ପରେ ଦେଖା । ପିଲାଦିନେ ସାଙ୍ଗ ହୋଇ ପଢ଼ୁଥିଲୁ । ମୁଁ ହଠାତ୍ କେମିତି ମନା କରିଦେଇ ଥାଆନ୍ତି ?"

ସୈରନ୍ଧ୍ରୀଦେବୀ ଖେଙ୍କାରି ଉଠିଲେ ।

"ନାଇ ତ ମନା କରି ଦେଇଥିଲେ ପୃଥିବୀ ଓଲଟି ପଡ଼ିଥାନ୍ତା । ଆହା—ହା—ହା—କେଡ଼େ ଦୟାଳୁ ମଣିଷ ! ହଉ, ତମେ ଏବେ ଏ ଘରେ ଚାଉଳ ରଖ, ନ ହେଲେ ଆଉ ପାଞ୍ଚଟା ମାଇପ ଆଣି ରଖ । ମୁଁ ଆଜି ଯାଉଛି । ଆଇଲୁ ରେ କୁନା, ଆଲୋ ଛତରଖାଇ ସୁନା ! କ ଲୋ ! ମୁଁ ପରା କହୁଛି ପେଣ୍ଠ ପିନ୍ଧ ବୋଲି ।"

ପଞ୍ଚମ ଶ୍ରେଣୀରେ ପଢ଼ୁଥିବା ବଡ଼ପୁଅ କୁନା କହିଲା—

"ମାଆ, ତୁ ତ ଆଗ ଶାଢ଼ୀ ପିନ୍ଧିନାହୁଁ, ଆମକୁ କଅଣ କହୁଛୁ ?" ସୈରନ୍ଧ୍ରୀଦେବୀ ଆହୁରି ଚିଡ଼ିଗଲେ ।

"ହଇ ରେ ପାଜି ଟୋକା, ତୋ ବାପା ମୋ ପାଇଁ କେତେଟା ଶାଢ଼ୀ କିଣି ରଖିଛି, ହଇ ରେ ? ଛତରା ଟୋକା !"

ସୈରନ୍ଧ୍ରୀଦେବୀ ପୁଅକୁ ବାଡ଼େଇବା ପାଇଁ ଧାଇଁଲେ । ପୁତ୍ରମଣି ଆଗେ ଆଗେ ଦଉଡ଼ୁଛନ୍ତି । ଗ୍ରେଟ ଅଗଣାଟି ଭିତରେ କନ୍ଧ କାଟି ବୃତ୍ତାକାରରେ ଘୂରୁଛନ୍ତି । ସୈରନ୍ଧ୍ରୀଦେବୀ ଅନ୍ଧ ଭଳି ପଛେ ପଛେ ଧପାଉଛନ୍ତି । କେଶମୁକୁଳିତ, ବସନ ଅସମ୍ଭାଳ, ସ୍ୱର ଉଠିଛି ସପ୍ତମକୁ । ଦଉଡ଼ୁ ଦଉଡ଼ୁ ଅନ୍ଧ ଭଳି ସୈରନ୍ଧ୍ରୀଦେବୀ ସେଇ ଚାଉଳଗୁଡ଼ିକୁ ଝୁଣ୍ଟିଲେ ଆଉ ପଡ଼ିଗଲେ । ତା ପରେ ଆରମ୍ଭ ହେଲା କାନ୍ଦଣା । ଆଉ ବିଚରା ବୁଦ୍ଧନାଥ ଓ ତାଙ୍କ ପୂର୍ବପୁରୁଷଙ୍କ ଉପରେ ଦାରୁଣ ଅଭିସମ୍ପାତ । ବୁଦ୍ଧନାଥ ନୀରବରେ କିଂକର୍ତ୍ତବ୍ୟବିମୂଢ଼ ହୋଇ କାନ୍ଥକୁ ଆଉଜି ଠିଆ ହୋଇ ରହିଲେ; ଆଉ ମନେ ମନେ ଈଶ୍ୱରଙ୍କୁ ପ୍ରାର୍ଥନା କଲେ ।

"ହେ ଈଶ୍ୱର ! ତୁମେ ମଣିଷକୁ ସୃଷ୍ଟି କଲ କାହିଁକି ? ଯଦି ବା କଲ, ତେବେ ନାରୀମାନଙ୍କୁ ସୃଷ୍ଟି କଲ କାହିଁକି ? ଯଦି ବା କଲ, ତେବେ ସେମାନଙ୍କୁ ପୁରୁଷର ଘରଣୀ କଲ କାହିଁକି ? ଆଉ ଯଦି ବା କଲ, ତେବେ ତା ମନକୁ ଗୃହିଁ ଘରଟିଏ ନ ଦେଲ କାହିଁକି ? ଶେଷରେ ଯଦି ବା ଘରଟିଏ ଦେଲ, ତେବେ ସେ ଘରକୁ ଅକସ୍ମାତ୍ ଏ ଡାବଲ ପଠାଇଲ କାହିଁକି ?"

ଯେଉଁ ଯେଉଁ ବ୍ୟାପାରଗୁଡ଼ିକର ଆରମ୍ଭଟା ଖୁବ୍ ଆଡ଼ମ୍ବର ହୁଏ କିନ୍ତୁ ନିଷ୍ପତ୍ତିଟା ହୁଏ ଲଘୁ—ଦାମ୍ପତ୍ୟକଳହ ବ୍ୟାପାରଟି ତାର ନିଶ୍ଚୟ ଅନ୍ତର୍ଭୁକ୍ତ । ମାତ୍ର ବୁଦ୍ଧନାଥଙ୍କ ଜୀବନରେ ଏହି ମହାସତ୍ୟଟି ମଧ୍ୟ ମିଥ୍ୟାରେ ପରିଣତ ହେଲା । "ଘର" ନେଇ ଘରଣୀଙ୍କ ସଙ୍ଗେ ଦ୍ୱନ୍ଦ୍ୱ କଳହ ହେଉଥିଲା । ଏଣିକି ସେଇ "ଡାବଲ"ଗୁଡ଼ିକ ଲାଗି ମଧ୍ୟ ଦିନରାତି ଖିଟ୍‌ଖିଟ୍ ଲାଗିଲା । ବୁଦ୍ଧନାଥ ଅବଶ୍ୟ ମନେ ମନେ ଭାରି ଚିଡ଼ିଗଲେଣି । ପ୍ରକୃତରେ ଏତେ ସଙ୍କୀର୍ଣ୍ଣ ଘରେ ଏତେଗୁଡ଼ାଏ ପିଲାଙ୍କୁ ନେଇ ଚଳିବା, ପୁଣି ଏଭଳି ରୋଗିଣା ଆଉ ଜନ୍ମକାରଣୀ ସ୍ତ୍ରୀ, ସେଥିରେ ପୁଣି ଏ ଡାବଲଗୁଡ଼ାକ ! ବାସ୍ତବିକ ବଡ଼ ସ୍ୱାର୍ଥପର ଏ ଦୁନିଆଁ ! କେହି କାହା ସୁବିଧା-ଅସୁବିଧା ବୁଝିବାକୁ ନାରାଜ । ଆଜିକାଲି ଗ୍ରାମରେ ବ୍ୟବସାୟ କରୁଛି, କମ୍ ପାଠ ପଢ଼ିଛି, ରୋଜଗାର କିଏ କମ୍ କରୁଥିବ ? ହଜାରେ ଫନ୍ଦା ମେଲିଛି ହଜାରେ ଆଡ଼େ । ଅଥଚ ଡାବଲ୍‌ଗୁଡ଼ା ଆଣି ଏଠି ଥୋଇଦେଇଗଲା, ଟିକିଏ କଅଣ ମୋର ଅସୁବିଧା ଦେଖିଲା !! ବୁଦ୍ଧନାଥ ମନେ ମନେ ଭାରି ବ୍ୟସ୍ତ ହେଲେ । ଖାଲି

ଚାବଲଗୁଡ଼ାକ ଥିଲେ, ସେ ସେଗୁଡ଼ାକ ପଦାକୁ ବାହାର କରି ଦିଅନ୍ତେ । ମାତ୍ର ସବୁ ଚାବଲଗୁଡ଼ାକ ଭିତରେ ପୁଣି ମୂଲ୍ୟବାନ ମାଲ ପୂରିରହିଛି । ଫ୍ୟାକ୍ଟରି ନାଇଁ, ହୋଇପାରେ ସେଗୁଡ଼ାକ ପାଆଁଶ ଟଙ୍କାର ଜିନିଷ । କଣ କରାଯାଏ !

ବୃନ୍ଦନାଥ ବହୁ ଉପାୟ ଚିନ୍ତା କଲେ । ଜ୍ଞାବଲ ଗୁଡ଼ାକର ସ୍ଥାନାନ୍ତରୀକରଣ ଲାଗି କୌଣସି ଉପାୟ ସ୍ଥିର କରି ହେଲାନାହିଁ ।

ଯୈରିନ୍ଧ୍ରୀଦେବୀ ବାପଘରକୁ ବା ଗ୍ରାମକୁ ପଳାଇ ନ ଗଲେ ବି ପ୍ରତିଦିନ ପଳାଇ ଯିବାର ଧମକ ଦେଉଛନ୍ତି । ଅବଶ୍ୟ ଗର୍ଭସ୍ଥ ଜନ୍ତୁଟିର ଭୂମି-ପତନ ପୂର୍ବରୁ ସେ ଯେ କୁଆଡ଼େ ପଳାଇ ପାରିବେ ନାହିଁ, ଏ କଥା ବୃନ୍ଦନାଥ ଧ୍ରୁବ ଜାଣନ୍ତି । ମାତ୍ର ସବୁ ସମୟରେ "ସ୍କନ୍ଦଂ" ତ ବାଧେ ନାହିଁ, ବେଶି ସମୟ "ବାଧତି" ଏଇ ଭୁଲଟା--ଇ ବାଧେ ।

ତା'ଛଡ଼ା ଘରକରି ଗୁଳିଯିବାର ଭୟ ଅପେକ୍ଷା, ହାକିମଙ୍କର ଘରକରି ନେଇଯିବାର ଧମକଟା ତ ବେଶି ବାଧେ ।

ବୃନ୍ଦନାଥ ଦିନରାତି କେବଳ ଚାବଲଗୁଡ଼ାକ ବିଷୟରେ ହିଁ ଚିନ୍ତା କରିବାକୁ ଲାଗିଲେ । ଇତିମଧ୍ୟରେ ଇଜିପ୍ଟର ପ୍ରଧାନମନ୍ତ୍ରୀ ନାସେର ସୁଏଜ କେନାଲକୁ ଜାତୀୟକରଣ କଲେ । ବୃନ୍ଦନାଥଙ୍କ ଅଫିସରେ ଏ ବିଷୟ ନେଇ ଦଶମିନିଟ୍ କାଳ ଭୀଷଣ ଆଲୋଚନା ମଧ୍ୟ ହେଲା । ମାତ୍ର ବୃନ୍ଦନାଥଙ୍କର ପ୍ରଧାନ ସମସ୍ୟା ହେଉଛି, ଏଇ ଚାବଲଗୁଡ଼ାକ ।

ମାସେ ଗଲା, ଦୁଇ ମାସ ଗଲା । ପାଞ୍ଜ, ସ୍ୱାର୍ଥପର ଆଦିବନ୍ଧର ଦେଖାନାହିଁ । ଚାବଲଗୁଡ଼ାକ ନିକଟରେ ନେଇଯିବାର କିଛି ସୂଚନା ମଧ୍ୟ ନାହିଁ । ଚାବଲଗୁଡ଼ାକ ଶୋଇବାଘରର ଅଧେ

ମାଡ଼ ବସିଛୁ । ସେଠି ଝୁଣ୍ଟୁଣୀ ବାଜୁନାହିଁ । ବାଜିବାର ଉପାୟ ବ ନାହିଁ । ବୁଢ଼ୀଅଣୀ ବସା, ଅଳନ୍ଧୁ, ଧୂଳି, ଝିଟିପିଟି ଆଉ ଲକ୍ଷ ଲକ୍ଷ ମଶାଙ୍କର ଆଶ୍ରୟସ୍ଥଳୀ ।

ହଠାତ୍ ଦିନେ ବୁଦ୍ଧନାଥ ଚିଠି ପାଇଲେ ଅଦିକନ୍ଦ ଠାରୁ । ସାଙ୍ଗ ଲେଖିଛୁ—

"ପ୍ରିୟ ବୁଦ୍ଧନାଥ ! ଚାବଲଗୁଡ଼ାକୁ ଆଣି ପାରିନାହିଁ । ସେମିତି ସୁବିଧାରେ ଡଙ୍ଗା ପାଇଲି ନାହିଁ । ହଠାତ୍ ବର୍ଷାକାଳ ପହଁଚ ଗଲା । ବର୍ତ୍ତମାନ ବ କଟକ ଯିବା ସମ୍ଭବ ନୁହେଁ । ଏ ଋତୁରେ ମଧ୍ୟ ମଫସଲର ବଜାର ବଡ଼ ମାନ୍ଦା ପଡ଼ିଛୁ । ମନୋହାରୀ ଜିନିଷପତ୍ର କିଣିବାକୁ ଲୋକଙ୍କ ହାତରେ ପଇସା ନାହିଁ । ଧାନ ଚାଉଳର ବଜାର ବଡ଼ ତାଜା ଅଛି । ବର୍ତ୍ତମାନ ସେଇଥିରେ ହାତ ଦେଇଛୁ ପୂରାପୂରି । ଭଲ ଲାଭ ହିଁ ଦି ପଇସା ମିଳୁଛି ଏଥିରେ । ହଉ, ଆଉ ବା କେଇଦିନ ? ଆଉ ମାସ ଦି'ଟା ଗଲେ ଶୁଆଁଳିଧାନ ଅମଳ ହୋଇଗଲେ, ଏ ବଜାର ଫେର ମାନ୍ଦା ପଡ଼ିଯିବ । ତେବେ ସେ ବେଳକୁ ଅନ୍ୟ ବଜାର ପୁଣି ତେଜି ଉଠିବ । କୃଷୀ ହାତରେ ପଇସା ହୋଇଯିବ ସେତେବେଳେ । ତେଣୁ ମନୋହାରୀ ଜିନିଷ ଉପରେ ସେତେବେଳେ ପୁଣି ଚାହିଦା ବଢ଼ିଯିବ । ଧର ଏଇ ଆସନ୍ତା ଦଶହରାଠାରୁ ପୁଣି ।

× × × ହଁ, ଚାବଲଗୁଡ଼ାକ ଅଟିଣ ଅଡ଼ିକୁ ମାନେ ଦଶହରା ପୂର୍ବରୁ ନିଶ୍ଚୟ ନେଇ ଆସିବାକୁ ଚେଷ୍ଟାକରିବ ।

ହଁ, ଦେଖ ଭାଇ, ଠିକେ ଚାବଲଗୁଡ଼ାକର ଯତ୍ନ ନେଉଥିବୁ । ଚୋର ତ ପିଲାଛୁଆ ଘର, ଚିଲାଏ ସେମିତି ନ ଲାଗନ୍ତି ! କାଚ ଜିନିଷଗୁଡ଼ାକ ଅଛି କି ନା !!

ବୃନ୍ଦାଥ ଚଠିଟାକୁ ପଢ଼ି ମନେ ମନେ ଦାନ୍ତ ରଗଡ଼ିଲେ, ଚଠିଟିକୁ ଟିକିଟିକି କରି ଚିରି, ସେ ତା' ଉପରେ ଛେପ ପକାଇଲେ, ତାପରେ ସେ ଅଫିସରୁ ଘରକୁ ଫେରି ବାଟଯାକ ଭାବି ଭାବି ଆସିଲେ, ବାସ୍ତବିକ, ଏଭଳି ସ୍ୱାର୍ଥକେନ୍ଦ୍ରିକ ବିଚିତ୍ର ସହାନୁଭୂତିହୀନ ନିର୍ଦ୍ଦୟ ଦୁନିଆଁରେ ନିର୍ଲିପ୍ତ ସାଧୁମନୋବୃତ୍ତି ଧାରଣ କରି ବଞ୍ଚିବା ଅସମ୍ଭବ । ବୁଦ୍ଧନାଥଙ୍କର ମନେହେଲି, ଏଇ ଆନନ୍ଦକନ୍ଦ ହିଁ ଜଗତର ସମସ୍ତ ଧୂର୍ତ୍ତ, ସୁବିଧାବାଦୀ ଆଉ ମୁନାଫାଖୋରମାନଙ୍କର ପ୍ରତୀକ । ଆଉ ଏଇ ତାଙ୍କର ସ୍ତ୍ରୀ ସୌଦାମିନୀଦେବୀ, ଯେପରି ଏଇ ସବୁ ଅନ୍ୟାୟ ବିରୁଦ୍ଧରେ ଏକ କରୁଣ, ଦୁର୍ବଳ, କ୍ଷୀଣ ପ୍ରତିଧ୍ୱନିର ନିଷ୍ଫଳ ପ୍ରତିବାଦର ପ୍ରତୀକ !! କିନ୍ତୁ ସେ ନିଜେ ? ସେ କିଏ ?? ସେ କାହାର ପ୍ରତୀକ ??? ବୁଦ୍ଧନାଥ ମନେ ମନେ ଏ ପ୍ରଶ୍ନର ଉତ୍ତର ଖୋଜୁଛନ୍ତି । ବ୍ୟସ୍ତ ହୋଇ ଖୋଜୁଛନ୍ତି । ସେ ନିଜେ କାହାର ପ୍ରତୀକ ? ତାଙ୍କ ସଂସାରରେ ଯାବତୀୟ ଦୁର୍ଘଟଣା ଲାଗି ସେ କାହାକୁ ଦାୟୀ କରି ପାରୁନାହାନ୍ତି । ଈଶ୍ୱରଙ୍କୁ ସେ ଦାୟୀ କରି ନ ପାରନ୍ତି । କାରଣ ଈଶ୍ୱରଙ୍କ ସମ୍ପର୍କରେ ତାଙ୍କର ଭାବପ୍ରବଣତା ସ୍ୱତଃ ନୁହେଁ । ଏହା ଏକ ଦୁର୍ବଳ ଇଚ୍ଛାଶକ୍ତିର ଅବଲମ୍ବନ ମାତ୍ର । ସଂସ୍କାରକୁ ଉପାୟହୀନ ମାଡ଼ି ବସି ଧରି ରଖିବା ଲାଗି ପ୍ରାଣାନ୍ତକ ଚେଷ୍ଟା । ତେଣୁ ସେ ଚେଷ୍ଟାରେ ନାହିଁ ବୁଦ୍ଧନାଥଙ୍କର ଆତ୍ମାର ସମର୍ଥନ ବା ସହଯୋଗ । ଫଳରେ ନିଜକୁ ଈଶ୍ୱରାନୁପ୍ରାଣିତ କରିବା ଲାଗି ସେ ଯେତେବେଳେ ଚେଷ୍ଟାକରି ଉଚ୍ଚସ୍ୱରରେ ଈଶ୍ୱରଙ୍କୁ ପ୍ରାର୍ଥନା ବା ଧନ୍ୟବାଦ ଜଣାଇଛନ୍ତି, ତାହା କେବଳ ଅନ୍ୟମାନଙ୍କ ଆଗରେ ହାସ୍ୟାସ୍ପଦ ହୋଇ ନାହିଁ, ନିଜକୁ ମଧ୍ୟ ହାସ୍ୟକର ମନେହୋଇଛି ।

ଆଉ କାହାକୁ ତେବେ ଦାୟୀ କରନ୍ତେ ? ସମାଜ ? ନା ସରକାର ? କିନ୍ତୁ ବୁଦ୍ଧିନାଥ ଏ ବିଷୟରେ ବଡ଼ ଭୀରୁ । ସମାଜ ବା ସରକାରକୁ ଦାୟୀକଲେ ତାଙ୍କର ଚାକିରି ଚାଲିଯିବ ବା ସେ ଜେଲ୍ ଭୋଗିବେ, ଏ ଭୟ ଯୋଗୁଁ ନୁହଁ, ସମାଜ ବା ସରକାରକୁ ଦାୟୀ କଲେ, ସମାଜ ବା ସରକାରୀ ବ୍ୟବସ୍ଥା ବିରୁଦ୍ଧରେ କାର୍ଯ୍ୟ କରିବାର ଦାୟିତ୍ୱ ମଧ୍ୟ ନିଜକୁ ଗ୍ରହଣ କରିବାକୁ ହେବ, କିନ୍ତୁ ବୁଦ୍ଧିନାଥ ଏତେବଡ଼ ଦାୟିତ୍ୱ ଗ୍ରହଣ କରିପାରିବେ ନାହିଁ, ଏତେ ବଡ଼ ଗଣ୍ଡଗୋଳରେ ପଡ଼ିବା ଅପେକ୍ଷା ବରଂ ସନ୍ତସନ୍ତିଆ ବାୟୁମଣ୍ଡଳରେ ସବୁ ଦୁର୍ଘଟଣା ଓ ଅବ୍ୟାପାରକୁ ସହ୍ୟକରି ଧୀରଭାବରେ ଭାଗ୍ୟକୁ ଦୋଷଦେଇ ଭୁଲାଇବା ବରଂ ବେଶି ସହଜ; ତେଣୁ ଅବଶ୍ୟ କରଣୀୟ ।

ଆଜି ହଠାତ୍ ପଥ ମଧ୍ୟରେ, ବୁଦ୍ଧିନାଥ ବୁଝିଲେ ପ୍ରକୃତରେ ସେ କେଡ଼େ ଦାୟିତ୍ୱହୀନ ! ଜୀବନରେ ସମସ୍ତ ଦୁର୍ଘଟଣା ଲାଗି ଯେ ଯୁକ୍ତିଯୁକ୍ତ ଭାବରେ କାହାକୁ ଦାୟୀ ନ କରିପାରେ, ସେ ନିଜେ କେଡ଼େ ଦାୟିତ୍ୱହୀନ !!

ବୁଦ୍ଧିନାଥଙ୍କର ଖିଆଲ ନାହିଁ ସେ ଆସି ଘର ପାଖେ ପହୁଞ୍ଚି ଗଲେଣି । ହଠାତ୍ ନିଜ ଘର ଭିତରୁ ଏକ ଭୟଙ୍କର ଗଣ୍ଡଗୋଳ ତାଙ୍କର ଶ୍ରୁତିପଥାରୂଢ଼ ହେଲା । ସବୁ ପିଲାଗୁଡ଼ାକ କାନ୍ଦୁଛନ୍ତି । ଆଉ ସୌରିନ୍ଧ୍ରୀ ଦେବୀ ବାହୁନା ପକାଇ ରଡ଼ି ଛାଡ଼ୁଛନ୍ତି । ଦୁଆରେ ଓ ଦାଣ୍ଡରେ ବହୁ ଲୋକ ଜମାହୋଇଛନ୍ତି । ଅନ୍ଧାର ହୋଇ ଆସିଲାଣି । ବାହାର ଲୋକଙ୍କର ପାଟିତୁଣ୍ଡ ବି ବଢ଼ୁଛି । ବୁଦ୍ଧିନାଥଙ୍କର ମୁଣ୍ଡ ଘୂରିଇଦେଲା । ସେ କିଛି ବୁଝିପାରିଲେ ନାହିଁ । କଣ ଘଟଣା ?

ଘର ଭିତରେ ପଶି ମଧ୍ୟ ସେ କାହାଠାରୁ କିଛି ସଠିକ୍ ଖବରେ ଶୁଣିପାରିଲେ ନାହିଁ । ତେବେ ଜଣେ କହିଲା—

"ତୁମର ମଝିଆଁ ପୁଅ ମୁନାକୁ କଣ କାମୁଡ଼ ଦେଇଛି ପାଦରେ ।"

ବୁଦ୍ଧନାଥଙ୍କ ମୁଣ୍ଡ ଘୂରାଇଦେଲା ।

"କୋଉଠି ? କଣ କାମୁଡ଼ିଲା ? କାହିଁ ? ମୁନ୍ନା କାହିଁ ? ଆରେ ମୋ ଧନ କାହିଁ ରେ ?" ... ... ...

ଛାତି ଖଣ୍ଡମାରି ଯାଉଛି । ଗୋଡ଼ ଦୋହଡ଼େଇ ପଡ଼ୁଛି । ପାଗଳ ପରି ବୁଦ୍ଧନାଥ ଲୋକଗହଳ ଭିତରେ ଧସେଇ ପଶିଲେ ।

ପିଣ୍ଡାର ଗୋଟିଏ କଣକୁ ମୁନ୍ନା ବସିଛି । ଲୋକେ ଘେରିଛନ୍ତି । ଦୁଇଟା ଗୁଣିଆ ଝଡ଼ାଫୁଙ୍କା କରୁଛନ୍ତି ।

ମୁନ୍ନାକୁ ଚେତିଥିବାର ଦେଖି ବୁଦ୍ଧନାଥଙ୍କ ପିଣ୍ଡରେ ପ୍ରାଣ ପଶିଲା । ସେ ଟିକେ ପ୍ରକୃତିସ୍ଥ ହୋଇ ପୁଅକୁ ଆଉଁସିଲେ ।

"ହେ ଭଗବାନ୍ ! ହେ ଭଗବାନ୍ ! କୋଉଠି ରେ ବାପା ? କୋଉଠି କାମୁଡ଼ିଲା ? ଦେଖି କଣ କାମୁଡ଼ିଛି ? ତୁ ଦେଖିଛୁ ? କହ ବାପା କଣ ! ଦେଖିଲୁ ?"

ଏତେ ଲୋକଙ୍କ ପ୍ରଶ୍ନର ଉତ୍ତର ଦେଇ ଏତେ ଲୋକ-ଗହଳ, ଝାଡ଼ି ଫୁଙ୍କ ଓ ଗଣ୍ଡଗୋଳ ଭିତରେ ମୁନ୍ନା ବି ଆବାକାବା ହୋଇଗଲାଣି । ତେବେ ସେ କହିଲା—

"ସେହି ଡାବଲ ସନ୍ଧିରେ କଣ କାମୁଡ଼ିଦେଲା ଭଳି ଲାଗିଲା । ଏଇ ପାଦକୁ କାମୁଡ଼ିଛି; ରକ୍ତ ବୋହୁଛି ।"

ଜଣେ ଗୁଣିଆ କହିଲା—

ତେମେ ବାବୁ ଜାଣି ନ ଏ ଶଳା ଚିତିସାପଙ୍କ କଥା । ଏ ଶଳା ସାପଙ୍କ ଗୋଟେ ବଦଖୋଇ—ସେଗୁଡ଼ାକ ମଣିଷ

ପାଖରେ ରହିବାକୁ ସୁଖ ପାଆନ୍ତି । ଜୋତା ଭିତରେ,ଘଣ୍ଡି ଭିତରେ, ଅଲ୍ମାରିରେ, ବଇଶା ତଳେ, ତମେ ବାବୁ ଯେ ଢାବଲ ଗୁଡ଼ାକ ସେ ଘରୁ କାଢ଼ । ଢାବଲ୍ ଯୋଡ଼ିଚି; ଏ ଶଳା ଶନ୍ତସାପ ସେଇଟି ।"

ବୃଦ୍ଧନାଥ ସବୁ ଶୁଣି ସାର ଓ ମୁନ୍ନାର ଠିକେ ଭଲ ଅବସ୍ଥା ଦେଖି ଶୋଇବାଘରକୁ ଗଲେ । ଆଜ ସେ ଢାବଲରେ କିରାସିନ ଢାଳି ସେଥିରେ ନିଆଁ ଲଗାଇବେ । ବନ୍ଧୁକଟା ଜଟିଲେ କଟି ପଛେ । ତାଙ୍କ ପଛେ ପଛେ ଲୋକ ବି ଗଲେ ଶୋଇବାଘର ଭିତରକୁ । ସୌଦାମିନୀଦେବୀଙ୍କ କାନ୍ଦଣା ବନ୍ଦ ହୋଇ ନାହିଁ । ବୃଦ୍ଧନାଥ କ୍ରୋଧରେ ଅନ୍ଧ ହୋଇ ଫାଟି ପଡ଼ି ପାଖ ଲୋକଙ୍କୁ କହିଲେ—ଧର ଭାଇ, ଏ ଢାବଲଗୁଡ଼ାକ ଟିକେ ବାହାରକୁ । ସବୁ ଗୁଡ଼ାକ ପଦାକୁ ନେଲେ ନିଆଁ ଲଗିବ ।"

କେତେକ ସ୍ୱେଚ୍ଛାସେବକ ସଙ୍ଗେ ସଙ୍ଗେ ଢାବଲ ସବୁ ଧରି ପଦାକୁ ଆଣିବା ଲଗି ଅଣ୍ଟା ଭିଡ଼ିଲେ । ମାତ୍ର ଏ କଣ ? ଏ କଣ ?

ହଠାତ୍ ଗୋଟେ ଢାବଲକୁ ଟେକୁ ଟେକୁ ତା ଭିତରୁ ପିଇ ସାରିଥିବା ପଇଡ଼ି ଖୋଳ ୧୦-୧୨ଟା ଓ ଗୁଡ଼ାଏ ଉଇମାଟି ଗଳ ଗଳ ହୋଇ ତଳକୁ ଖସିଲା । ବୃଦ୍ଧନାଥ ଏ ବ୍ୟାପାରରେ ଆଶ୍ଚର୍ଯ୍ୟ ହୋଇ ଦ୍ୱିତୀୟ ଢାବଲଟିକୁ ଟେକିଲେ । ତାର ତଳ ମଧ୍ୟ ଉଇ ଖାଇଛି । ବୃଦ୍ଧନାଥ ତାକୁ ଭଲ ଭାବେ ଭାଙ୍ଗି ଦେଖିଲେ, ତା ଭିତରେ ବି ସେଇ ଏକା କଥା । ମାତ୍ର ହଠାତ୍ ଚେଁ ଚେଁ ଶବ୍ଦରେ ବୃଦ୍ଧନାଥ ଚମକି ପଡ଼ିଲେ ।

ଚୁଚୁନ୍ଦ୍ରା—ଚୁଚୁନ୍ଦ୍ରା—ଚୁଚୁନ୍ଦ୍ରା ।

ଅସଂଖ୍ୟ ଲାଲ ଲାଲ ଚୁଟୁନ୍ଦ୍ରାଛୁଆ ସାଲୁ ସାଲୁ ହୋଇ ଚେଁ ଚୁଁ ହେବାର ଲାଗିଲେ । କାହାର ଆଖି ଫିଟି ନାହିଁ । ଆଉ ୩-୪ଟା ବଡ଼ ଚୁଟୁନ୍ଦ୍ରା ଚେଁ ଚେଁ ହୋଇ ବୁଦ୍ଧନାଥଙ୍କ ପାଦ ଚାରି ପଟେ ଆକ୍ରମଣର ପ୍ରତିବାଦ କରି ଘୂରି ବୁଲିଲେ । ବୁଦ୍ଧନାଥ ଏଇ ଚୁଟୁନ୍ଦ୍ରାଗୁଡ଼ାଙ୍କ ଉପରେ ବେଶି ବିରକ୍ତ ହୁଅନ୍ତି । ଏକଡ଼େ କୁତ୍ସିତ ଏଇ ଜୀବଗୁଡ଼ାକ !! ବୁଦ୍ଧନାଥ ଦୁଇ ହାତ ପଛକୁ ଘୁଞ୍ଚି ଆସିଲେ, ସଙ୍ଗେ ସଙ୍ଗେ ଲୋକଙ୍କ ଭିତରୁ ଜଣେ କହିଲା—

ଆରେ ବାବୁ ! ସେ ଛତି ସାପ ନୁହଁ । ଏଇ ଗଳା ଚୁଟୁନ୍ଦ୍ରା କାମୁଡ଼ିଛି । ସେ ତ ତାଙ୍କର ଛୁଆ କରିଛନ୍ତି । ଏ ଟୋକା ଯେମିତି ସେ ଛୁଆଗୁଡ଼ାକ ସନ୍ଧରେ ପଶିଛି, ସେମିତି ସେ ଦେଇଛନ୍ତି କାମୁଡ଼ି – ତାଙ୍କର ଏବେ ଦୋଷ କଣ ?

ଗହଳି ଭିତରୁ ଆଉ ଜଣେ କହିଲା—

ଚୁଟୁନ୍ଦ୍ରା କାମୁଡ଼ା ଘୋର ବିଷ । ଚୁଟୁନ୍ଦ୍ରା କାମୁଡ଼େ ନାହିଁ କାମୁଡ଼େ ନାହିଁ ; ଯଦିଚ କାମୁଡ଼ିଲା—

ଆଉ ଜଣେ ସବଜ୍ଞ କହିଲେ—

ସାଧା ଚୁଟୁନ୍ଦ୍ରା କଥା ଭିନ୍ନେ; ପୁଣି ଗର୍ଭିଣୀ ଚୁଟୁନ୍ଦ୍ରା ଯେ ଜନ୍ତୁ, ସେ ଯଦିଚ କାମୁଡ଼ିଲା, ତେବେ ହାତଟା ଘଡ଼ଘଡ଼ ଏକାଠି ନ ମାରିଲେ ସେ ବିଷ ଛାଡ଼ିବ ନାହିଁ ।

ଜଣେ ପଚାରିଲା—

ଗର୍ଭିଣୀ ଚୁଟୁନ୍ଦ୍ରା ବୋଲି କେମିତି ଜାଣିଲ ?

"ତା ଆଉ ଜଣାପଡ଼ିବ ନାହିଁ ? ଥୋଡ଼ାଏ ଏବେ ଛୁଆ କରିଛନ୍ତି; ଆଉ ଥୋଡ଼ାଏ ଯେ ଗର୍ଭିଣୀ ନ ଥିବେ, ସେ କଥା କିଏ କହିବ ? ସମସ୍ତେ କଣ ଛୁଆ କରିଥିବେ ? ?"

ଚନ୍ଦ୍ରା କାମୁଡ଼ା କଥା ସଙ୍ଗେ ସଙ୍ଗେ ଲୋକଙ୍କ ଭିତରେ ବ୍ୟାପିଗଲା । ଚନ୍ଦ୍ରସାପ କଥା ଛାଡ଼ି, ସମସ୍ତେ ଚନ୍ଦ୍ରାଙ୍କ ଉପରେ ଆଲୋଚନା ଚଳାଇଲେ । ଆଲୋଚନାର ମୁଖ୍ୟ ନିଷ୍ପତ୍ତି ହେଲା । ଚନ୍ଦ୍ରାଙ୍କର କିଛି ଦୋଷ ନାହିଁ । ଦୋଷ ହେଉଛି ପିଲାର ଆଉ ଚାଉଳଗୁଡ଼ାକର ।

ଗର୍ଭିଣୀ ଚନ୍ଦ୍ରା କାମୁଡ଼ା କଥା ଶୁଣି ସୈରନ୍ଧ୍ରୀଦେବୀ ଆହୁରି ଜୋରରେ ବାହୁନା ପକାଇ ଲାଗିଲେ ।

"ଆରେ ମୋ ପିଲାଙ୍କୁ ସବୁ ମାରିଲା ଲୋ ! ଆଉ କି ସତେ ମୋ ଧନ ଭଲ ହେବ ଲୋ·····"

ବୁଦ୍ଧନାଥ ଅର୍ପିସରୁ ଫେରିଲା ହୋଇ ବାହୁଡ଼ିଛନ୍ତି । ସେଥିରେ ପୁଣି ଆନନ୍ଦକନ୍ଦର ଚଟି ତାଙ୍କ ମୁଣ୍ଡକୁ ବଗାଡ଼ିଛି । ଘର-ଭିତରେ ପୁଣି ଏଭଳି କାଣ୍ଡ । ସେ ଯାହାହେଉ, ପିଲାର ଦେହ ଟିକେ ଭଲଥିବାର ଦେଖି ସେ ଟିକେ ଆଶ୍ୱସ୍ତ ହୋଇଥିଲେ । ମାତ୍ର ଚାଉଳ ଭିତରୁ ଏସବୁ ଅମୂଲ୍ୟ ପଦାର୍ଥ ବାହାରି ତାଙ୍କୁ ଆହୁରି ଆଶ୍ଚର୍ଯ୍ୟ ଓ ବିରକ୍ତ କରାଇଥିଲା । ଶେଷରେ ପୁଣି ଏ ଚନ୍ଦ୍ରା ବ୍ୟାପାର । ଆଉ ଗୃହିଣୀଙ୍କର ଏ ଚିତ୍କାର । ବୁଦ୍ଧନାଥଙ୍କ ବୁଦ୍ଧି-ବୃତ୍ତି ଲୋପ ହୋଇଗଲାଣି ।

ସାହିର କେତେକ ଲୋକଙ୍କ ପ୍ରସ୍ତାବକ୍ରମେ ପୁଅକୁ ଡାକ୍ତରଖାନା ପଠାଇବାର ବନ୍ଦୋବସ୍ତ କରାଗଲା । ବୁଦ୍ଧନାଥ ପୁଅକୁ ପଚାରିଲେ—

"ତୋ ପାଦରେ କିଛି କଷ୍ଟ ଲାଗୁଛି ? ଝିମ୍‌ଝିମ୍ ଲାଗୁଛି ?"

ପୁଅ କହିଲା—

"ନାଁ, ଆଉ କିଛି ଲାଗୁନାହିଁ ତ"!

ବୁଦ୍ଧନାଥ ନିଶ୍ଚିନ୍ତ ହେଲେ । ଆଉ ପରେ ପୁଅକୁ ଡାକ୍ତର-ଖାନା ପଠାଇବାର ସ୍ଥିରକରି ଆଗ ସେଇ ଚାଉଳଗୁଡ଼ାକ ପାଖକୁ ଗଲେ । ଚାଉଳଗୁଡ଼ାକ ତନ୍ନତନ୍ନ କରି ଖୋଜି ଦେଖାଗଲା । ସବୁ ଚାଉଳଗୁଡ଼ାକ ଭିତରୁ ଆଶ୍ଚର୍ଯ୍ୟ କଥା ସବୁ ବାହାରିଲା । ଗୋଟିଏ ଚାଉଳରୁ ବାହାରିଲା ଫଡ଼ାଫଡ଼ା ଗୋବର ଘସି, ଆଉ ଗୋଟାକରୁ କଟୁ ଚିମାପଥର ଯାହା ରେଳରାସ୍ତାରେ ପଡ଼ିଥାଏ । ବୁଦ୍ଧନାଥ ସବୁ ଚାଉଳଗୁଡ଼ିକ ନେଇ ପାଇଖାନା ପାଖେ ଜମାକଲେ । ଆଉ କିରୋସିନ୍ ଢାଳି ନିଆଁ ଧରାଇଲେ । ହୁତୁହୁତୁ ହୋଇ ନିଆଁ ଜଳିଲା । ତାହା ବୋଧହୁଏ ବୁଦ୍ଧନାଥଙ୍କର ଆତ୍ମକନ୍ଦ ସହ ବନ୍ଧୁତାର ଚିତାଗ୍ନି ।

ବୁଦ୍ଧନାଥ ଭାବିଲେ—

ହାୟଃ ହାୟଃ ! ଆଗରୁ ଏତିକି କଥା ନ କରି କାହିଁକି ଭଲା ଏତେ ହଇରାଣ ହେଲି !!

ସେଇ ଚାଉଳ ଘଟଣାପରେ ଅନୁସନ୍ଧାନ ହେବାରେ ଜଣାଗଲା ଯେ ରେଳବାଇରେ କେତେକ ଦୁର୍ବୃତ୍ତ ଚାଉଳଗୁଡ଼ିକ ମଧ୍ୟରୁ ଅସଲ ଜିନିଷ କାଢ଼ିରଖି ନିକଟବର୍ତ୍ତୀ ଷ୍ଟେସନ ବଜାରରେ ଚୋରାବଜାର କାରବାର କରିଛନ୍ତି । ଆଉ ଚାଉଳ ଭିତରେ ଏଇ ସବୁ ବାଜେ ଜିନିଷ ରଖି ସାନି ପ୍ୟାକ୍ କରି ରଖି ଦେଇଛନ୍ତି ।

ବୁଦ୍ଧନାଥଙ୍କ ପୁଅ ସମ୍ପର୍କରେ ବଡ଼ ଡାକ୍ତରଖାନାର ଡାକ୍ତର ସବୁ ଘଟଣା ଶୁଣିସାରି ଓ କ୍ଷତସ୍ଥାନ ପରୀକ୍ଷା କରି ମତ ଦେଲେ ଯେ—ଏହା ସାପ ବା ଚୁଡ଼ୁଚୁନ୍ଦ୍ରା କାମୁଡ଼ା ନୁହଁ, ଏହା ହେଉଛି ଚାଉଳ-ଗୁଡ଼ାକ ଦେହରୁ ପଦାକୁ ବାହାରିଥିବା କେତେକ ଲୁହାକଣ୍ଟା ଭିତରୁ ଗୋଟିଏ ବଙ୍କା ଲୁହାକଣ୍ଟାର ଆଘାତ ମାତ୍ର ।

ବୁଦ୍ଧନାଥ ସବୁ ଶୁଣିସାରି ପୁଅକୁ ପଚାରିଲେ—

"ତୁ ସେ ଡାବଲ ଅନ୍ଧେର ପଶିଥିଲୁ କାହିଁକି ?"

ଘୁନମଣି କହିଲେ—

"କନଭାଇ ମୋ ବଲ୍‌ଟାକୁ ଖେଳୁ ଖେଳୁ ତା ଭିତରକୁ ପକାଇ ଦେଲା । ମୁଁ ସେ ସନ୍ଧରେ ପଶି ଅନ୍ଧାରରେ ବଲ୍‌ଟାକୁ କାଢୁ କାଢୁ ମୋ ଗୋଡଟାକୁ କିଏ କାମୁଡ଼ିଦେଲା ଭଳି ମତେ ଲାଗିଲା ।"

ବୁଦ୍ଧନାଥ ତାର କାନମୋଡ଼ି, ଗୋଟିଏ ବ୍ରହ୍ମଚାପୁଡ଼ା ମାରି କହିଲେ—

"ଓହୋ ! ତୁମ ପାଦକୁ କିଏ କାମୁଡ଼ିଦେଲା ଭଳି ଲାଗିଲା ! ମତେ ତ ତମ ବାଘୁଣୀ-ମା ନିଇତି କାମୁଡ଼ୁଛି, କାହିଁ ମତେ ତ କଷ୍ଟ ଲାଗୁନାହିଁ ?"

କଥା ଶୁଣି ଗୃହିଣୀ ଚହିଁକି ଉଠି କହିଲେ—"ତା ଏବେ ତୁମ ଚମଡ଼ା ମୋଟା ବୋଲି କଣ ସମସ୍ତଙ୍କର ଚମଡ଼ା ମୋଟା ?"

ବୁଦ୍ଧନାଥ ହାତଯୋଡ଼ି କହିଲେ, "ଓଁ ଶାନ୍ତି, ଶାନ୍ତି ଶାନ୍ତି !"

ବୁଦ୍ଧନାଥଙ୍କର ଡାବଲ ସମସ୍ୟା ସମାଧାନ ହୋଇଗଲା ସତ୍ୟ, ମାତ୍ର ଘର ସମସ୍ୟା ସମାଧାନ ହୋଇନାହିଁ । କାରଣ ଡାବଲ ତକ ଘରୁ ବାହାରିଲା ସତ୍ୟ, ମାତ୍ର ତା' ଜାଗାରେ ଆଉ ଗୋଟିଏ ନୂତନ ଜନ୍ତୁ ସେ ଘରକୁ ଆସି ଅଧିଏ ଜାଗା ମାଡ଼ି ବସିଛି । ସେ ହେଉଛି, ବୁଦ୍ଧନାଥଙ୍କର ଚତୁର୍ଥ କନ୍ୟା-ସନ୍ତାନ । ବୁଦ୍ଧନାଥ ଫେର୍ ଚିନ୍ତାରେ ପଡ଼ିଛନ୍ତି ।

# ବାଘର ବିଳାପ

ଧରମୁ କୁଣ୍ଡ ନାଁ ଆପଣ ଶୁଣିଛନ୍ତି ? ଶୁଣି ନାହାନ୍ତି ? ହଁ ଶୁଣିଥାଇ ପାରନ୍ତି—ମାତ୍ର ଭୁଲିଯିବେଣି । କାରଣ ସେ ଆଜିକି ଅନେକ ଦିନ ତଳର କଥା । ଧରମୁ କୁଣ୍ଡ ଆମ ଗାଁର ଲୋକ । ପାଞ୍ଚ ହାତର ମର୍ଦ୍ଦ । ହାଣ୍ଡି କଳା ପରି ଦେହେଟା—ଆଖି ଦିଟା ଲାଲ ଲାଲ । ଲଲାଟରେ ଚନ୍ଦନ ସଙ୍ଗେ ସଙ୍ଗେ ସିନ୍ଦୂରରେ ଅଙ୍କା ଗୋଟେ ତ୍ରିଶୂଳ । ମୁଣ୍ଡରେ ବାବୁରି ବାଳ । ପାତଳା ହୋଇ ଲୋକ । ଓଠ ତଳକୁ ଚିବୁକରେ ଛେଳି ଥୋଡ଼ି ପରି ଅଳପ ଦାଢ଼ି । ଦେଖିଲେ ଭୟ ଲାଗେ । ଲୋକେ କହନ୍ତି—କାପାଳିକ । ଶଏ ଖଣ୍ଡ ଗାଁରେ ଗୁଣିଆ ହିସାବରେ ନାମ ଅର୍ଜିଛି । ଘରେ ଚଣ୍ଡୀସାଧନା କରେ । ନିଜ ହାତରୁ ଦୁଇଟି ଆଙ୍ଗୁଠି କାଟି ଚଣ୍ଡୀଙ୍କ ପାଖେ ବଳି ଦେଇଛି । ଅମାବାସ୍ୟା ରାତିରେ କିମ୍ବା ଗ୍ରହଣ ଲାଗିଲେ ଡ଼ୁଡ଼ୁ ମେଘ ଅନ୍ଧାରରେ ଧରମୁ କୁଣ୍ଡ ମଶାଣିକୁ ଯାଏ—କୁକୁଡ଼ା ମାରେ; ନିଜ ଜଙ୍ଘରୁ ରକ୍ତ କାଟି ମଶାଣିଚଣ୍ଡୀଙ୍କୁ ବଳିଦିଏ । ମଣିଷ ମୁର୍ଦ୍ଦାରରୁ ମାଉଁସ କାଟି ସିଝାଇ ଖାଏ । ମଶାଣିରେ ହୋମ କରେ । ଚଣ୍ଡୀଙ୍କି ସନ୍ତୁଷ୍ଟ କରି ଗୁଣିବଳରେ ଅସାଧ୍ୟ ସାଧନ କରେ । ଆହୁରି ବି ଶୁଣାଯାଉଛି ଯେ ଧରମୁ କୁଣ୍ଡ ଯେତେବେଳେ ପହିଲି ଚଣ୍ଡୀସାଧନା ଆରମ୍ଭ କରେ, ସେତେବେଳେ ସେ ନିଜ କଅଁଳା ପୁଅକୁ କାଟି ଚଣ୍ଡୀଙ୍କ ପାଖରେ ବଳି ଦେଇଥିଲା । ସେଦିନ-ଠୁ ତାର ଆଉ ସନ୍ତାନ ଜନ୍ମ ହୋଇ ନାହାନ୍ତି ।

ଧରମୁ କୁଣ୍ଡ ତାଙ୍କ ସାଧନା ବି ସାଧିଥିଲା । ରାତି ଅଧରେ ଦିନ ବାର ଖୋଜ ସେ ମନ୍ତ୍ରବଳରେ ସ୍ୱର୍ଗରୁ ତାରାମାନଙ୍କୁ ମଞ୍ଚକୁ ଡାକଆଣେ ଏବଂ ସେଇ ତାରାମାନେ ଦିବ୍ୟ ସ୍ତ୍ରୀ-ବେଶ ଧାରଣ କରି ତା' ସଙ୍ଗେ କେଳିକରନ୍ତି ।

ତାଡ଼ଣ, ମାରଣ, ବଶୀକରଣ ଓ ଉଚ୍ଚାଟନାଦି ବିଦ୍ୟାରେ ଧରମ କୁଣ୍ଡକୁ କେହି ବଳିପାରୁ ନ ଥିଲେ । ବହୁତ ବଡ଼ ବଡ଼ ଗୁଣିଆ ବି ଧରମୁ କୁଣ୍ଡ ସଙ୍ଗେ ବିବାଦ କରି, ହାରିଯାଇ ଶେଷରେ ତାକୁ ଗୁରୁ ରୂପେ ମାନିବାକୁ ବାଧ ହୋଇଛନ୍ତି । ଯଦି କୌଣସି ଗୁଣିଆ କାହାକୁ ବିବାଦରେ ବାଉଟି ଲଗାଇ ଦିଏ ତ ଧରମୁ କୁଣ୍ଡ ସେଇ ବାଉଟିକୁ ଏକା ଫୁଙ୍କାକେ ଉଡ଼ାଇଦିଏ ଓ ଏପରି ମନ୍ତ୍ର କରେ ଯେ, ସେଇ ଗୁଣିଆକୁ ଚଣ୍ଡୀମାନେ ଆଉ ଶୁଆଇ ବସାଇ ଦିଅନ୍ତି ନାଇଁ । ତା ଦେହକୁ ନଖରେ ଆମ୍ପୁଡ଼ି ଆମ୍ପୁଡ଼ି ଅସ୍ତବ୍ୟସ୍ତ କରନ୍ତି ଓ ଶେଷରେ ସେ ଦଉଡ଼ି ଦଉଡ଼ି ଆସି ଧରମୁ କୁଣ୍ଡର ଗୋଡ଼ ଧରେ । ଧରମୁ କୁଣ୍ଡ ବି ବିବାଧା ଲୋକଙ୍କୁ ସହଜରେ ଛାଡ଼େ ନାଇଁ । କାହା ବୋହୂକୁ ଡାହାଣୀ ଲଗାଇ ଦିଏ, କାହା ଭାତ ହାଣ୍ଡିରୁ ଅନବରତ ମଣିଷ ବିଷ୍ଠା ବାହାରେ । କାହା ଦୁଆରେ ହାଡ଼ ବୃଷ୍ଟି ହୁଏ । ଏହିଭଳି ଅନେକ ଭୟଙ୍କର କାଣ୍ଡ ଯୋଗୁଁ ତାନ୍ତ୍ରିକ ଧରମୁ କୁଣ୍ଡକୁ କେହି ଉତ୍ୟକ୍ତ କରନ୍ତି ନାହିଁ । ସମସ୍ତେ ତାକୁ ଡରି ଅରି ଥାଆନ୍ତି ।

ମଲା ଡାହାଣୀକୁ ଧରମୁ କୁଣ୍ଡ ଯେମିତି ଜବତ କରେ— ଗାଁ ଭିତରର ଜିଆଁ-ଡାହାଣୀକୁ ବି ସେ ସେମିତି ମନ୍ତ୍ରବଳରେ ଧରି ଜବତ କରେ । ଥରେ ରାତି ପାହାନ୍ତା ପହରକୁ ଧରମୁ କୁଣ୍ଡ ମଶାଣିରୁ ଫେରୁଛି—ଗାଁ ମୁଣ୍ଡ ଦଣ୍ଡା ପାଖେ ଦେଖେ ତ ଗାଁଟା ମାଇକିନା ଲଙ୍ଗଳା ହୋଇ ହାତ ତଳକୁ କରି ଗୋଡ଼ ଉପରକୁ

ଟେକ ମଣିଷ ସୃଷ୍ଟି କରୁଛନ୍ତି । ଧରମୁ କୁଣ୍ଡ ନିଜ ଦେହକୁ ମନ୍ତ୍ର-ବଳରେ କଳ ସେମାନଙ୍କ ପାଲଟା ଶାଢ଼ୀ ଧରି ଘରକୁ ଚାଲି ଆସିଲା ଏବଂ ଏଇ କଞ୍ଚା-ଡାହାଣୀଗୁଡ଼ାକ ସକାଳୁ ଆସି ଧରମୁ କୁଣ୍ଡ ବାଡ଼ରେ ସାଷ୍ଟାଙ୍ଗ ଦଣ୍ଡବତ ହୋଇ ପଡ଼ିଗଲେ । ଧରମୁ କୁଣ୍ଡ ଗ୍ରାମର ପାଞ୍ଚ ଜଣ ମୁଖିଆ ଲୋକଙ୍କୁ ଡକାଇ ସେମାନଙ୍କ ଗାଣ୍ଡିରେ ତତଲା ଲୁହାରେ ଚଆଁ ଦେଇ ଛାଡ଼ିଦେଲା । ଏହି କଞ୍ଚା ଡାହାଣୀ-ଗୁଡ଼ାକ ଗ୍ରାମର ଜୀବନ୍ତ ସ୍ତ୍ରୀଲୋକ । ଏମାନେ ପର ଘରର ପିଲାଙ୍କୁ ଦେଖି ସେମାନଙ୍କୁ ଚାହିଁ ଚାହିଁ ସେମାନଙ୍କର ରକ୍ତ ନିଜର ଆଖି ବାଟେ ଶୋଷି ପିଇଯାନ୍ତି । ଫଳରେ ପିଲାଗୁଡ଼ାଙ୍କ ଝାଉଁଳା ହୁଏ ଏବଂ ସେମାନେ ଅଳ୍ପ ଦିନରେ ମରିଯାନ୍ତି । ସେ ଯାହାହେଉ, ଧରମୁ କୁଣ୍ଡଙ୍କ ଗୁଣୀ ବଳରେ ଆମ ଗ୍ରାମରେ ଏଇ କଞ୍ଚା-ଡାହାଣୀ ବା ମଲା ଡାହାଣୀଙ୍କ ଉତ୍ପାତ ଆଉ ନ ଥିଲା । ଧରମୁ କୁଣ୍ଡ ଥିଲା ଷୋଳକଳା ଡାହାଣୀକୁ ବଶୀକରା ଗୁଣିଆ ।

ଖାଲି ଯେ ଭୂତ-ପ୍ରେତଙ୍କ ଧରମୁ କୁଣ୍ଡ ଜବତ କରିଥିଲା ତା ନୁହେଁ; ଗୁଣୀଗାରେଡ଼ି ବଳରେ ସେ ବଣର ପଶୁମାନଙ୍କୁ ମଧ୍ୟ ସାଧି କରିଥିଲା । ଲୋକେ ଦେଖିଛନ୍ତି, ସ୍ୱୟଂ ବାଘ ରାତି ଅଧରେ ଧରମୁ କୁଣ୍ଡ ଘରେ ଖାସି-ମାଉଁସ ଦେଇଯାଏ । ମାଙ୍କଡ଼ ପ୍ରତିଦିନ ପଣସ ଦେଇଯାଏ । ଆଉ ଓଧ ପ୍ରତିଦିନ ମାଛ ଆଣି ଧରମୁ କୁଣ୍ଡର ଗୋଷଘର ଭିତରେ ରଖିଦେଇଯାଏ । ଗୁଣୀ-ଗାରେଡ଼ି କରିବାରେ ସେ କାହାଠାରୁ ପଇସାଟିଏ ବି ନିଏ ନାହିଁ । ପଇସା ତାର କଣ ହେବ ? ତାର କଣ ଅଭାବ ଅଛି ? ଦରକାର କେବଳ ଚଣ୍ଡୀପୂଜା ପାଇଁ କିଛି ମଦ ବା ଟଙ୍ଗେଇ, ଆଉ କୁକୁଡ଼ାଟିଏ ।

ଧରମୁ କୁଣ୍ଡ କେଉଁଠାରୁ ଏତେ ମନ୍ତ୍ରଯନ୍ତ୍ର ଜାଣିଥିଲା ଜାଣନ୍ତି ? ତାକୁ ଯେତେବେଳେ ଅଠର ବର୍ଷ ବୟସ, ସେତେ-

ବେଳେ ସେ ଗ୍ରାମର ଆଉ ଚାରି ଜଣଙ୍କ ସଙ୍ଗେ କଲିକତା ବଙ୍ଗାଳୀ ବାଡ଼ିରେ ଥୋଡେଇ କରି ପେଟ ପୋଷିବାକୁ ଯାଏ। ତା'ପରେ ବାର ବର୍ଷଯାଏ ଆଉ ତାର ପତ୍ତା ମିଳିଲା ନାହିଁ। ସେ ଯେ କୁଆଡ଼େ ଗଲା ? ସମସ୍ତେ ଭାବିଲେ କଲିକତା ସହରରେ କେଉଁଠି ଗାଡ଼ି ତଳେ ଚୂପା ଖାଇ ମରିଯାଇଛି। ଧରମୁ କୁଣ୍ଡିକୁ ସମସ୍ତେ ଭୁଲିଗଲେ।

ମାତ୍ର ହଠାତ୍ ଦିନେ ତେରଶି ବର୍ଷର ଭେଟିଆ ଧରମୁ କୁଣ୍ଡି ଆସି ଗ୍ରାମରେ ପହଞ୍ଚିଗଲା। ହେତେବେଳକୁ ସେ ଏକ କାପାଳିକ ବେଶ ଧରି ସେ ଦେଶରୁ ଆସିଛି। ସେ କହିଲା, ସେ କୁଆଡ଼େ ଦିନେ ଗୋଟେ ବାବାଜୀ ସଙ୍ଗେ କଲିକତାରୁ ଚାଲିଗଲା କାଉଁରୀ-କାମରୂପୀ ଦେଶକୁ। ସେ ଦେଶରେ ଖାଲି ସ୍ତ୍ରୀ। ପୁରୁଷଙ୍କର ଦେଖା ନାହିଁ। ସେଠି ସେହି ବାବାଜୀ ତାକୁ ଗୋଟେ ମାଇକିନାକୁ ବିକିଦେଲା। ସେ ମାଇକିନା ଯୁବାକୁ ଦିନଯାକ ମେଣ୍ଢା କରେ, ଆଉ ରାତିରେ ମନ୍ତ୍ରବଳରେ ପୁଣି ଭେଣ୍ଡା କରି ଦେଇ ଯୁବା ସଙ୍ଗେ ସୁରତ କରେ। ସେ ଦେଶରେ କାମାକ୍ଷାଦେବୀ ହେଉଛନ୍ତି ଅଧିଷ୍ଠାତ୍ରୀ ଠାକୁରାଣୀ। ବହୁତ ଦିନ ଏହିପରି ରହିବା ପରେ ସେ ମାଇକିନାର ତଣ୍ଟି ଚିପି ମାରିଦେଲା ଆଉ ତା' ଘରୁ ସବୁ କାଉଁରୀ ସାଧନା ମନ୍ତ୍ର, ଯନ୍ତ୍ର, ତନ୍ତ୍ର, ମାଳା-ପୋଥି ସାଥିରେ ଆଣି ଚାଲିଆସିଲା। ତା'ପରେ ସେ ଦେଶରେ ଗୋଟିଏ ଗୁଣିଆ ପାଖେ ରହି ଏସବୁ ଶିଖି ପୁଣି ଦେଶକୁ ବାହାରି ଆସିଲା।

ଧରମୁ କୁଣ୍ଡି ବହୁଦିନ ପରେ ଘରକୁ ଆସି ବାହା ହେଲା, ଆଉ ଘରଦ୍ୱାର କରି ରହିଲା। କ୍ରମେ ଧରମୁ କୁଣ୍ଡିର ଗୁଣ ଜଣା-ପଡ଼ିଲା। ଗ୍ରାମର ଶେଷ ମୁଣ୍ଡରେ ସେ ଗୋଟିଏ ଏକୁଟିଆ ଘର କରି

ସେଇଠି ଆସି ସ୍ତ୍ରୀକୁ ଧରି ରହି ତାର ଗୁଣୀ-ଗାରେଡ଼ି ବିଦ୍ୟା ସାଧିଲା । ତା ଘରପାଖ ସାହାଡ଼ାଗଛରେ ଯେଉଁ ଲୁହାକଣ୍ଟାଗୁଡ଼ାଏ ମରିଚି, ସେଗୁଡ଼ାକ ହେଉଛନ୍ତି ଡାହାଣୀ । ଧରମୁ କୁଣ୍ଡ ଯେତେ ଡାହାଣୀ ଛଡ଼ାଇଛି, ସେଗୁଡ଼ାଙ୍କୁ ଆଣି ଏଇ ସାହାଡ଼ା ଗଛରେ ବନ୍ଧନ କରି ରଖିଛି ।

ସେ ଯାହାହେଉ, ଧରମୁ କୁଣ୍ଡ ଅଳ୍ପ ଦିନରେ ଗୁଣୀଗାରେଡ଼ି ବିଦ୍ୟାରେ ଶଏ ଖଣ୍ଡ ଗାଁରେ ଭାରି ନାମ ଅର୍ଜନ କଲା । ଆହୁରି ମଧ୍ୟ ଗଡ଼ଜାତକୁ ଯାଇ ସେ ରାଜାମାନଙ୍କୁ ନିଜ ବିଦ୍ୟାରେ କରାମତି ଦେଖାଇ ସେମାନଙ୍କଠାରୁ ପାଟ, ଯଥା ଆଉ କୁଣ୍ଡଳ ପୁରସ୍କାର ପାଇଲା ।

କିନ୍ତୁ କଣ ହେଲା ଜାଣିଛନ୍ତି ?

ଧରମୁ କୁଣ୍ଡ ତ ନିଇତି ନୂଆ ନୂଆ ଗୁଣୀ ବିଦ୍ୟା ଶିଖୁଥାଏ । ନୂଆ ନୂଆ ବିଦ୍ୟା ହାସଲ କରି ନିଜର କରାମତି ଦେଖାଇବାକୁ କିଏ ନ ଚାହେଁ ? ଧରମୁ କୁଣ୍ଡ ଭାରି ଆଶ୍ଚର୍ଯ୍ୟ କଥାମାନ ସାଧିଲା । ଶୂନ୍ୟରେ ଭ୍ରମଣ କଲା । ଉଆଁସ ରାତିରେ ଚନ୍ଦ୍ର ଦେଖାଇଲା । ପୁନିଅଁ ରାତିରେ ଚନ୍ଦ୍ରକୁ ଗୋପ୍ୟ କଲା । ଗ୍ରାମଦେବତୀଙ୍କୁ ମନ୍ତ୍ରରେ ବନ୍ଧନ କଲା । ଗର୍ଭବତୀ ନାରୀର ଗର୍ଭରୁ ସନ୍ତାନ ହରିନେଲା । ବଶୀକରଣବିଦ୍ୟା ଲଗାଇ ଗାଁର ଝିଅ-ବୋହୂଙ୍କୁ ହରିଲା । ଏହିପରି ଧରମୁ କୁଣ୍ଡକୁ ଦେଖି ଗର୍ଭିଣୀ ଗାଈ ମଧ୍ୟ ଭୟରେ ବାଛି ଗୁଡ଼ିଦେଲା ।

ଦିନେ ଧରମୁ କୁଣ୍ଡ ତା ସ୍ତ୍ରୀକୁ ଡାକି କହିଲା—"ଆଗୋ ଶୁଣୁଛ ! ଆଜି ଗୋଟେ ନୂଆ କରାମତି ଦେଖାଇବି ! ମୁଁ ଆଜି ଗୁଣୀ ବଳରେ ଗୋଟେ ବାଘ ପାଲଟିଯିବି । ବାଘ ହୋଇ ମୁଁ ବଣକୁ ଯିବି ଏବଂ ରାତି ଅଧରେ ଛେଳିଛୁଆ କମ୍ବା ହରିଣଛୁଆ

ଶିକାର ଧରି ପୁଣି ଘରକୁ ଆସିବ । ମୁଁ କଂସାବାସନରେ ହଳଦୀ ପାଣି ମନ୍ତ୍ରି ଦେଇଯାଉଛି । ମୁଁ ଯେମିତି ଫେରିବି, ତୁମେ ମୋତେ ଦେଖି କିଛି ଭୟ ନ କରି ସେଇ କଂସାର ମନ୍ତ୍ରା ହଳଦୀ ପାଣିରେ ମୋ ଦେହକୁ ପୋଛିଦେବ । ତା'ପରେ ମୁଁ ଠିକ୍ ମଣିଷ ପାଲଟି ଯିବି ।" ତା ସ୍ତ୍ରୀ ପ୍ରଥମେ ଏ କଥା ବିଶ୍ବାସ କରୁ ନ ଥିଲା । ମାତ୍ର ଶିକାର ଲୋଭରେ ଏବଂ ଧରମୁ କୁଣ୍ଡି କଥାର ଜୋର୍‌ରେ ବାଧ୍ୟ ହୋଇ ହଁ ମାରିଲା ।

ଧରମୁ କୁଣ୍ଡି ସତକୁ ସତ ସେଦିନ ବଣକୁ ଗଲା ଏବଂ ବଣ ଭିତରେ ଗୁଣୀମନ୍ତ୍ର ବଳରେ ନିଜକୁ ବାଘ କରିନେଲା । ତା ପରେ ବାଘ ହୋଇ ସେ ଗୋଟିଏ ଛେଳିଛୁଆ ଗ୍ରାମ ମଧ୍ୟରୁ ଟେକିଆଣିଲା । ଛେଳିଛୁଆକୁ ଦାନ୍ତରେ କାମୁଡ଼ି ସେ ତା ବେକ କଣା କରି ରକ୍ତ ପିଇଗଲା ଏବଂ ଛେଳିଛୁଆଟାକୁ ଧରି ସେ ବଡ଼ ଖୁସି ମନରେ ଘରକୁ ଫେରିଲା ।

ଅଧରାତି । ସାଇଁ ସାଇଁ କିଶା ଗର୍ଜୁଛି । ଧରମୁ କୁଣ୍ଡିର ସ୍ତ୍ରୀ ସ୍ବାମୀର ବାଘ ସ୍ବରୂପକୁ ଅପେକ୍ଷା କରି ବସିଛି । ଏକୁଟିଆ ମାଡ଼ ମାଡ଼ ପଡ଼ୁଛି । ଗାଁ ଶେଷ ମୁଣ୍ଡରେ ଘର । ସତରେ କଣ ସେ ବାଘ ହୋଇ ଫେରିବେ, ଅବିକଳ ବାଘ ରୂପରେ ? ସେ ଦେଖିଛି—ଗାଁର ପଠାଣମାନେ ମହରମ ପର୍ବରେ ବାଘ ରୂପରେ ସଜ ହୋଇ ଖେଳ ଦେଖାଇ ପଇସା ମାଗନ୍ତି । ସେ ସଜ ବାଘକୁ ଦେଖିଲେ ବି ଭୟରେ ଦେହ ଥରେ । ସେ କଣ ସେହିଭଳି ବାଘ ସଜ ହୋଇ ଫେରିବେ ନା ସତକୁ ସତ ମନ୍ତ୍ରବଳରେ ବାଘ ପାଲଟି ଆସିବେ ? ମନ ଭିତରେ କୌତୁକ; କିନ୍ତୁ ଭୟ ବି କମ୍ ହେଉ ନି !

ଧରମୁ କୁଣ୍ଡିର ସ୍ତ୍ରୀ ଘରେ କବାଟ କିଳି ବସିଛି ।

ହଠାତ୍ ବାଡ଼ିପଛେ ବାଘର ହେଁଟାଳ ଶୁଭିଲା । ଧରମୁ କୁଣ୍ଡିର ସ୍ତ୍ରୀ ଘରେ ଭଲ କରି ଝିଙ୍କ ଲଗାଇ ଦେଇ ଝରକାବାଟେ ଗୁହିଁ ଦେଖିଲା, ଶରତ୍‌ର୍ନ୍ଦର ପରି ଜହ୍ନ ପଡ଼ିଛି । ଆଉ ତା'ର ଝରକା ପାଖେ ଦୁଇ ପଞ୍ଜାକୁ ଆଗକୁ ରଖି ବସିରହିଛି ଗୋଟାଏ ବଡ଼ ଶାର୍ଦ୍ଦୁଳ । ଲାଞ୍ଜକୁ ଟେକି ମୁଣ୍ଡର ପଛ ପଟେ ପିଟୁଛି । ଆଗରେ ଗୋଟାଏ କଳା ଛେଳିଛୁଆ ପଡ଼ିଛି । ଝରକା ବାଟେ ତାକୁ ଦେଖି ବାଘଟା ଆହୁରି ଗର୍ଜନ କଲା । କୁଦା ମାରି ଝରକା ପାଖକୁ ଆସିଲା । ଘାଉଁ ଘାଉଁ ହୋଇ ଝରକା ପାଖ କାନ୍ଥରେ ଘଷିହେଲା । ପୁଣି ପଛକୁ ହଟି ଯାଇ ବାରଠାଣିରେ ବସି ରହି ଘାଉଁ ଘାଉଁ ହୋଇ ହସି ଉଠିଲା । ଓଃ; ସେ କି ବିକଟ ହସ !! କି ଭୟଙ୍କର ମୁହଁ ! ଧରମୁ କୁଣ୍ଡିର ସ୍ତ୍ରୀ ଭୟରେ ଖାଲି ଥରିବାକୁ ଲାଗିଲା ।

ସେ କଣ ସତରେ ତାର ସ୍ୱାମୀ ନା' ସତକୁ ସତ ଗୋଟାଏ ମଣିଷଖିଆ ବଡ଼ ବାଘ ? ସେ ତ ଜାଣେ, ତା'ର ସ୍ୱାମୀକୁ ଡରି ବାଘ ବି ଦିନେ ଦିନେ ରାତିରେ ଆ । ବାରି ପଟେ ଗୋଟିଏ ଲେଖା ଛେଳି ବା ହରିଣଛୁଆ ମାରି ପକାଇ ଦେଇଯାଏ । କାଳେ ଏଇଟା ସେହିଭଳି ଗୋଟାଏ ସତକୁ ସତ ବାଘ ହୋଇଥିବ ।

ମାଇପି ଲୋକ । କବାଟ ଫିଟାଇ ବାହାରକୁ ବାହାରିବା ପାଇଁ ସାହସ ପାଉନାହିଁ । ସତରେ କଣ ତା'ର ସ୍ୱାମୀ ମନ୍ତ୍ର ବଳରେ ଗୋଟେ ଏତେ ବଡ଼ ସତ, ବାଘ ପାଲଟି ଯାଇଛନ୍ତି ? ନା; ନ ହୋଇ ବି ପାରେ !! ସେ କୌଣସି ମତେ କବାଟ ଫିଟାଇ ବାହାରକୁ ଆସିଲା ନାହିଁ ।

ଏଣେ ଧରମୁ କୁଣ୍ଡି ବାଘ ରୂପରେ ବାଡ଼ିତଳେ ଛଟପଟ ହେଉଛି । ହେଁଟାଳ ମାରୁଛି । ଏତେ କରି କହି ଯାଇଥିଲା ସ୍ତ୍ରୀକୁ । ମୋ ବାଘ ରୂପକୁ ଦେଖି ଭୟ କରିବୁ ନାହିଁ । ମନ୍ତ୍ରର ହଳଦୀ

ପାଣିରେ ମୋ ଦେହ ପୋଛିଦେବୁ । ସ୍ତ୍ରୀ କଥାରେ ବିଶ୍ୱାସ କରି ସେ ବାଘ ରୂପ ହେଲା; ଅଥଚ ଏଇ ମାଇକିନାଟା ଏତେ ଭୟାକୁ !

ଧରମୁ କୁଣ୍ଡ ଅଥୟ ହେଲାଣି ! ଇସ୍—କି ଦାରୁଣ ବ୍ୟାପାର ! ରାତି ଯେ ଆଉ ବେଶି ନାହିଁ । ଆଉ ଟିକେ ଗଲେ ସକାଳ ହୋଇଯିବ । ସେ ଆଉ ବାଘରୁ ମଣିଷ ହୋଇ ପାରିବ ନାହିଁ ନା କଣ ? ଅବଶ୍ୟ ସେଇ ହଳଦୀପାଣିରେ ପରଦିନ ବି ଯଦି ତା'କୁ ପୋଛି ଦିଆଯାଏ—ତେବେ ବି ସେ ପୁଣି ମଣିଷ ପାଲଟି ଯା'ନ୍ତା । ମାତ୍ର ଏ ତ ମୂଳରୁ ଉଦ୍ଭଟ କରୁଛି ଏବେ ! ଧରମୁ କୁଣ୍ଡ ସ୍ତ୍ରୀକୁ ବୁଝାଇବା ପାଇଁ ପାଟି ଖୋଲିଲା । ମାତ୍ର ହାୟ ! ମଣିଷର ବୁଦ୍ଧି ଥିଲେ ବି ବାଘର ଜିଭ ମଣିଷ ଭଳି କଥା କହିପାରେ ନାହିଁ । ତେଣୁ ସେ ଖାଲି ଗର୍ଜନ କଲା । ଘାଉଁ ଘାଉଁ ହୋଇ ଭୂଇଁକୁ ଆମ୍ପୁଡ଼ିଲା, ଘର କାନ୍ଥକୁ ନଖରେ ବିଦାରିଲା । ଝରକା ବାଡ଼କୁ ହାତରେ ଦୋହଲାଇଲା ଏବଂ ଘର ଭିତରକୁ ମୁହଁ ଦେଖାଇ ଘାଉଁ ଘାଉଁ ହେଲା । ମାତ୍ର ସବୁ ବୃଥା । ତା' ସ୍ତ୍ରୀ କ୍ରମେ ଏସବୁ ଦେଖି ବେଶି ବେଶି ଭୟାର୍ତ୍ତ ହୋଇ ଉଠିଲା ଏବଂ ଆଉ ଝରକାବାଟେ ମୁହଁ ଦେଖାଇ ପଦାକୁ ନ ଚାହିଁ ସେ ଖଟତଳେ ଲୁଚି ବସିଲା ।

ବାଘ ଧରମୁ କୁଣ୍ଡ ଏଥର ରାଗିବାକୁ ଲାଗିଲା । ରାତି ପାହି ଆସିଲାଣି । ହେଇ, କୁଆମାନେ ବୋବେଇବାକୁ ଆରମ୍ଭ କଲେଣି । ତା'ର ଇଚ୍ଛା ହେଲା, ସେ ଯଦି ତା' ସ୍ତ୍ରୀକୁ କୌଣସି ପ୍ରକାରେ ହାବୁଡ଼େଇ ପାଆନ୍ତା, ତେବେ ତା' ତଣ୍ଟି ଚିପି ରକ୍ତ ପିଇଯାନ୍ତା ।

ଧରମୁ କୁଣ୍ଡ ହିଂସ୍ର ହୋଇ ଉଠିଲା । ନିଶ ଫୁଲାଇ ସେ ଖାଲି ଏଣେ ତେଣେ ଧାଇଁବାକୁ ଲାଗିଲା । ବାଡ଼ରୁ ଗଛ ଲତା ଓପାଡ଼ି ପକାଇଲା । ହୁଙ୍କାର କଲା । ତାର ବାଘର ପଞ୍ଜର ତଳେ ମଣିଷର

ଆତ୍ମା ଚିତ୍କାର କରି ଉଠୁଛି । ଉଃ ! ସେ ଶୀଘ୍ର ମଣିଷ ହେବାକୁ ଚାହେଁ । କେତେ କଷ୍ଟରେ ସେ ମଣିଷ ହୋଇଥିଲା । କେତେ ଯୋନିରେ ଜନ୍ମ ହୋଇ ହୋଇ କେତେକାଳରେ ମଣିଷ ଯୋନିରୁ ସେ ଧରମୁ କୁଣ୍ଡ ତୁଣ୍ଡରେ ପୃଥିବୀକୁ ଆସିଥିଲା । କେତେ ତପସ୍ୟା ସାଧିଥିଲା । କେତେ ସୁଖ ଭୋଗିଥିଲା, କେତେ ଭାବ ଭାବିଥିଲା । ଗଲା, ସବୁଗଲା । ନା, ନା, ସେ ମଣିଷ ହେବ, ସେ ମଣିଷ ହେବାକୁ ଚାହେଁ । ସେ ବାଘ ରୂପରେ ଆଉ ବେଶି ସମୟ ରହିପାରିବ ନାହିଁ । ହଁ, ହଁ, ସେ ଏ ବାଘ–ଜୀବନରୁ ମୁକ୍ତି ଚାହେଁ, ମୁକ୍ତି ଚାହେଁ, ମୁକ୍ତି ମୁକ୍ତି···ଓହୋ···ଓ··· ଓ···! ତାର ଜଳନ୍ତା ବାଘ ଆଖି ଭିତରୁ ମଣିଷର ଲୁହ ବୋହିଲା । ସେ କି ଆଉ ମଣିଷ ହୋଇ ପାରିବ ନାହିଁ ? ?

ହୋଇ ପାରିବ ନାହିଁ ? ? ? ?

ରାତି ପାହି ଆସିଲାଣି । ଆଉ ପାଞ୍ଚ ମିନିଟ । କୁଆ ବୋବାଇଲେଣି । ବାଘର ଶରୀର ଭିତରେ ଧରମୁ କୁଣ୍ଡର ମଣିଷ-ଆତ୍ମା ଖାଲି ଛଟପଟ ହେଉଛି । ହାୟ ! ସେ କି ଆଜିଠାରୁ ଖାଲି ବାଘଟିଏ ହୋଇ ରହିବ ? ଏଇ ଘର, ଏଇ ପିଣ୍ଡା, ଏଇ ଗଛ, ଏଇ ଗାଁ, ଏଇ ନଈ, ଏଇ କୂଅ, ଏଇ ଶାଗପଟାଳି, ଏଇ ତୁଳସୀ ଚଉରା, ତାର ସ୍ତ୍ରୀ, ଆଉ ଶେଷରେ ଏଇ ଘର ଭିତରେ ତାର ମନ୍ତ୍ରଯନ୍ତ୍ରତନ୍ତ୍ରମାନଙ୍କର ଗୁଣୀ-ଗାରେଡ଼ୀ ପୋଥିସବୁ । ହାୟ ! ଜୀବନ ଆଉ ଆଉ ସେ କି ଆଉ ଏଗୁଡ଼ିକର ପାଖ ପଶିବ ନାହିଁ ? ହାୟ ! ତା' ସ୍ତ୍ରୀ ବ୍ୟତୀତ ସେ ଯଦି ଆଉ କାହାକୁ ଏ ମନ୍ତ୍ରର ପାଣି କଥା କହିଥାନ୍ତା ! ତେବେ ଆସନ୍ତା କାଲି ପାଇଁ ଅନ୍ତତଃ ସେ ଆଶା ରଖି ବସନ୍ତା । କିନ୍ତୁ ସେ ତା' ସ୍ତ୍ରୀକୁ ବା ଆଉ କିପରି ବୁଝାଇବ ? ଓହୋ---ଃ-ଃ-ଃ— !

ବାଘ ଧରମୁ କୁଣ୍ଡ ଖାଲି ବଦାର ହେଲା ।

ସେ ଆଉ ମଣିଷ ନୁହେଁ ? ସେ ଆଉ ନିଜର ବେଦନା ମଣିଷର ଭାଷାରେ ମଣିଷକୁ ବୁଝାଇପାରିବ ନାହିଁ ? ବାଘରୂପରୁ ପୁଣି ମଣିଷ ରୂପକୁ ଫେରି ଆସିବାର ମନ୍ତ୍ର ସେ ଆଉ କାହାକୁ ଶିଖାଇ ପାରିବ ନାହିଁ ? ସେ ବ୍ୟୂହ ମଧ୍ୟରେ ପଶିଗଲା । ମାତ୍ର ଏ ବ୍ୟୂହ ମଧ୍ୟରୁ ତାକୁ କିଏ ମୁକୁଳାଇବ ? ଓଃଃଃଃ ! ସେ କି ଆଉ ମଣିଷ ହେବ ନାହିଁ ?

ସେ ବାଘ ? ?

ସେ ବାଘ ? ? ?

ରାତି ପାହିଗଲା । ଧରମୁ କୁଣ୍ଡ ଶେଷଥର ପାଇଁ ଚେଷ୍ଟା କଲା । ହେଁଟାଳି ମାରି ଗର୍ଜନ କରି, ଲାଞ୍ଜ ପିଟି, କୁଦା ମାରି, ସେ ତାର ଘର ଚାରିପଟେ ବୁଲିଆସି ଝରକା ପାଖେ ଆସି କଟାଳି କଲା । କେତେ ଅନୁନୟ ବିନୟ କଲା । ସ୍ତ୍ରୀକୁ କେତେ ନିର୍ଭର ବାଣୀ ଶୁଣାଇଲା, କେତେ ଅଶ୍ରୁଳ ନିବେଦନ ଜଣାଇଲା : ମାତ୍ର ସବୁ ବୃଥା । ତାର ସମସ୍ତ ମଣିଷର ଭାବ କେବଳ ପ୍ରକାଶ ପାଇଲା ବାଘର ଭୟଙ୍କର ଗର୍ଜନ ତର୍ଜନ ଓ ଭିଆଁଭେଇଁରେ ।

ତା' ସ୍ତ୍ରୀ ଶେଷଥର ପାଇଁ ଝରକା ପାଖକୁ ଆସିଲା । ରାତି ପାହି ଆସିଲାଣି । ତଥାପି ଅନ୍ଧାର ଅଳ୍ପ ଅଛି । ଦେଖିଲା, ବାଘଟା ତାରି ଆଡ଼କୁ କଟମଟ କରି ଚାହିଁ ଝରକା ଆଡ଼କୁ ମାଡ଼ି ଆସୁଛି । ଧରମୁ କୁଣ୍ଡ ତାର ବାଘ ଆଖିକୁ ନିଜ ସ୍ତ୍ରୀ ଆଖି ସଙ୍ଗେ ମିଳାଇଲା । କେତେ ବିକଳ ହୋଇ ସେ ଘାଉଁ ଘାଉଁ ହେଲା ।

ସାହସ ଧରି ତା ସ୍ତ୍ରୀ ହଳଦୀପାଣି କଂସାକୁ ହାତରେ ଧରିଲା । ଧରମୁ କୁଣ୍ଡ ଆନନ୍ଦରେ ଅଧୀର ହୋଇ ଉଠିଲା । ଲାଞ୍ଜ ଟେକି ସେ ଖାଲି ଝରକାର ବାଡ଼ ଧରି ଝରକାରେ ମୁହଁକୁ ଘଷିଲା,

ଆଉ ଘାଉଁ ଘାଉଁ ହେଲା । "ଆସ, ଆସ, ମୋ ରାଣୀଟା ପରି ! ଭୟ ନ କର ବାହାରକୁ ଆସ । ଆସ, ଆସ, ଜଲଦି ଆସ, ରାତି ପାହି ଆସିଲାଣି, ଜଲଦି ଆସ, ହଳଧାପାଣିରେ ମୋ ଦେହ ପୋଛିଦିଅ । ଓଃ, ଆସ-ଆସ- ଆସ ! ତୁମ ଗୋଡ଼ ଧରୁଛି, ଆସ ! ମାସ ହାୟ !

ହଳଧାପାଣି କଂସାକୁ ଦେଖି ଧରମୁ କଣ୍ଡର ଏତେ ଚଞ୍ଚଳତା ଓ ଆଶାପ୍ରବଣତା ଏଇ ବାଘ ରୂପରେ ପ୍ରକାଶିତ ବା ହୁଅନ୍ତା କପରି ? ତାର ସ୍ତ୍ରୀ ଭୟରେ ବୁଦ୍ଧିଶୂନ୍ୟ ହୋଇ କଣ୍ଟ ଆଗପଛ ନ ବିଚାରି ସେଇ ଝରକା ବାଟେ ମନ୍ତ୍ରର ହଳଧାପାଣି କଂସାକ ତା ଉପରକୁ ଫୋପାଡ଼ିଦେଲା । କଂସାକପାକ ପାଣିରୁ କେତେ ଅଳ୍ପ ଟୋପା ପାଣି ଦେହରେ ପଡ଼ିଲା ଓ ଆଉ ସବୁ ସେଇ ଝରକା ତଳେ ଭୂଇଁରେ ଢାଳିଗଲା ।

ସଙ୍ଗେ ସଙ୍ଗେ ଧରମୁ କଣ୍ଡ କେଉଁ ବିକଳରେ ସେଇ ଭୂଇଁ ଉପରେ ଗଡ଼ିଗଲା । ମାତ୍ର ବୃଥା । ବାଲି ଜାଗାରେ ପାଣି ସବୁ ବାଲି ପିଇ ଯାଇଥିଲା ।

ପୂର୍ବଦିଗରେ ପ୍ରଭାତର ସୂଚନା । ସୂର୍ଯ୍ୟୋଦୟର ଆଭାସ ଦେଖାଗଲା । ବାଘ ଧରମୁ କଣ୍ଡ ଘାଉଁ ଘାଉଁ ହୋଇ ଜନବସତି ଛାଡ଼ି ବଣକୁ ପଳାଇଗଲା ।

ସେ ଆଉ କୌଣସିମତେ ବାଘରୁ ମଣିଷ ହୋଇ ପାରିବ ନାହିଁ ।

କିଛିଦିନ ପରେ ଲୋକେ ଶୁଣିଲେ ଯେ ବଣ ଭିତରେ ଗୁଣୀ କରୁ କରୁ ଗଣିଆ ଧରମୁ କଣ୍ଡକୁ ଚଣ୍ଡୀ ଖାଇଗଲେ ।

ତାର ସ୍ତ୍ରୀ ମଧ୍ୟ କିଛିଦିନ ପରେ ମରିଗଲା । ଆଉ ତାର ବଂଶରେ କେହି ନାହାନ୍ତି ।

ତାର ମନ୍ତ୍ର, ଯନ୍ତ୍ର, ତନ୍ତ୍ର ମାଳା ପୋଥିସବୁ ସେହିପରି ତାର ଘର ମଝିରେ ଅନେକ ଦିନ ପଡ଼ିଥିଲା । ମାତ୍ର ଅଜି କେହି ସାହସ କରି ସେ ପୋଥିର ପାଖ ମାଡ଼ିଲେ ନାହିଁ । କାରଣ ଏକଥା ନିଶ୍ଚିତ ଯେ ଗୁଣୀ-ଗାରେଡ଼ି କରିବା ବ୍ୟକ୍ତିର ବଂଶରେ କେହି ରହନ୍ତି ନାହିଁ । ଧରମୁ କୁଣ୍ଡିର ବଂଶକୁ ଚଣ୍ଡୀ ଖାଇଗଲା ପରି, ଚଣ୍ଡୀ ସେହି ଗୁଣିଆର ବଂଶ ଲୋପ କରି ଦିଅନ୍ତି ।

ବର୍ତ୍ତମାନ ସେ ପୋଥି ସବୁରୁ କେତେକ ଉଇମାନେ ଶେଷ କରି ଦେଲେଣି ଏବଂ କେତେକ ପୋଥି ଧରମୁ କୁଣ୍ଡିର ଦୂର ସମ୍ପର୍କୀୟ ଭାଇ ହରି କୁଣ୍ଡି ପାଖରେ ଅଛି ବୋଲି କେତେକେ କହନ୍ତି । ହରି କୁଣ୍ଡି ମନ୍ତ୍ରସାଧକ ନୁହେଁ । ତେଣୁ ତା' ପାଖେ ସେ ପୋଥିମାନ ଥିଲେ ବି ସେ କିଛି କରିପାରିବ ନାହିଁ । ମାତ୍ର ଧରମୁ କୁଣ୍ଡିକୁ ବାଘ ଯନ୍ତ୍ରଣାରୁ ମୁକ୍ତ ଦେବାର ଆଶା ଭବିଷ୍ୟତରେ ମଣିଷ ସମାଜର ନିଶ୍ଚୟ ଅଛି । ଧରମୁ କୁଣ୍ଡିକୁ ବାଘର ଖୋଳପା ଭିତରୁ କାଢ଼ି ଆଣିବାର ଦାୟିତ୍ୱ ବର୍ତ୍ତମାନ ସମଗ୍ର ମନୁଷ୍ୟ ସମାଜର । ଧରମୁ କୁଣ୍ଡି ମଣିଷ ହୋଇ ମରିଥିଲେ ତାର ଗତି ପରିବର୍ତ୍ତନ ପାଇଁ ଆମର ଚିନ୍ତା କରିବାର କିଛି ନ ଥିଲା— ମାତ୍ର ମଣିଷ ଧରମୁ କୁଣ୍ଡିକୁ ବାଘ କରି ଛାଡ଼ି ଦେଇ ଆମେ ନିଶ୍ଚିନ୍ତରେ ରହିପାରିବା କି ଉଚିତ ହେବ ବୋଲି ଆପଣ ଭାବୁଛନ୍ତି ? ଆମେ କଣ ମଣିଷବଂଶ ଲୋପ କରି ବାଘବଂଶ ବଢ଼ାଇବା ? ତା ଛଡ଼ା କ୍ଷଣିକ ଦୁର୍ବଳତାରେ ଧରମୁ କୁଣ୍ଡି ବାଘ ହୋଇ ଯାଇଥିଲା ସତ; ମାତ୍ର ସେ କି ସେଇ ବାଘଦେହରେ ବାଘ ରୂପରେ ଆନନ୍ଦରେ ଅଛି ବୋଲି ଆପଣ ଭାବୁଛନ୍ତି ? ସେ ଖାଲି ଛଟପଟ ହେଉଛି । ବାଘର କଙ୍କାଳ ତଳେ ଧରମୁ କୁଣ୍ଡିର ମଣିଷଆତ୍ମା ନୀରବରେ ଚିତ୍କାର କରୁଛି, ସେ ବାଘରୁ ମଣିଷ ହେବାକୁ ଚାହେଁ ।

ବହୁଦିନ ଗତ ହୋଇ ଗଲଣି । ଏ ମୋ ପିଲାଦିନର ଗଳ୍ପ । ଧରମୁ କୁଣ୍ଡକୁ ମୁଁ ନିଜେ ସ୍ୱଚକ୍ଷୁରେ ଦେଖି ନାହିଁ । ମାତ୍ର ଶୁଣିଛି, ମୋତେ ଛଅ ବର୍ଷ ବୟସବେଳୁ ଧରମୁ କୁଣ୍ଡର ଏଇ ଶୋଚନୀୟ ପରିଣତି ମୋର ହୃଦୟକୁ କରୁଣାର୍ଦ୍ର କରି ରଖିଛି । ଏବେ ବି ଦିନେ ଦିନେ ଏକାକୀ ଗ୍ରାମପଥରେ ସନ୍ଧ୍ୟା ଭ୍ରମଣରେ ବାହାରିଲାବେଳେ ମୋର ମନେହୁଏ—ଧରମୁ କୁଣ୍ଡ ସତେ ବା ସେହି ବାଘ ରୂପରେ ଏବେ ବି ଗାଁ-ଗହଳ ଆଉ ବଣଜଙ୍ଗଲରେ ଲୁଚି ଲୁଚି ବୁଲୁଛି, ଆଉ ବିକଳରେ ମଣିଷ ସଙ୍ଗେ ମିଶି ନିଜର ଦୁଃଖ ସେମାନଙ୍କୁ ଜଣାଇବ ବୋଲି, ବାଘର ଆଖିରେ ବି ଅତି କରୁଣ ଦୃଷ୍ଟିରେ ମଣିଷକୁ ଦୂରରୁ ଚାହିଁ ଚାହିଁ ବାଡ଼ କଡ଼େ କଡ଼େ ପାହୁଣ୍ଡ ପକାଇ, ଛପି ଛପି, ଜହ୍ନ ଆଲୁଅର ଛାଇତଳେ, ଶୁଖିଲା ପତ୍ର ଉପରେ, ଧୀରେ ଧୀରେ ଖସ୍ ଖସ୍ କରି ମୋ ସଙ୍ଗେ ସଙ୍ଗେ ପଦ ମିଳାଇ ଚାଲିଛି ।

ମୋର ଭୟ ହୋଇଛି ଏବଂ ଚାରିଦିଗ କରି ନିରୀକ୍ଷଣ କରି ଦେଖିଲାବେଳକୁ ମୁଁ ବୁଝିପାରିଛି ଯେ ମୋର ଛାଇ ଦେଖି ଓ ପଦଶବ୍ଦ ଶୁଣି ମୁଁ ଚମକି ପଡ଼ିଛି କେବଳ । ମାତ୍ର ମୋର ବି ସନ୍ଦେହ ହୋଇଛି—ମୋ ଛାଇଟା ସଙ୍ଗେ କଣ ବାଘ ଧରମୁ କୁଣ୍ଡର କିଛି ସମ୍ପର୍କ ଅଛି ?

ସେ ଯାହାହେଉ, ମୁଁ ଆଜି ସମଗ୍ର ମନୁଷ୍ୟ ସମାଜ ଆଗରେ ଧରମୁ କୁଣ୍ଡ ପାଇଁ ଅନୁରୋଧ କରୁଛି—

"ଧରମୁ କୁଣ୍ଡକୁ ବାଘରୁ ମନୁଷ୍ୟ କରାଯିବାର ବନ୍ଦୋବସ୍ତ ଶୀଘ୍ର ଆରମ୍ଭ କରାଯାଉ ।"

# ପ୍ରତ୍ନତତ୍ତ୍ୱବିଦ୍

ଲାବଣ୍ୟକୁ ଆଦୌ ଭଲ ଲାଗେ ନା ସ୍ୱାମୀ ବିଚିତ୍ରାନନ୍ଦଙ୍କର ଏଭଳି ଅଦ୍ଭୁତ ବ୍ୟବହାର । ତାଙ୍କ ଏହି ବଦ୍‌ଖିଆଲ, ଏହି ଏକମୁଖୀ ଶୁଷ୍କ ଲକ୍ଷ୍ୟ, ପ୍ରବଣତାକୁ ଉଣେଇଶି କୋଡ଼ିଏ ବର୍ଷ ବୟସର ଚପଳ ଛଳଛଳ-ଯୌବନ ଢଳ ଢଳ ଲାବଣ୍ୟମୟୀ ଲାବଣ୍ୟ ପସନ୍ଦ ପସନ୍ଦ ବା କରନ୍ତେ କିପରି ? କିନ୍ତୁ ବିଚିତ୍ରାନନ୍ଦଙ୍କର ଏଇ ବିଚିତ୍ର ଖିଆଲଟା ପାଇଁ ଯେ ନିଜେ ବିଚାରୀ ଲାବଣ୍ୟରେଖା ସର୍ବତୋଭାବେ ଦାୟୀ, ଏ କଥା ତାଙ୍କୁ କହିଲେ ସେ ହୁଏ ତ ପ୍ରଥମରୁ ବିରକ୍ତ ହୋଇ ଉଠିଥାନ୍ତେ ।

ଲାବଣ୍ୟ ଜଣେ ସାଧାରଣ ନାରୀ ଏବଂ ସବୁ ନାରୀଙ୍କ ପରି ସେ ବି ଚାହୁଁଥିଲେ ସ୍ୱାମୀଙ୍କୁ ନିଜ କବଳକୁ ଆଣି ଅକ୍ତିଆରରେ ରଖିବାକୁ । ସ୍ୱାମୀ ତାଙ୍କର ଇତିହାସ ଅଧ୍ୟାପକ । ଲାବଣ୍ୟ ବି ଥିଲେ ଇତିହାସ ଗ୍ରାହୀ । ତେଣୁ ସେ ବିବାହର ଅଳ୍ପଦିନ ମଧ୍ୟରେ ଠିକ୍ କରିନେଲେ ଯେ, ତାଙ୍କର ଐତିହାସିକ ସ୍ୱାମୀଟିକୁ ଆୟତ୍ତ କରିବାକୁ ହେଲେ ସେ ନିଜେ ନିଜକୁ ଐତିହାସିକର ଲୋଭମୟ କରି ରଖିବାକୁ ଚେଷ୍ଟା କରିବ । ବିଚିତ୍ରାନନ୍ଦ ଥିଲେ ଧର୍ମର ସନ୍ତାନ । ଲାବଣ୍ୟ ଧନିକର କନ୍ୟା ଆଉ ଧନିକର କୂଳବଧୂ !

ସେଥିପାଇଁ କ୍ଲାସିକାଲ୍ କଳା ଓ ସ୍ଥାପତ୍ୟ ଉପରେ ତାଙ୍କର ମୋହ ଖୁବ୍ ବଢ଼ି ଯାଇଥିଲା । ଫଳରେ ଗ୍ରୀସୀୟ କାରୁକଳା ଓ ଘାସ୍ପର୍ଯ୍ୟ ବନ୍ଧାଣୀରୁ ଆରମ୍ଭ କରି ଉତ୍କଳର କେଶରୀ-ଓ ଗଙ୍ଗବଂଶର ସମସ୍ତ ସ୍ଥାପତ୍ୟର ପ୍ରତୀକରୂପେ ସେ ଅନେକ ଫଟୋ—ଭଗ୍ନସୁନ୍ଦର ମୂର୍ତ୍ତି ଓ ଶିଳାଖଣ୍ଡ ଆଣି ନିଜର ଶୟନକକ୍ଷ ସଜ୍ଜିତ କରିଥିଲେ । ଏଟା ଅବଶ୍ୟ ଲାବଣ୍ୟଙ୍କର ଏକ ରୁଚିର ଆଭିଜାତ୍ୟ । ଠିକ୍ ସ୍ୱତଃଜାତ ରୁଚି ନୁହେଁ — କିନ୍ତୁ ଏକ ଅଭିଜାତ ସମାଜରେ ଚଳିବାକୁ ହେଲେ, ପ୍ରାଚୀନ ପରମ୍ପରାକୁ କେତେକ ପରିମାଣରେ ଜଗିରଖି ଏକ କ୍ଲାସିକାଲ୍ ରୁଚିକୁ ଆୟତ୍ତ କରି ନେବାରେ ସେ ଖୁବ୍ ଯତ୍ନଶୀଳା ହୋଇ ଉଠିଥିଲେ । ସେଥିପାଇଁ ଭଞ୍ଜୀୟ ସଙ୍ଗୀତ ବା କବିସୂର୍ଯ୍ୟଙ୍କର ଚମ୍ପୂକୁ ସେ ବୁଝି ନ ପାରୁଥିଲେ ବି ତାରଯନ୍ତ୍ର ଉପରେ ଗଳାଯନ୍ତ୍ରର ଅପୂର୍ବ ସମନ୍ୱୟ ଆଣି ସେ ଓଡ଼ିଶୀ ସଙ୍ଗୀତର ଲହର ବି ଛୁଟାଉଥିଲେ । ନିଜର ବେଶଭୂଷାରେ ବି ସେହିପରି ଲାବଣ୍ୟ ଅନେକଟା ଐତିହାସିକ ରୁଚିକୁ ଆୟତ୍ତ କରି ଦେଇଥିଲେ । ନିଜର କବରୀ ରଚନାରେ, ଶାଢ଼ୀର ବେହରଣରେ, ମୃଗମଦ ଓ କସ୍ତୁରୀ ଧାରଣରେ ଏବଂ ଉରଜରେ ଚିତ୍ର ଅଙ୍କନରେ ଲାବଣ୍ୟ ବେଶ ଗୋଟେ ଆମୋଦ ବି ଅନୁଭବ କରୁଥିଲେ; ଯଦିଓ ତାଙ୍କର ଅବଚେତନରେ ଐତିହାସିକ ସ୍ୱାମୀ ବିଶ୍ୱନାଥଙ୍କୁ ଆୟତ୍ତ କରିବାପାଇଁ ଏହି ରୁଚି ଥିଲା ଠିକ୍ ଗୋଟିଏ ଆତ୍ମୋଦର ପ୍ରୟାସ ମାତ୍ର । ଏଇଟା ତାଙ୍କର ଆଭିଜାତ୍ୟର ରୁଚି ବା ରୁଚିର ଆଭିଜାତ୍ୟ—ଏ କଥା ଐତିହାସିକ ଅଧ୍ୟାପକ ସ୍ୱାମୀ ବିଶ୍ୱନାଥ କରଙ୍କୁ ବି ମାଲୁମ ନ ଥିଲା ।

ଇତିହାସ ଶାସ୍ତ୍ରରେ ବିଶ୍ୱନାଥଙ୍କର ଦଖଲ ଥିଲା, ମାତ୍ର "ମାତ୍ର ମୃତ-ବିସ୍ମୃତ, ବିଗତ ପ୍ରାଚୀନତା ଉପରେ ତାଙ୍କର ନ ଥିଲା

ସେମାନଙ୍କ କଳ୍ପ ଖିଆଲ—ସେମାନଙ୍କ କଳ୍ପ ଉତ୍ତେଜନା ବା ଏମିତି କଳ୍ପ ଚିନ୍ତା । ସେ ଇତିହାସକୁ କେବଳ କର୍ତ୍ତବ୍ୟ ଦ୍ୱାରା ହିଁ ଦେଖିଥିଲେ । ଇତିହାସର ଯେ ଗୋଟାଏ ରୋମାନସ୍ ଅଛି, ଗୋଟାଏ ଆକର୍ଷଣ ଅଛି, ଏ କଥା ଶିବାନନ୍ଦଙ୍କ ହୃଦୟକୁ କେବେ ଛୁଇଁ ନ ଥିଲା । ଶିବାନନ୍ଦ ଥିଲେ ବଡ଼ ଗଦ୍ୟମୟ । ଇତିହାସକୁ ସେ ଖୁବ୍ ଭଲ ପାଆନ୍ତି ବୋଲି ଯେ ସେ ଇତିହାସରେ ଏମ୍.ଏ. ପାସ କଲେ କୃତିତ୍ୱର ସହିତ, ତା'ବି ନୁହଁ । ସେ ଯେ କୌଣସି ବିଦ୍ୟାରେ ମଧ୍ୟ କୃତିତ୍ୱର ସହିତ ଏମ୍. ଏ. ପାସ କରିଥାନ୍ତେ । ସେ ଥିଲେ ଅସାଧାରଣ କୃତି-ଛାତ୍ର । ଇଣ୍ଡିଆନ୍ ଆଡ଼୍‌ମିନିଷ୍ଟ୍ରେଟିଭ ସରଭିସ୍‌ରେ ସେ ବସି ନ ହେଲେ-ଥିଲେ ଏବଂ ସେହି ବିଭାଗର ଚାକିରି କରିଥିଲେ ସେ ଆଜକୁ ୫ ବର୍ଷ ଚାକିରି କରି ସାରନ୍ତେଣି । ମାତ୍ର ନିର୍ଦ୍ଧାରିତ ବୟସରୁ ତାଙ୍କର ଗୋଟିଏ ସପ୍ତାହ ବେଶି ବୟସ ଗଡ଼ି ଯାଇଥିଲା । ସେଥିପାଇଁ ଉପାୟ ନ ଦେଖି ଶିବାନନ୍ଦ ଇତିହାସ ଅଧ୍ୟାପକର ଅଧମ ଉଦ୍ଧା-ରଣ ପନ୍ଥାଟିକୁ ଆଶ୍ରୟ କରି ନେଇଛନ୍ତି । ତେଣୁ ଇତିହାସର ବିଷୟଟା ପ୍ରତି ତାଙ୍କର ସେପରି କିଛି ଉଚ୍ଚ ଧାରଣା ନ ଥିଲା ବା ନାହିଁ । ମାତ୍ର ଶିବାନନ୍ଦ କପରି ଇତିହାସର ପ୍ରେମରେ ପଡ଼ିଗଲେ, ସେ ସମ୍ବନ୍ଧରେ ଗୋଟିଏ ଶ୍ରେଷ୍ଠ ଇତିହାସ ଅଛି ।

ଥରେ— ।

ମାଘ ଶେଷର ଏକ ଜ୍ୟୋତ୍ସ୍ନା-ଚର୍ଚ୍ଚିତ ଅଥଚ କୁହୁଡ଼ିସାପ୍ରଷ୍ଟ ରାତି । ଶିବାନନ୍ଦଙ୍କର ହଠାତ୍ ନିଦ ଭାଙ୍ଗିଗଲା । ସେ ଶୟନଗୃହରୁ ବାହାରି ଆସି ନିଜର ପ୍ରାଙ୍ଗଣଲଗ୍ନ କ୍ଷୁଦ୍ର ଉଦ୍ୟାନଟି ମଧ୍ୟରେ ଅନ୍ୟମନସ୍କଭାବେ ପଦଚାରଣ କରିବାକୁ ଲାଗିଲେ । ଅର୍ଦ୍ଧ-ରାତି । ସମସ୍ତ ମହାନଗରୀ ସୁପ୍ତ । ରାଜପଥରେ ଯାନବାହନର ଚଳାଚଳ ବନ୍ଦ ହୋଇ ଆସିଛି । ଏକ ପାତଳୀ କୁହେଳୀର ଅସ୍ପଷ୍ଟ

ଆବରଣ ଭିତରେ ସଚିଦାନନ୍ଦ ଦେଖିବାକୁ ଲାଗିଲେ—ତାଙ୍କ ଘର ଆଗରେ ଥିବା କବରସ୍ଥଳୀଟିକୁ । ସେଇଟି ଏକ ଖ୍ରୀଷ୍ଟିଆନ୍ କବରସ୍ଥଳୀ । ସଚିଦାନନ୍ଦ ମୁଗ୍ଧ ହୋଇ ସେହି ଆଡ଼କୁ ଚାହିଁରହିଲେ । ହଠାତ୍ ତାଙ୍କର ମନେହେଲା, ସେ ସତେ ବା ପ୍ରାଗୈତିହାସିକ ଯୁଗର ରୂପକଥାର ଜଣେ ଭ୍ରାମ୍ୟମାଣ ପଥଭ୍ରଷ୍ଟ ରାଜକୁମାର ! ଅଜାଣତରେ ଆସି ପହଁଚି ଯାଇଛନ୍ତି ଏପରି ଏକ ସ୍ଥାନରେ—ଯାହା କି ପୂର୍ବରୁ କୌଣସି ପ୍ରତିହିଂସାପରାୟଣ ଯାଦୁକର ତା'ର କଳାକାଠି ଛୁଆଁଇ ମୃତବତ୍ କରି ଦେଇଛନ୍ତି !! ସଚିଦାନନ୍ଦଙ୍କର ମନ ରୋମାଣ୍ଟିକ୍ ହୋଇ ଉଠିଲା । ସେ ବାହ୍ୟଜ୍ଞାନ ହରାଇ ବସିଲେ । ଶୀତକାଳୀନ କାକର ବୃଷ୍ଟିକୁ ଭ୍ରୂକ୍ଷେପ ନ କରି ସେ ମାଧବୀଲତା-କୁଞ୍ଜ ତଳସ୍ଥ ଏକ ସିମେଣ୍ଟ ଚେୟାର ଉପରେ ବସିପଡ଼ିଲେ । ଇସ୍ ! ଆଜି ଅଜଣାର ଏ କି ଆକର୍ଷଣ ! ଅତୀତର ଏ କି ତୀବ୍ର ଦହନ !! ହଠାତ୍ ସଚିଦା-ନନ୍ଦଙ୍କର କଳ୍ପନାରେ ଡେଣା ଲାଗିଗଲା । ସେ ଯେପରି ଆଜି ପର୍ଯ୍ୟନ୍ତ ଏକ ସଂକୀର୍ଣ୍ଣ ଗୃହସ୍ଥଳୀରେ ନିର୍ମମ କାରାବାସୀ ଥିଲେ !! "ବର୍ତ୍ତମାନ"ରେ କେବଳ ଉପସ୍ଥିତ ମୁହୂର୍ତ୍ତଟାରେ ଜାଗ୍ରତ ହୋଇ ସେ ଯେପରି ଏତେ କାଳଧରି ମଧ୍ୟରୁ "ଅତୀତ"ଟା ପ୍ରତି ଅବଜ୍ଞା କରି ଆସି-ଛନ୍ତି । ସେ ଥିଲେ ଯେପରି ଗୃହର ସ୍ୱର୍ଣ୍ଣ-ପିଞ୍ଜରରେ ଆବଦ୍ଧ ବହୁକାଳ ଧୃତ ଏକ ଦୁଗ୍ଧାନ୍ନପୋଷ୍ୟ ବନ୍ୟକପୋତ !! ଠିକ୍ ସେତିକି-ବେଳେ ହିଁ ପଶ୍ଚିମର ଚକ୍ରବାଳରେ ଦୁଇଟି ନାରିକେଳ ବୃକ୍ଷର ଶାଖାରନ୍ଧ୍ର ଦେଇ ଦଶମୀ ଚନ୍ଦ୍ର ଅତି କରୁଣ ଭାବେ ଅସ୍ତ ଗଲେ । ସଚିଦାନନ୍ଦ ଆବେଗର ଆତିଶଯ୍ୟରେ ସେଇ ମଳିନହାର ବିବର୍ଣ୍ଣ ଅସ୍ତ ଦୃଶ୍ୟ ପ୍ରତି ଲୋତକ ବିସର୍ଜନ କରିବାକୁ ଲାଗିଲେ । ଗୋଟିଏ ଦୁଇଟି ବନ୍ୟଶୃଗାଳ ରାସ୍ତା ପାର ହୋଇ ବଟଫଳ ଭକ୍ଷଣରେ ବ୍ୟସ୍ତ । ସଚିଦାନନ୍ଦ ସମାଧି ଆଡ଼କୁ ଚାହିଁରହିଲେ । ସେ ନିଜେ

ଅବା ସେହି ସମାଧିଗୁଡ଼ିକ ମଧ୍ୟରୁ ଗୋଟିଏ !! ସେ ସତେ ବା ମୃତ୍ତ ଜନ୍ମ !! ସତେ ଅବା ସେ ଇତିହାସ ପାଲଟି ଯାଇଛନ୍ତି !! ଆଃ ! ଏ ଅନୁଭବ, ଏ ଉତ୍ତେଜନା, ଏ ଉନ୍ମାଦନା ବିଚିତ୍ରାନନ୍ଦଙ୍କ ମଧ୍ୟରେ କେଉଁଠି ଲୁଚି ରହିଥିଲା ଆଜି ପର୍ଯ୍ୟନ୍ତ ??

ହଠାତ ମନ୍ଦିର ଏଇ ଅଚେତନ ନିସ୍ତବ୍ଧତାକୁ ଭଙ୍ଗ କରି, ଦ୍ୱାର ପାର୍ଶ୍ୱର ପୁଷ୍ପଲତାକୁ ମୃଦୁ ମଧୁ ପ୍ରକମ୍ପିତ କରି ଶୁଣାଗଲା କାହାର ନୂପୁରର ନିକ୍ୱଣ ଏବଂ ତା' ସଙ୍ଗେ ସଙ୍ଗେ ଏକ ତୀବ୍ର ସୁଗନ୍ଧର ସୌରଭରେ ବାୟୁମଣ୍ଡଳ ସୁରଭିତ ହୋଇ ଉଠିଲା । ବିଚିତ୍ରାନନ୍ଦ ଚମକି ପଡ଼ିଲେ । ସେ ସ୍ୱପ୍ନ ଦେଖୁ ନାହାନ୍ତି ତ ? ସେ କଣ ଦୂର ଅତୀତର ଉଜ୍ଜୟିନୀ ସୀମାନ୍ତରେ ପ୍ରବାହମାନ ସିପ୍ରାନଦୀ ତୀର-ବର୍ତ୍ତୀ ଏକ ସୁରମ୍ୟ ପୁର ଉଦ୍ୟାନରେ ? ଯାହାର ସମ୍ମୁଖରେ ଏହି ଗମ୍ଭୀର ମହାକାଳ ମନ୍ଦିର—ଆଉ ସେ ଯେପରି ତାର ସମ୍ମୁଖରେ ଛିଡ଼ା ପଡ଼ିଛନ୍ତି ଏକ ପଥଭ୍ରଷ୍ଟ ରାଜକୁମାର ରୂପରେ । ବିଚିତ୍ରାନନ୍ଦ କାହାର ପ୍ରତୀକ୍ଷାରେ ଯେପରି ଅସ୍ଥିର ହୋଇ ଉଠିଲେ !!

ଠିକ୍ ସେତିକବେଳେ ହିଁ ଦୁଇ ପାର୍ଶ୍ୱସ୍ଥ କୁଞ୍ଜଲତାକୁ ଦୁଇ ପାର୍ଶ୍ୱକୁ ପ୍ରସାରିତ କରି କରି ତନୁଲତାକୁ ଗର୍ବିଳୀ ହଂସୀଗମନରେ ଛନ୍ଦିତ କରି ମନ୍ଦାକାନ୍ତ ଗତିରେ ପ୍ରବେଶ କଲେ ମିସେସ୍ ଲାବଣ୍ୟ । ଆଜି ସେ ବହୁସମୟ ଖର୍ଚ୍ଚ କରି ନିଜର ବେଶବିନ୍ୟାସକୁ ଦୁଇଶ ବର୍ଷ ତଳକୁ ଫେରାଇ ନେଇ ପାରିଛନ୍ତି । ଏଇ ବେଶ ପରିବର୍ତ୍ତନ ତାଙ୍କର ଏକ ସୌଖୀନ ଖିଆଲ । ସ୍ୱାମୀ ବିଚିତ୍ରାନନ୍ଦ କେବେ ସୁଦ୍ଧା ତାଙ୍କର ଏଇ ବେଶ ପରିବର୍ତ୍ତନ ପ୍ରତି ସଜାଗ ହୋଇ ପାରିନାହାନ୍ତି । ମାତ୍ର ଆଜି ହଠାତ୍ ତାଙ୍କର ମନେ ହେଲା—ବର୍ତ୍ତମାନର ଏଇ ଲାବଣ୍ୟ ସତେ ବା ସେହିଭଳି ବହୁ ଅତୀତର ପୂର୍ବଜନ୍ମର ତାଙ୍କର ପ୍ରଥମା ପ୍ରିୟା-

ମୁଖରେ ତା'ର ଲୋଧ୍ରରେଣୁ, ହସ୍ତରେ ଲୀଳାପଦ୍ମ, କର୍ଣ୍ଣ-ମୂଳରେ କୁନ୍ଦକଳୀ, ମଥାରେ କୁରୁବକ, କବରୀରେ ରକ୍ତକରବୀ, ମଣିବନ୍ଧରେ ବକୁଳର ବଳୟ, ଅଙ୍ଗରେ ନୀଳାମ୍ବର । ସେ ସତେ ବା ଏଇ ଘନ ବନ ତଳେ ଘନ ନୀଳବସନା ଏକ ସୁନ୍ଦରୀ ଅଭି-ସାରିକା, ଯାହାର କଟିରସନା ନୃତ୍ୟ କରୁଚି ଏକ ଲାସ୍ୟମୟ ଲଳିତ ଛନ୍ଦରେ ଏବଂ ନୂପୁରର ନିକ୍ୱଣକୁ ନିୟମିତ ଆଉ କ୍ଷୀଣତର କରିବା ପାଇଁ ଯାହାର ମୃଦୁ ପଦପାତ ଏତେ ଧୀର—ଏତେ ସଂଯତ—ଏତେ ଭୀତ—ଏତେ ତ୍ରସ୍ତ !!!

ବଜ୍ରସାନନ୍ଦ ବହୁତ ବେଖେର ହୋଇ ହାଇ ମାରିଲେ । ଖୁବ୍ ପାଖକୁ ଲାଗି ବସିଲେଣି ଲବଣ୍ୟ । ବଜ୍ରସାନନ୍ଦ ଚଞ୍ଚଳ ହୋଇ ଉଠିଲେ ଶିରାପ୍ରଶିରାରେ ରକ୍ତର ପ୍ରବାହ ଖୁବ୍ ଜୋର୍‌ରେ ଛୁଟିବାକୁ ଲାଗିଲା । ଆବେଗର ଆତିଶଯ୍ୟରେ ବଜ୍ରସାନନ୍ଦ ପ୍ରଶ୍ନ କଲେ, "ଭଦ୍ରେ ! ତୁମେ କଣ ମଗଧର ସେଇ ବହୁବିଶ୍ରୁତ ସୁନ୍ଦରୀ ରାଜନର୍ତ୍ତକୀ—ଏକାକିନୀ ଏଇ ଅର୍ଦ୍ଧନିଶୀଥରେ ଅଭିସାର କରି ଚାଲିଛ ?"

"ହଁ, କିନ୍ତୁ ଆର୍ଯ୍ୟପୁତ୍ର ! ଆପଣ କଣ କଳିଙ୍ଗ ଦେଶର ପଥଭ୍ରଷ୍ଟ ରାଜକୁମାର ? ଆପଣ କଣ ଖୁବ୍ ତୃଷାର୍ତ୍ତ ?"

ଆବେଗରେ ଜ୍ଞାନଶୂନ୍ୟ ହୋଇ ବଜ୍ରସାନନ୍ଦ ଲବଣ୍ୟଙ୍କର ସୁନ୍ଦର ଅଙ୍ଗୁଳିଗୁଡ଼ିକର ଅଗ୍ରଭାଗରେ ବହୁବାର ଚୁମ୍ବନ କଲେ ।

ବାସ୍ ! ସେହିଦିନୁ—ଠିକ୍ ସେହିଦିନୁ—

ବଜ୍ରସାନନ୍ଦଙ୍କର ଆସିଲା ଘୋର ପରିବର୍ତ୍ତନ । ଇତିହାସର ଶୁଷ୍କପତ୍ର ମଧ୍ୟରୁ ସେ ପାଇଲେ କି ଏକ ଅନିର୍ବଚନୀୟ ରୋମାନ୍ସ ।

ଅନ୍ତତଃ ଉପରେ ବିଚିତ୍ରାନନ୍ଦଙ୍କର ଖିଆଲି ଭାବପ୍ରବଣତା ଛଟେ ବଢ଼ିଚାଲିଲା । ଫଳରେ ଭୂଖୋଦିତ କେତେ ଭଗ୍ନ ବିକଳ ମୂର୍ତ୍ତି; କେତେ ଅର୍ଦ୍ଧଭଗ୍ନ ଅଗ୍ନିଦଗ୍ଧ ମୃତ୍ତିକାପାତ୍ର—କେତେ ଜଙ୍ଗଭରା ତାମ୍ରଫଳକ—ବିଚିତ୍ରାନନ୍ଦଙ୍କର ଗୃହ ମଣ୍ଡନ କରିବାକୁ ଲାଗିଲା । ଗୃହ ମଧ୍ୟସ୍ଥ ପରୀକ୍ଷାଗାରରେ ବସି ଦିନ ରାତି ବିଚିତ୍ରାନନ୍ଦ କେବଳ ଭଗ୍ନମୂର୍ତ୍ତିଗୁଡ଼ିକୁ ପରୀକ୍ଷା କରି ଚାଲିଲେ ।

ବିଚିତ୍ରାନନ୍ଦଙ୍କର ସେ ଏକ ବିଚିତ୍ର ଉନ୍ମାଦନା । ବିଚିତ୍ରାନନ୍ଦ ଖିଆପିଆ ଛାଡ଼ିଦେଲେ । ଇତିହାସର ସ୍ୱପ୍ନ ମଧ୍ୟରୁ ସତ୍ୟର ଆବିଷ୍କାର କରିବାରେ ଏକ ତୀବ୍ର କୌତୁକ ଆଉ ଆବେଗ । କେଉଁ ଭଗ୍ନ-ମୂର୍ତ୍ତିର କାରୁକଳାର କେଉଁ ବିସ୍ମୃତ ଅଜ୍ଞାତ ଶତାବ୍ଦୀର, କେଉଁ ଅଖ୍ୟାତ ଅନାବୃତ ଶିଳ୍ପୀଟିର କଳିତ ହସ୍ତର ଲଳିତ ସୃଜନୀଶକ୍ତିର କାହାଣୀ ଅପୂର୍ବ ଭାବେ ବିନ୍ୟସ୍ତ ହୋଇଛି, ତାର ଅପୂର୍ବ ଆବିଷ୍କାରରେ ସନ୍ଧାନ-ପାଗଳ ବିଚିତ୍ରାନନ୍ଦ ନୃତ୍ୟ କରି ଉଠନ୍ତି ।

ପ୍ୟାଣ୍ଟରୁ ବୋତାମ ଛିଡ଼ିଯାଇଛି । କାମିଜଟା ପିନ୍ଧିଛନ୍ତି ଓଲଟା କରି । ଏକ ପଦରେ ଯୋତା ଓ ଅନ୍ୟ ପଦରେ ଚଟି ପିନ୍ଧି ଅବିନ୍ୟସ୍ତ କେଶ ବିଚିତ୍ରାନନ୍ଦ ଆନନ୍ଦରେ ବିଭୋର ହୋଇ ଲାବଣ୍ୟଙ୍କୁ ଡାକି ପକାନ୍ତି—

“ଆଗୋ—ଆଗୋ ଶୁଣୁଚ ନା !! ଶୁଣିଯାଅ ! ଅପୂର୍ବ ଆବିଷ୍କାର, ଆଶ୍ଚର୍ଯ୍ୟ ଉଦ୍ଭାବନ ।”

ବିରକ୍ତ ହୁଅନ୍ତି ମିସେସ୍ ଲାବଣ୍ୟ ।

“ଚୁଲିକି ଯାଉ ତୁମର ଆବିଷ୍କାର—ନିଆଁ ପାଉଁଶ—ଧୂଳିଆ ପଥର ଆଉ ଭଙ୍ଗା ଖପରରେ, ଏ ଘରେ ସୋରିଷ

ମଜାଇବାକୁ ବି ଆଉ ଜାଗା ନାହିଁ । ଆଚ୍ଛା ମିସ୍ ତୁମେ ! କଲେଜରେ ରହିବ ଦିନକୁ ଚାରି ଘଣ୍ଟା—ଲାଇବ୍ରେରୀରେ ଦୁଇ ଘଣ୍ଟା—ଆଉ ତୁମର ଏଇ ପୋଡ଼ାପାଡ଼ ଲାବରେଟରୀରେ ଦିନରାତି ବି ଅଣ୍ଟୁନି ତୁମକୁ । ମୁଁ ଗୋଟେ କିଏ ଏଠି ଅଛି ବୋଲି ତୁମର ଧାରଣା ନାହିଁ ।”

ଡକ୍ଟର୍‌ ଛନ୍ଦ୍ର କଣ୍ଠରେ ସେହିଭଳି ଉତ୍ତର ଦିଅନ୍ତି ସଚ୍ଚିଦାନନ୍ଦ—ଦେଖ ଲାବଣ୍ୟ, ଏଇ ଭଗ୍ନମୂର୍ତ୍ତିଟିକୁ ଦେଖ; ଆଉ ଏଇ ତାମ୍ରଫଳକଟି ଉଭୟେ ଅଷ୍ଟମ ଶତାବ୍ଦୀର । ଓଡ଼ିଶାର ତତ୍‌କାଳୀନ ସାମ୍ରାଜ୍ଞୀ ଦଣ୍ଡୀ ମହାଦେବୀ ଥିଲେ ପରମ ବୈଷ୍ଣବୀ । ମାତ୍ର ଶାକ୍ତଧର୍ମର ପ୍ରାବଲ୍ୟ ଓ ବୈଷ୍ଣବଧର୍ମର ଲୋକପ୍ରିୟତା ଏଇ ଉଭୟର ସାକ୍ଷ୍ୟ ଦେଉଛି, ଏଇ ମୂର୍ତ୍ତି । ଏଇ ମୂର୍ତ୍ତି ଏକ ଡାକମାର ମୂର୍ତ୍ତି, ମାତ୍ର ଏହାର ବାମ ହସ୍ତରେ ମନୁଷ୍ୟ ମୁଣ୍ଡର ଖପୁରୀ, ଡାହାଣ ହସ୍ତରେ ସୁଦର୍ଶନଚକ୍ର । ତାମ୍ରଫଳକରେ ବି ସେଇ ଏକା ଶ୍ଳୋକ—।

କପାଳ ବାମ ହସ୍ତେନ ଦକ୍ଷିଣେ ଚକ୍ରଧାରିଣୀ ।
ସା ଶ୍ୟାମା ସା ଲୋକ—ପ୍ରିୟାଚ···

ତୁମେ ଦେଖ ଲାବଣ୍ୟ, ଏହି ଚକ୍ର ଓ କପାଳ ହିଁ ଅଷ୍ଟମ ଶତାବ୍ଦୀର ଶାକ୍ତ-ବୈଷ୍ଣବଧର୍ମର ଏକ ମହାସମନ୍ୱୟର ସୂଚନା ଦିଏ । ଆଉ ଉତ୍କଳ ସିଂହାସନରେ ସେଇ ଦଣ୍ଡୀ ମହାଦେବୀ—କଳ୍ପନା କର ଲାବଣ୍ୟ, ଶାକ୍ତ ଆଉ ବୈଷ୍ଣବ ଉଭୟ ପ୍ରଜାକୁଳର ମନୋରଞ୍ଜନ ପାଇଁ କେତେବେଳେ ବା ସେ ଶୁଭ୍ରବସନା, ବୀଣା · ପୁସ୍ତକ ରଞ୍ଜିତହସ୍ତା, କୁନ୍ଦେନ୍ଦୁତୁଷାରହାରଧବଳା, ଶ୍ୱେତ-

ସିଂହାସନା, ପରମ ବୈଷ୍ଣବୀ ମହାପରାକ୍ରାନ୍ତା ତ, ଆଉ କେତେବେଳେ ପୁଣି ରକ୍ତବସନା, କପାଳକୁଣ୍ଡଳୀ, ଆଲୁଳାୟିତାକେଶା ଉଗ୍ରା ଭୈରବୀ । ଠିକ୍ ଚଣ୍ଡୀର ସେଇ ରକ୍ତଦନ୍ତିକା, ଗ୍ରୀମଣ୍ଡୀର ବେଶ—

"ମାତୁଲିଙ୍ଗ ଗଦାଖେଟଂ ପାନପାତ୍ରଂଚ ବିଭ୍ରତୀ
ନାଗଂଲିଙ୍ଗଂଚ ଯୋନିଞ୍ଚ ବିଭ୍ରତୀ ନୃପ ମୂର୍ଦ୍ଧନି ।

କଳ୍ପନା କରୁଚ ଲାବଣ୍ୟ ! ଅଷ୍ଟମ ଶତାବ୍ଦୀର ଉତ୍କଳର ସାମ୍ରାଜ୍ଞୀ ଦଣ୍ଡୀ ମହାଦେବୀଙ୍କର ବିଚିତ୍ର ମନ, ବିଚିତ୍ର ବେଶଭୂଷା ଆଉ ବିଚିତ୍ର ଖିଆଲ ! ଲାବଣ୍ୟଙ୍କ ଆଖିରେ ନିଆଁ ଜଳେ । ଆଚ୍ଛା ପାଗଳ ! ଅସମ୍ଭବ ହେଲାଣି ସ୍ୱାମୀଙ୍କର ବ୍ୟବହାର ।

"ତୁମେ ଦଣ୍ଡୀ ମହାଦେବୀଙ୍କ କଥା ନେଇ ଯେତେ ମୁଣ୍ଡ ଖେଳାଉଚ, ମୋ ବିଷୟରେ ତ ମିନିଟିଏ ବି ତୁମ ମୁଣ୍ଡ ଖେଳୁ ନାହିଁ ! ମୋ ଜୀବନଟା କଣ ଏମିତି—"

ଲାବଣ୍ୟ କାନ୍ଦିପକାନ୍ତି ।

"ଆଃ ଲାବଣ୍ୟ, ତୁମେ ପୁଣି କାନ୍ଦିବାକୁ ଆରମ୍ଭ କଲ । ମୁଁ ତ ତୁମକୁ ବହୁତ ଆଗରୁ କହିସାରିଛି; ତୁମେ ତୁମର ସବୁ କାମ ଛାଡ଼ି ମୋ ସଙ୍ଗେ-ଇ ସହଯୋଗ କର । ସହଧର୍ମିଣୀ ଅର୍ଥ ସହକର୍ମିଣୀ । ସାଧାରଣ ଜୀବନର ରୋମାନ୍ସ ଅପେକ୍ଷା ପ୍ରତ୍ନତତ୍ତ୍ୱର ରୋମାନ୍ସ ଯେ କେତେ ମଧୁର ଆଉ କେତେ କୌତୂହଳପ୍ରଦ, ସେ କଥା ତୁମେ ଏଥିରେ ନ ପଶିଲେ ବା ବୁଝିବ କିପରି ?

ଲବଣ୍ୟ ଆଉ କିଛି କହନ୍ତି ନାହିଁ । ମୁକ୍ତି ବି କରନ୍ତି ନାହିଁ । ନିଜେ ଛାଡ଼ି ଦେଇଛନ୍ତି ନିଜ ହାତରୁ ଲଗାମ । ନିଜ ହାତରେ ନିଜେ-ଇ ନିଜର ଜଙ୍ଘ କାଟିଛନ୍ତି । କହିବେ ଆଉ କାହାକୁ ? ପହିଲେ ସ୍ୱାମୀଙ୍କର ମନୋରଞ୍ଜନ ପାଇଁ ସେ ନିଜକୁ ଇତିହାସର ସାଜରେ ସଜାଉଥିଲେ । ମାତ୍ର ତାର ଫଳ ଫଳିଲା ବିପରୀତ । ବିଚିତ୍ରାନନ୍ଦ କ୍ରମେ ଅସାଧାରଣ ହୋଇ ଉଠୁଛନ୍ତି । ରାତିରେ ଦେହ ଓ ମନର ବୁଭୁକ୍ଷା ନେଇ ଲବଣ୍ୟ ଶୟନଗୃହକୁ ଯାଆନ୍ତି । ମାତ୍ର ବିଚିତ୍ରାନନ୍ଦ ରାତି ତିନିଟା ପର୍ଯ୍ୟନ୍ତ ତାଙ୍କ ଲବରେଟରୀରୁ ଆଉ ବାହାରନ୍ତି ନାହିଁ । ଅପେକ୍ଷା କରି କରି ନିରାଶ ହୁଅନ୍ତି ଲାବଣ୍ୟ । କ୍ରୋଧରେ, ବିରକ୍ତିରେ, ଉତ୍ତେଜନାର ପ୍ରକୋପରେ ଲାବଣ୍ୟ ନିଜର ବାହା କାମୁଡ଼ନ୍ତି । ମୁଣ୍ଡରୁ ବାଳ ଛିଣ୍ଡାନ୍ତି ।

ଆତିଶଯ୍ୟରେ ସେ କପାଳଟାକୁ ଧରି ଉନ୍ମାଦ ପରି ଚୁମ୍ବନ କରିବାକୁ ଲାଗିଲେ ।

"ଆଃ, ହେ ମୋର ପ୍ରିୟ କପାଳ !!

"ହେ ମୋର ବିସ୍ମୃତ ଅତୀତର ପ୍ରିୟ କପାଳ !!!

ବିଚିତ୍ରାନନ୍ଦ ପାଗଳ ପରି କପାଳଟାକୁ ଚୁମ୍ବନ କରିବାକୁ ଲାଗିଲେ ଏବଂ ଚିତ୍କାର କରିବାକୁ ଲାଗିଲେ—

ହେ ମୋର ପ୍ରିୟ କପାଳ !!!

ଲବଣ୍ୟକୁ ଏ ଦୃଶ୍ୟ ବଡ଼ କଷ୍ଟ ମନେହେଲା ।

ଇସ୍ ! କି ବୀଭତ୍ସ ! କି ବିକୃତ ରୂପ ! କି ଭୟଙ୍କର ଫାଗଳାମି !

ବିଚିତ୍ରାନନ୍ଦ ପୁଣି ଆବେଗରେ କପାଳଟାକୁ ଲାବଣ୍ୟ ଗାଲରେ ଲଗାଇ କହିଲେ—

"ଦେଖ ଲାବଣ୍ୟ, ଅତୀତର "ମୁଁ" ବର୍ତ୍ତମାନର "ତୁମକୁ" ଚୁମ୍ବନ କରୁଛି । ଅତୀତ ବି ବର୍ତ୍ତମାନକୁ କି ନିବିଡ଼ ଭାବେ ପ୍ରେମ କରେ ! କାରଣ ଅତୀତ ଭଲଭାବେ ଜାଣିଛି ଯେ, ବର୍ତ୍ତମାନ ବୋଲି କିଛି ନାହିଁ, ବର୍ତ୍ତମାନ ଆପାତ ସ୍ୱପ୍ନମାନ ଅସ୍ଥିର ଅତୀତର ମହାପ୍ରବାହରେ ଖୁବ୍ ଶୀଘ୍ର ଲୀନ ହେବ-ଇ ହେବ । ହାଃ-ହାଃ-ହାଃ···ଅନୁଭବ କରୁଚ ନା ଲାବଣ୍ୟ, ମୋର ବନ୍ଧୁ ଅତୀତର ଏଇ କପାଳଟାର ନିବିଡ଼ ଚୁମ୍ବନ !

"ହେ ମୋର ପ୍ରିୟ କପାଳ !!!"

ଲାବଣ୍ୟ ଘୃଣାରେ ଆଉ ବିରକ୍ତିରେ ଘୂଞ୍ଚି ଯାଇ ହାତ ଛୁଞ୍ଚାଡ଼ି-ଦେଲେ । କପାଳଟା ବିଚିତ୍ରାନନ୍ଦଙ୍କ ହାତରୁ ତଳେ ଖସି ପଡ଼ିଲା ।

"ହାୟ ମୋର ପୋଡ଼ା କପାଳ !"

—ଲାବଣ୍ୟ ବିରକ୍ତିରେ, ଘୃଣାରେ ଆଉ ନୈରାଶ୍ୟରେ ଦ୍ରୁତ ଗତିରେ ସେହି ସ୍ଥାନ ତ୍ୟାଗକଲେ ।

× × ×

ଏହାପରେ—

ଏହାପରେ ଲାବଣ୍ୟ ଆଉ ବିଚିତ୍ରାନନ୍ଦ ।

ଶତଚେଷ୍ଟା କରି ମଧ୍ୟ ଲାବଣ୍ୟ ଆଉ ବିଚିତ୍ରାନନ୍ଦଙ୍କଠାରୁ ଅତୀତର ଭୂତଟାକୁ ଛଡ଼ାଇଦେଇ ପାରିଲେ ନାହିଁ ।

ସେଥିପାଇଁ ଲାବଣ୍ୟର ଆଉ ଆଶା ବି ନାହିଁ ।

ସମସ୍ତ ଆଶା ସେ ହରାଇ ସାରିଛନ୍ତି ।

ସେ ଜାଣିସାରିଲେଣି ଯେ, ବିଚିତ୍ରାନନ୍ଦଙ୍କୁ ଆଉ "ବର୍ତ୍ତମାନ" ବାନ୍ଧିରଖି ପାରିବ ନାହିଁ । ସେ ଅତୀତର ପାଲରେ ଚଢ଼ିସାଇଛନ୍ତି । ବର୍ତ୍ତମାନ ସେ ଭୂତଗ୍ରସ୍ତ । ଭୂତ ନ ହେଲେ ବିଚିତ୍ରାନନ୍ଦଙ୍କର ବିଭ୍ରାନ୍ତ ମନକୁ ଆଉ ଆକ୍ରମଣ କରିବା ସମ୍ଭବ ନୁହେଁ ।

ଏହି ଚନ୍ଦ୍ରଚନ୍ଦ୍ରିକାବତ୍ ସ୍ୱାମୀଟି ସମ୍ବନ୍ଧେ ଲାବଣ୍ୟ ଅନୁଭବରେ ଯେଉଁ ଧାରଣାଟି କରି ସାରିଛନ୍ତି, ତାହା ଲାବଣ୍ୟଙ୍କର ଏକ ସାର୍ବଜନୀନ ନାରୀସୁଲଭ ଆବିଷ୍କାର । ସେ ବିଚିତ୍ରାନନ୍ଦଙ୍କ ପରି ଚନ୍ଦ୍ରତତ୍ତ୍ୱର ଗବେଷଣା କରିପାରନ୍ତେ ନାହିଁ । ତାଙ୍କ ପକ୍ଷରେ ବି ସେଟା ଅସ୍ୱାଭାବିକ ହୁଅନ୍ତା । ଲାବଣ୍ୟ ନାରୀ । ପ୍ରଚଣ୍ଡ ଭାବରେ-ଇ ନାରୀ । ସେ ମଣିଷକୁ ବୁଝିବା ପାଇଁ ବର୍ତ୍ତମାନର ସାହାଯ୍ୟ ନେଇଛନ୍ତି । ତାଙ୍କ ପାଖେ "ଅତୀତ"ର ଆଉ ମୂଲ୍ୟ ନାହିଁ ଏବଂ ଭବିଷ୍ୟତଟା ବି ନିରର୍ଥକ । ସେ ବର୍ତ୍ତମାନର ଜୀବ । ବର୍ତ୍ତମାନ ଉଷ୍ଣରକ୍ତ; ବର୍ତ୍ତମାନର ସତେଜ ମାଂସ ଆଉ ବର୍ତ୍ତମାନର ଜୈବିକ କ୍ଷୁଧା ଆଉ ଶେଷରେ ବର୍ତ୍ତମାନର ଜୀବନ-ଇ ତାଙ୍କ ପକ୍ଷରେ ସବୁ । ଅତୀତକୁ ନେଇ ସଙ୍ଗୀତ ରଚନା କରାଯାଇପାରେ, କଳ୍ପନାର ମିନାର ଗଢ଼ାଯାଇପାରେ; ମାତ୍ର ବର୍ତ୍ତମାନକୁ--

ନାଃ,—ଏଥର କିଛି ପ୍ରତିକାର ନିଶ୍ଚୟ କରିବାକୁ ହେବ । ଅସହ୍ୟ ହେଲାଣି ତାଙ୍କର ବ୍ୟବହାର । ଘର ମଧରେ ଅଉ କେହି ନାହାନ୍ତି । ବିବାହ ଆଜକୁ ଦଶ ବର୍ଷ ହେଲାଣି । କିନ୍ତୁ ଦଶ ମାସର ଯେଉଁ ବେଦନା ପ୍ରତି ନାରୀର କାମ୍ୟ, ଲାବଣ୍ୟ ସେଇ ମଧୁର ବେଦନାରୁ ବଞ୍ଚିତ । ରାତିରେ ଘଣ୍ଟାରେ ଠନ୍ ଠନ୍ ହୋଇ ଦୁଇ ବାଜେ । ନିଦ ହୁଏ ନାହିଁ ଲାବଣ୍ୟଙ୍କୁ ।

"କଣ କାମ ଆଉ ସରିବ ନାଇଁ ? ପଥର ପାଖେ ସନ୍ଧ୍ୟା-ବେଳେ ବସି ବସି ତୁମର ହୃଦୟ ବି ପଥର ହୋଇଗଲାଣି । ତୁମେ କଣ କିଛି ବୁଝିପାରୁ ନାହଁ?"

ଶଙ୍ଖଚକ୍ରଧାରୀ ବିଷ୍ଣୁଙ୍କ ଗଦା ପଥରମୂର୍ତ୍ତି ପାଖେ ଢୁଳେଇ ପଡ଼ନ୍ତି ଚିତ୍ତାନନ୍ଦ । ଅଙ୍ଗତର ଭିତ ତାଙ୍କ ମାଡ଼ିବସିଛି । ହଠାତ୍ ଆଖି ମେଲାଇ ସେ ସ୍ୱପ୍ନରୁ ଉଠନ୍ତି ।

"କିଏ ଲାବଣ୍ୟ ? ତୁମେ ଏଠି ଅସମୟରେ ? କାହିଁକି ? ନିଦ ହେଉନାହିଁ ?"

"ସମସ୍ତେ ତ ଆଉ ତୁମ ପରି ନୁହଁନ୍ତି ! ମୋର ପେଶୀରେ ଅଛି ମାଂସ ଆଉ ଶିରାରେ ଅଛି ରକ୍ତ । ସେ ମାଂସ କ୍ଷୁଧିତ ହୁଏ, ସେ ରକ୍ତ ବି ଗରମ ହୁଏ । ମନରେ ନିଆଁ ଧରେ, କଳ୍ପନାରେ ତେଣା ଲାଗେ ।

"କିନ୍ତୁ ଦେଖ ଲାବଣ୍ୟ, ରକ୍ତମାଂସର ଉତ୍ତେଜନା ଅପେକ୍ଷା ପଥରର ଉତ୍ତେଜନା ତୁମେ ଜମା ଅନୁଭବ କରନାହଁ । ଆମର ପ୍ରଣୟ କହ, ପରିଣୟ କହ, ସ୍ନେହ କହ ବା ମମତା କହ,

ସେ ସବୁ ପ୍ରାକ୍-ଐତିହାସିକ ଯୁଗର ମାନବୀୟ ସଭ୍ୟତାର ଏକ ଅମବିକଶିତ ସଂସ୍କାର ମାତ୍ର । ତୁମେ ମୂଳକୁ ଖୋଜ । ନଦୀର ସାଗର ସଙ୍ଗମ ଅପେକ୍ଷା ଉତ୍ପତ୍ତିସ୍ଥଳ ସନ୍ଧାନର ଆବିଷ୍କାରରେ ଆମୋଦଟା ବେଶି । ତୁମେ "ଅତୀତକୁ" ଉଡ଼ି ଆସ । "ବର୍ତ୍ତମାନ"ଟା ତୁମକୁ ଅତି ଖରାପ ଲାଗିବ ।"

"ଅତୀତକୁ ଫେରିଯାଇ ବର୍ତ୍ତମାନ ପ୍ରତି ଅବଜ୍ଞା କରିବା-ଟାକୁ ତୁମେ ଅନ୍ୟାୟ ବୋଲି କହିବ ନାହିଁ ? ତା'ଛଡ଼ା—

"ତା' ଛଡ଼ା ଆଉ କିଛି ନାହିଁ ।"

ଏତିକି କହି ବିଚିତ୍ରାନନ୍ଦ ଲାବଣ୍ୟଙ୍କୁ ନିଜର ବାହୁପାଶରେ ଆଲିଙ୍ଗନ କରନ୍ତି । ଲାବଣ୍ୟଙ୍କର ଆଖି ଉଜ୍ଜ୍ୱଳ ହୋଇଉଠେ ।

ବିଚିତ୍ରାନନ୍ଦ କହନ୍ତି —

"ମନେକର ଲାବଣ୍ୟ, ଆମର ଏହିପରି ଅବସ୍ଥାରେ ହଠାତ୍ ଭୂମିକମ୍ପ ଫଳରେ ଆମେ ଏହି କୋଠା ତଳେ ଚାପି ହୋଇ ରହିଯାନ୍ତେ । ଆଉ ଆମ ଉପରେ ଜମି ଉଠନ୍ତା ଷାଠିଏ ଫୁଟ ଉଚ୍ଚର ଲବଣଯୁକ୍ତ ମୃତ୍ତିକାସ୍ତର । ତା'ପରେ—ତା'ପରେ— ଶତାବ୍ଦୀର କେଉଁ ଏକ ଶୁଭ-ସକାଳରେ ପତ୍ନତତ୍ତ୍ୱବିଦ୍‌ମାନେ ଆମକୁ ଖୋଳି ତାଡ଼ି ବାହାର କରନ୍ତେ—ଆଉ ମାଂସହୀନ ଆମର ଏଇ ଯୁଗ୍ମ କଙ୍କାଳଟିକୁ ପରୀକ୍ଷା କରନ୍ତେ ଜଣେ ତରୁଣ ପତ୍ନତତ୍ତ୍ୱବିଦ୍— । ଅନୁଭବ କରୁଚ ଲାବଣ୍ୟ ? ସେଇ ଆସନ୍ତା ଅନାଗତ ଶତାବ୍ଦୀର ସେଇ କୋମଳ ତାରୁଣ୍ୟର ଅନୁସନ୍ଧିତ୍ସୁ କରସ୍ପର୍ଶ !! ମନରେ ତାର ନୂତନ ଉଦ୍ଭାବନାର ସ୍ୱପ୍ନ—ଗୁଡ଼ରେ

ତାର ସ୍ପନ୍ଦନକୁ ଅାବଶ୍ୟାର କରିବାର ବେଦନ; ଶିରାରେ ତାର ଅଙ୍ଗତକୁ ନେଇ ଉତ୍ତେଜନାର ରକ୍ତପ୍ରବାହ । ଓଃ, ମୁଁ ଅନୁଭବ କରୁଚି ଲାବଣ୍ୟ ! ତାର ସୁକୁମାର ଅଙ୍ଗ ଲଗ୍ନ କନା ମୋର ଅସ୍ଥି-କଙ୍କାଳ ଉପରେ ।

ମୁଁ କେବଳ ଗୋଟିଏ କଙ୍କାଳ ମାତ୍ର ଲାବଣ୍ୟ ! ମୋର ଏହି କଙ୍କାଳ ଭିତରେ-ଇ ଏଇ ଯୁଗର ସଭ୍ୟତା, ସଂସ୍କୃତି, ହାସ୍ୟ, ଅଶ୍ରୁ, ବେଦନା, ଅାନନ୍ଦ, ଉଲ୍ଲାସ, ଉତ୍ତେଜନା, ପ୍ରଣୟ ସବୁ ବଞ୍ଚି ରହିବ—ଯୁଗ ଯୁଗ ଧରି ବହୁକାଳ ପର୍ଯ୍ୟନ୍ତ । ଆମେ ଆଉ କିଛି ରଖିଯାଇ ପାରିବା ନାହିଁ ଲାବଣ୍ୟ ! କେବଳ ଏଇ କଙ୍କାଳ, ଏଇ କଙ୍କାଳ-ଇ ରଖିଯିବା ଆମର ଆଗାମୀ ଯୁଗର ଅନୁସନ୍ଧିତ୍ସୁ ବଂଶଧର-ମାନଙ୍କ ପାଇଁ ।

ଲାବଣ୍ୟଙ୍କ ଆଖିରେ ସ୍ୱପ୍ନର ପରଳ ମାଡ଼ି ଆସିଲା । ବିଚିତ୍ରା-ନନ୍ଦଙ୍କ ସ୍ୱପ୍ନ ଯେପରି ତାଙ୍କୁ ବି ସଂକ୍ରମିତ କରିଚି !! ତଥାପି କ୍ଷୀଣ ସ୍ୱରରେ ସେ ପ୍ରଶ୍ନ କଲେ—

"ତୁମେ ପ୍ରକୃତିସ୍ଥ ହୁଅ । ଆମର କିନ୍ତୁ ଆଉ ବଂଶଧର କାହାନ୍ତି ? କାହାପାଇଁ ଆମେ ରଖିଯିବା ଆମର ଅସ୍ଥି କଙ୍କାଳ ? ସେଇ ପୁତ୍ର କନ୍ୟାଙ୍କର ସ୍ନେହ ଉଚ୍ଛ୍ୱାସ କାହିଁ ? ଯେ କି ଆମର ଅସ୍ଥିକୁ ନେଇ ଗଙ୍ଗାରେ ବିସର୍ଜନ ଦେବ ? ସେ ଯେ ଏ ଯାବତ୍ ବି ଅନାଗତ !!"

ବିଚିତ୍ରାନନ୍ଦ କିନ୍ତୁ ଲାବଣ୍ୟକୁ ଆଉ କହିବାକୁ ଦେଇ ନାହାନ୍ତି ।

"ସେମାନେ ଆସିବେ ଲାବଣ୍ୟ, ଅପେକ୍ଷା କର—ଆମେ-ଇ ଜନ୍ମନେବା ପୁଣି ସେମାନଙ୍କ ମଧ୍ୟରେ । ସେମାନଙ୍କ ଭିତରେ ଜନ୍ମ-

ନେଇ ଯୁଗ ଯୁଗ ଧରି ଆମେ କେବଳ ଆମକୁ-ହିଁ ଖୋଜିଚାଲିବା । ଯେଉଁ ଦେହକୁ ଏତେ ଭଲ ପାଇଥିଲେ, ତାକୁ ପୁଣି ଏତେ କଷ୍ଟର ସହିତ ଛାଡ଼ିଯାଇ ପୁଣି ନୂତନ ଦେହ ମଧ୍ୟରେ ଜନ୍ମ ନେଇ ପୁଣି ସେଇ ପୁରୁଣା କଙ୍କାଳ ଭିତରୁ ଆମକୁ-ହିଁ ଆମେ ଖୋଜିଚାଲିବା ଲାବଣ୍ୟ ! ଆଉ କାହାକୁ ନୁହଁ—କେବଳ ଆମକୁ-ହିଁ ।

"ତୁମେ ଜାଣିଛ ?"

ସଚ୍ଚିଦାନନ୍ଦ କାଚ ଆଲମାରିରୁ ମଣିଷ ମୁଣ୍ଡର ଗୋଟିଏ ଅତି ପୁରୁଣା ଖପୁରି ବାହାର କଲେ—ଆଉ ସେଇଟାକୁ ଲାବଣ୍ୟର ଆଖି ଆଗରେ ଧରିଲେ—

ଚମକି ପଡ଼ିଲେ ଲାବଣ୍ୟ—

"ଇସ୍—ଏଇଟା ପୁଣି କଅଣ? ଛି-ଛି-ଛି ! ଯେତେ ସବୁ କୁତ୍ସିତ ! ଯେତେ ସବୁ ଅମଙ୍ଗଳ—"

"ଏଇଟା ବୋଧହୁଏ ମୋର ମୁଣ୍ଡ ଲାବଣ୍ୟ ! ଏଇ କପାଳଟା ମୁଁ ଶିଶୁପାଳଗଡ଼ରୁ ଖୋଜି ପାଇଛି । ପ୍ରାୟ ଖ୍ରୀଷ୍ଟ ପୂର୍ବ ଗର୍ଭର ତଳୁ ଏଟା ବାହାରିଛି ।ଖାରବେଳ, ଖାରବେଳ—ଖ୍ରୀଷ୍ଟପୂର୍ବ ପ୍ରଥମ ଶତାବ୍ଦୀ ଓ ଉତ୍କଳର ମହାବିକ୍ରମଶାଳୀ ସମ୍ରାଟ ଖାରବେଳଙ୍କ ସମୟରେ ମୁଁ ଏଇ ଜନ୍ମ ନେଇଥିଲି ସେଠି । ଆଉ ଏଇଟା ଠିକ୍ ମୋର କପାଳ । ହଁ—ହଁ—ମୋର କପାଳ ଲାବଣ୍ୟ ! ମୁଁ ଠିକ୍ ମନେକରୁଚି ଲାବଣ୍ୟ, ଏଇଟା ମୋର କପାଳ—ମୁଁ ହିଁ ଆବିଷ୍କାର କରିଛି ମୋତେ । ହଜାରେ ବର୍ଷ ପରେ ମୁଁ ଫେରି ମୋର କଙ୍କାଳ-ଠାରୁ ମୋତେ-ହିଁ ଖୋଜିପାଇଛି । ହଜିବା—ଖୋଜିବା ଆଉ

ପାଇବା; ପୁଣି ପାଇବା—ହଜିବା ଆଉ ଖୋଜିବା—ଏହା ହିଁ ସୃଷ୍ଟିଚକ୍ର । ମୋର ଏଇ କପାଳ—ଆଃ ! ଖ୍ରୀଷ୍ଟପୂର୍ବ ପ୍ରଥମ ଶତାବ୍ଦୀର ମୋର ଏଇ କପାଳ! କେତେ ସ୍ୱପ୍ନ—କେତେ କଳ୍ପନା — କେତେ ଆବେଗ—କେତେ ଚିନ୍ତାକୁ ଧରି ରଖିଥିଲା ମୋର ଏଇ କପାଳଟି ! ବର୍ତ୍ତମାନ ପୁଣି ଏ ମୋର ହାତୁଡ଼େ ପଡ଼ିଛି ।

"ହେ ମୋର ପ୍ରିୟ କପାଳ !!!"

ବିଚିତ୍ରାନନ୍ଦ ଲାବଣ୍ୟଙ୍କୁ ଗୁଡ଼ି କପାଳଟାକୁ-ଇ ଚୁମ୍ବନ କଲେ । ଆବେଗକୁ ନେଇ ହିଁ କେବଳ ବଞ୍ଚାଯାଇପାରେ । ଲାବଣ୍ୟ ବର୍ତ୍ତମାନର କ୍ଷୁଧାରେ ବିକଳ-ବ୍ୟସ୍ତ-ଆଉ ଉଦ୍‌ବେଗଶୀଳା—।

ମାନ ବିଚିତ୍ରାନନ୍ଦ !!

କି ନିର୍ବୋଧ !

କି କରୁଣଭାବେ ନିର୍ବୋଧ !!

ଲାବଣ୍ୟ ଗୁଡି ଭିତରେ ରୁନ୍ଧି ହୁଅନ୍ତି । ଇସ୍ ! ସମସ୍ତ ଚେଷ୍ଟା ବିଫଳ ହେଲା !

ବାନ୍ଧିରଖି ଉଦ୍ଦେଶ୍ୟସିଦ୍ଧି କରିବାର ସମସ୍ତ ପ୍ରୟାସ ପଣ୍ଡ ହେଲା !!

ନିଜର ପାଶ ମଧ୍ୟରେ ଶେଷରେ ନିଜେ-ଇ ଧରାପଡ଼ି ଶ୍ଲେଷ୍ଟା ହେବା ସାର ହେଲା । ଲାବଣ୍ୟ ବହୁ ଆଗରୁ ବୁଝିସାରିଛନ୍ତି ଯେ— ଆକାଶବିହାରୀ ପୁରୁଷର ବିଚିତ୍ର ମନ ଓ ବିଚିତ୍ର ଦେହକୁ ବାନ୍ଧି

ରଖିବାକୁ ହେଲେ ପ୍ରଥମେ ନାରୀର ହୃଦୟ ଓ ବିଶ୍ୱାସରେ ମାତୃତ୍ୱ ।

ମାତ୍ର ବଚନ୍ଦ୍ରାନନ୍ଦ ଖିଆଲି—ଆତ୍ମବିଭୋର । ବଚନ୍ଦ୍ରାନନ୍ଦ ସତେ ଯେପରି ତାଙ୍କର ଏଇ ନୈକାପ୍ରବୃତ୍ତିକୁ ଉପହାସ କରି ଚାଲିଛନ୍ତି !!!

ଲାବଣ୍ୟଙ୍କର ଦାନ୍ତ ଶୁଖିଗଲା ଦେଖି !

କଣ ବୁଝନ୍ତି ଏଇ ବଚନ୍ଦ୍ରାନନ୍ଦ ??

କଣ ଆବିଷ୍କାର କରିଛନ୍ତି ଏଇ ବଚନ୍ଦ୍ରାନନ୍ଦ ??

ଖାଲି ଢିମା ପଥର—ନଣ୍ଡା ପଥର—ନରକଙ୍କାଳ—ନରକପାଳ—ଖପୁରି । ସେ ଖ୍ରୀଷ୍ଟପୂର୍ବ ପ୍ରଥମ ଶତାବ୍ଦୀର ଉତ୍କଳୀୟ ସଭ୍ୟତା ଉପରେ ପ୍ରବନ୍ଧ ଲେଖି ବାହାବା ନେଉଛନ୍ତି ! ଖ୍ରୀଷ୍ଟପୂର୍ବ ତୃତୀୟ ଶତାବ୍ଦୀର ଉତ୍କଳୀୟ ସଂସ୍କୃତି ଓ ଧର୍ମକୁ ଆବିଷ୍କାର କରି ସେ ପାଇଛନ୍ତି ବିଶ୍ୱବିଦ୍ୟାଳୟରୁ ଉପାଧି ଆଉ ପ୍ରଶଂସାପତ୍ର । ମାତ୍ର ସେ କି ବୁଝି ପାରିଛନ୍ତି ମଣିଷର କ୍ଷୁଧା—ରକ୍ତର ତାତି—ଶୋଣିତର ଉନ୍ମାଦନା—ଲୋଭ—ମାଂସର ବିଳାପ ଆଉ ବର୍ତ୍ତମାନର ହାହୁତାଶ !? ବର୍ତ୍ତମାନର ସଦା ଜାଗ୍ରତ ଜୀବନ୍ତ ମଣିଷର କ୍ଷୁଧା ଓ ସହ ଅନୁଭୂତି ଯାହାକୁ ଅନୁଭୂତ କରିପାରି ନାହିଁ, ଉପସ୍ଥିତ ମୁହୂର୍ତ୍ତର ବେଦନା, ବିଳାପ ଓ ଦୀର୍ଘଶ୍ୱାସ ମଧ୍ୟରୁ ଜୀଅନ୍ତା ମଣିଷର ଅନ୍ତରର କାମନାବହ୍ନିକୁ ଯେ ଆବିଷ୍କାର କରିପାରୁ ନାହାଁନ୍ତି, ସେ ଖାଲି ଚାପେ ବସି ବସି, ଅତୀତର ସଭ୍ୟତା ଓ ସଂସ୍କୃତିକୁ ଖୋଜି ଖୋଜି ମଣିଷ ସମ୍ବନ୍ଧେ କି ସତ୍ୟ ଆବିଷ୍କାର କରିପାରିବେ ? ?

ଖାଲି କଅାଁ—

ଖାଲି ପାଉଁଶ—

ଚାଲିଲାକୁ ଯାଉ ସେ ଆବିଷ୍କାର—

ଚାଲିଲାକୁ ଯାଉ ସେ ପନ୍ଥାତ୍ତ୍ୱ—

ବିବାହଘର ଦଶଟି ବର୍ଷର ଅବଦମିତ ଅଭୁକ୍ତ କ୍ଷୁଧା ଲାବଣ୍ୟକୁ ଅସ୍ଥିର କଲାଣି । ସେ ବିଚଳିତା । ତାଙ୍କର ଆଉ ଧୈର୍ଯ୍ୟ ନାହିଁ ।

ସ୍ଥୈର୍ଯ୍ୟ ବି ନାହିଁ । ଲାବଣ୍ୟ ହଠାତ୍ କାହିଁକି ଖୁବ୍ ଦୃଢ଼ ହୋଇ ଉଠିଲେ ।

ନା, ଏଥର ପ୍ରତିକାର କରିବାକୁ ହେବ ।

ଲାବଣ୍ୟଙ୍କ ଭିତରେ ଏକ ପ୍ରଚଣ୍ଡ ନାଗଣୀ ଗର୍ଜିଉଠିଲା ।

ନା, ଏଥର ନିଶ୍ଚୟ ପ୍ରତିଶୋଧ ନେବାକୁ ହେବ । ଏ ଅବହେଳା ସହିବାର କଥା ନୁହେଁ ।

ମଣିଷ ମଲେ ଭୂତ ହୁଏ—

ବର୍ତ୍ତମାନ ହୁଏ ଅତୀତ—

ଜୀଅନ୍ତା ହୋଇ ଯାହା ଅଭୁକ୍ତ ରହିଗଲା, ଭୂତ ହୋଇ ତାକୁ ଗ୍ରାସ କରିବାକୁ ହେବ ।

ବର୍ତ୍ତମାନ ଯେ ନିଷ୍ଠୁର ଭାବେ ଅସ୍ୱୀକାର କରୁଛି, ଅତୀତ ହୋଇ ତାର ପ୍ରତିଶୋଧ ନେବାକୁ ହେବ ।

ବଚନାନନ୍ଦ !

ହାୟ, ବଚନାନନ୍ଦ !

ହାୟ ନିର୍ବୋଧ ବଚନାନନ୍ଦ !

ହାୟ ପତ୍ନତତ୍ତ୍ୱବିତ୍, ଐତିହାସିକ ବଚନାନନ୍ଦ !!

ତୁମେ ସ୍ରଷ୍ଟା ହୋଇ ପାରିଲ ନାହିଁ, ହୋଇପାରିବ ବି ନାହିଁ ।

ତୁମେ କେବଳ ଆବିଷ୍କାର କର ।

ତୁମକୁ ଆବିଷ୍କାର-ହିଁ କରିବାକୁ ହେବ ।

ଜୀବନରେ ଯାହାକୁ ବୁଝିଲ ନାହିଁ, ମରଣରେ କି ତାକୁ ବୁଝିବ ?

ଲାବଣ୍ୟ ଖୁବ୍ ଜୋର୍‌ରେ ଆଗକୁ ପାଦ ପକାଇଲେ । ଆଗରେ ବଚନାନନ୍ଦଙ୍କର ବିରାଟ ମିଉଜିଅମ୍, ସମୀକ୍ଷାଗାର । ଲମ୍ବା ହଲ୍‌ର ଦୁଇ ପାର୍ଶ୍ୱରେ ଲମ୍ବମାନ ଉଚ୍ଚ ବେଞ୍ଚ ଉପରେ ଧାଡ଼ି ଧାଡ଼ି ହୋଇ ସଜ୍ଜିତ କେତେ ସଂଗୃହୀତ ପ୍ରତ୍ନତତ୍ତ୍ୱର ସାମଗ୍ରୀ ଏବଂ ପ୍ରତ୍ୟେକ ସାମଗ୍ରୀ ପାଖରେ ମୋଟା କାର୍ଡ଼ବୋର୍ଡ଼ରେ ଲିଖିତ ତାର ସମୟ । କେତେ ଜଙ୍ଗଭଗ୍ନ ତାମ୍ରଫଳକ, ୧ମ ଶତାବ୍ଦୀ, ୬ଷ୍ଠ ଶତାବ୍ଦୀ, କେତେ ଭୂ-ଖୋଦିତ ଅର୍ଦ୍ଧଭଗ୍ନ ମୃତ୍ତିକାପାତ୍ର—ତୃତୀୟ ଶତାବ୍ଦୀ—ଖ୍ରୀଷ୍ଟପୂର୍ବ ଦ୍ୱିତୀୟ ଶତାବ୍ଦୀ, କେତେ ଭଗ୍ନ ବିକଳ ସୁନ୍ଦର କୁତ୍ସିତ ପାଷାଣମୂର୍ତ୍ତି, ଚତୁର୍ଥ, ପଞ୍ଚମ, ଅଷ୍ଟମ ଶତାବ୍ଦୀ କେତେ ଭଗ୍ନ ଅର୍ଦ୍ଧଭଗ୍ନ ନରକପାଳ, ଖ୍ରୀ.ପୂ. ଚତୁର୍ଥ ଶତାବ୍ଦୀ, ଦ୍ୱିତୀୟ ଶତାବ୍ଦୀ ।

ଲାବଣ୍ୟ ମିଉଜିଅମ୍‌ରେ ସବାଶେଷ କଣକୁ ଗଲେ ଏବଂ ଗୋଟିଏ ସ୍ଥାନ ନିର୍ଦ୍ଦିଷ୍ଟ କରି, ସେଠାରେ ଗୋଟିଏ ମୋଟା ପେଷ୍ଟ-ବୋର୍ଡ଼ରେ ଲେଖି ତାକୁ ଅଠାରେ ସେଲ୍‌ଫ ଦେହରେ ଲଗାଇ ଦେଲେ—

"ଜୀବନର କ୍ଷୁଧା" — ସମସ୍ତ ଉପସ୍ଥିତ ଶତାବ୍ଦୀ !

ତା'ପଛରେ ଲାବଣ୍ୟ କଣ ଯେପରି ସେଠାରେ କରି ବସିଲେ ।

ସେଦିନ ରାତି ଦୁଇଟା । ବିଚିତ୍ରାନନ୍ଦ ଲାବରେଟରୀ ମଧ୍ୟକୁ ପ୍ରବେଶ କଲେ । ଇଲେକ୍‌ଟ୍ରିକ ବଲ୍‌ବ ଜଳାଇ ସେ ପ୍ରଥମ ସମୀକ୍ଷାଗାରଟିକୁ ପ୍ରଦକ୍ଷିଣ କଲେ । ତା'ପରେ ତାଙ୍କର ବର୍ତ୍ତମାନର ପ୍ରୋଗ୍ରାମ ଅନୁସାରେ ସେ ସମୀକ୍ଷାଗାରର ସବା ଶେଷ କକ୍ଷକୁ ଗଲେ । ଆଜି ତାଙ୍କର ଗୋଟିଏ ଗବେଷଣାର ସମାପ୍ତି ହେବ ଏବଂ ଆଉ ଗୋଟିଏ ଆରମ୍ଭ ହେବ । ଉପସ୍ଥିତ ଗବେଷଣାଟି ପ୍ରାୟ ସରିବା ଉପରେ । ପ୍ରାଚୀନଙ୍କ କୂଳସ୍ଥ ନୂଆଳୀ ଗ୍ରାମରେ ଭୂଖୋଦନ କରି ସେ ଗୋଟିଏ ନରକଙ୍କାଳ ଆବିଷ୍କାର କରିଥିଲେ । ନର-କଙ୍କାଳଟି କୋଡ଼ିଏ ଫୁଟ ବାଲିତଳେ ରହି ଯାଇଥିଲା ଏବଂ ଏହି ନରକଙ୍କାଳଟିର ବିଶେଷତ୍ୱ ହେଉଛି, ଏହା ଠିକ୍ ଗୋଟିଏ ତାନ୍ତ୍ରିକ ଯୋଗୀର ପଦ୍ମାସନ ଅବସ୍ଥାରେ-ହିଁ ଭୂଗର୍ଭରୁ ମିଳିଥିଲା । ବିଚିତ୍ରାନନ୍ଦ ଆଜକୁ ଦେଡ଼ବର୍ଷ ହେବ ଏହି କଙ୍କାଳଟି ଉପରେ ଗବେଷଣା ଚଳାଇ ପ୍ରମାଣ କରିଛନ୍ତି ଯେ, ପୁରୀ ଜିଲ୍ଲାର ପ୍ରାଚୀନଙ୍କ କୂଳରେ ଖ୍ରୀଷ୍ଟୀୟ ଦ୍ୱିତୀୟ ଶତକରେ ତାନ୍ତ୍ରିକ ଯୋଗୀମାନଙ୍କର କର୍ମସ୍ଥଳୀ ଥିଲା ଏବଂ ଏହି ତଥ୍ୟକୁ ସମର୍ଥନ କରିବା ପାଇଁ, ସେ ବହୁତ ଡାକିନୀ ଏବଂ ମାତୃମୂର୍ତ୍ତି ମଧ୍ୟ ପ୍ରାଚୀତୀରସ୍ଥ ଭୂଗର୍ଭରୁ ଉଦ୍ଧାର କରିଛନ୍ତି । ଆଜି ସେହି ଗବେଷଣାର ଶେଷଦିନ ।

ବିଚିତ୍ରାନନ୍ଦ ସେହି କଙ୍କାଳଟି ପାଖକୁ ଆସିଲେ । ମାତ୍ର ହଠାତ୍ ଟେବୁଲ ପାଖେ ରକ୍ତ ଦେଖି ସେ ଭୟରେ ପଛକୁ ଘୁଞ୍ଚିଆସିଲେ । ତା ପରେ ସେ ପ୍ରକୃତିସ୍ଥ ହୋଇ ଆଗକୁ ଯାଇ ଦେଖିଲେ— ଗୋଟିଏ ଶାଢ଼ୀ ଭଙ୍ଗାହୋଇ ତାଙ୍କ ଚଉକି ଉପରେ ରହିଛି ଏବଂ

ଲମ୍ବା ଟେବୁଲ୍ ଉପରେ ଗୋଟିଏ ଉଲଗ୍ନ ନାରୀ ଅତି ବଭତ୍ସଭାବେ ଉପରକୁ ମୁହଁକରି ପଡ଼ିରହିଛି । ତାର ବେକରେ ଗୋଟିଏ ତୀକ୍ଷ୍ଣ ଛୁରିକା । ସଚ୍ଚିଦାନନ୍ଦ ପ୍ରଥମେ ଅଭିଭୂତ ହୋଇ କିଛି ବୁଝି ପାରିଲେ ନାହିଁ । ତା ପରେ ସେ ଭଲକରି ଦେଖନ୍ତି ତ ସେଇ ଉଲଗ୍ନ ନାରୀଟି ଆଉ କେହି ନୁହଁ—ତାଙ୍କର ସ୍ତ୍ରୀ ସ୍ୱୟଂ ଲାବଣ୍ୟ । ତାଙ୍କର ଶବର ଠିକ୍ ପାଖରେ ପେଷ୍ଟବୋର୍ଡ଼ରେ ବଡ଼ ବଡ଼ ଅକ୍ଷରରେ ଲେଖା ହୋଇଛି—

"ଜୀବନର କ୍ଷୁଧା" – ସମସ୍ୟ – ଉପସ୍ଥିତ ଶତାବ୍ଦୀ ।

ସଚ୍ଚିଦାନନ୍ଦ ହଠାତ୍ ପାଗଳ ପରି ହୋଇଗଲେ ଏବଂ ତାଙ୍କର ମନେହେଲା, ଯେପରି ତାଙ୍କର ପାଦତଳୁ ପୃଥିବୀ ଖୁବ୍ ଜୋରରେ ତଳକୁ ଲସି ଯାଉଛି । ସେ ଅଜାଣତରେ ଚଉକି ଉପରେ ଚିତ୍ ହୋଇ ପଡ଼ିଗଲେ । ଏବଂ ତାଙ୍କର ଚୈତନ୍ୟ ଲୋପ ହୋଇଗଲା ପରି ତାଙ୍କୁ ବୋଧହେଲା ।

କିଛିସମୟ ପରେ–

ସେ ହଠାତ୍ ଝଞ୍ଜାପରି ଉଠି ଲାବଣ୍ୟଙ୍କର ମୃତଦେହ ଉପରେ ବିଦ୍ୟୁତ୍ ପରି ଝାମ୍ପଦେଇ ଚିତ୍କାର କରି ଉଠିଲେ ।

"ଓଃ ! ଆବିଷ୍କାର – ଆବିଷ୍କାର – ଅଦ୍ଭୁତ ଆବିଷ୍କାର – ବର୍ତ୍ତମାନ ଜୀବନର ଜାଗ୍ରତ କ୍ଷୁଧା !

ମୁଁ ଆବିଷ୍କାର କରୁଛି–

ସଚ୍ଚିଦାନନ୍ଦଙ୍କୁ ଏକ ଅଦ୍ଭୁତ ସ୍ୱପ୍ନ ଘେରି ରହିଛି । ସେ ଉତ୍କ୍ଷିପ୍ତ ହୋଇ ମିଉଜିଅମ୍‌ରୁ ସମସ୍ତ ପ୍ରସ୍ତରମୂର୍ତ୍ତି ଓ କଙ୍କାଳ ଆଣି ଲାବଣ୍ୟର ମୃତଦେହ ପାଖରେ ଜମା କଲେ । ଆଉ ଏହି ଅଦ୍ଭୁତ

ଆବିଷ୍କାରର ସ୍ୱପ୍ନରେ ବିଭୋର ହୋଇ ସେ ଲାବଣ୍ୟଙ୍କର ଅଶାନ୍ତ କ୍ଷୁଧାର୍ତ୍ତ ମୁହଁକୁ ଚାହିଁରହିଲେ ।

ତାଙ୍କର ଯେପରି ମନେହେଲା –

ଲାବଣ୍ୟ ଅତୀତ – ତାର "ବର୍ତ୍ତମାନ ଜୀବନର ଜାଗ୍ରତ କ୍ଷୁଧା"ବ ଅତୀତ । କିନ୍ତୁ ତାର ପୀଡ଼ିତ ଆତ୍ମାର ଏକ ପ୍ରଚଣ୍ଡ କ୍ଷୁଧାକୁ ତାର ମୃତ ଶବ ମଧ୍ୟରୁ ଆବିଷ୍କାର କରିବାର ଦୁର୍ବହ ଭାର ପଡ଼ିଛି ପ୍ରତ୍ନତତ୍ତ୍ୱବିତ୍ ବଚସାନନ୍ଦଙ୍କ ଉପରେ ! !

ବଚସାନନ୍ଦ ଉନ୍ମାଦ ଭଳି ବ୍ୟସ୍ତ ହୋଇ ଉଠିଲେ ଏବଂ ମୁଣ୍ଡର ବାଳ ଅସ୍ତବ୍ୟସ୍ତ ଭାବେ ଛିଣ୍ଡାଇ ସେ ଚିତ୍କାର କରିବାକୁ ଲାଗିଲେ –

"ଉଃ ! ଆବିଷ୍କାର, ଅଦ୍ଭୁତ ଆବିଷ୍କାର ! ବଡ଼ କଠିନ ଏ ଗବେଷଣା ! ବଡ଼ ଦୁର୍ବୋଧ ଏ ବର୍ତ୍ତମାନର ସମସ୍ୟା । ଉଃ ! ଏ ଗୁରୁଦାୟିତ୍ୱ ବି କେବଳ ମୋତେ ହିଁ ବହନ କରିବାକୁ ପଡ଼ିବ ? ?

ଆଃ ! କି କଠିଣ – କଷ୍ଟସାଧ –

"ପ୍ରତ୍ନତତ୍ତ୍ୱବିତ୍ ବଚସାନନ୍ଦ ପାଗଳ ହେଲେ ।

"ବର୍ତ୍ତମାନ" ତା'ର ପ୍ରତିଶୋଧ ନେଉଛି – "ଅତୀତ" ଉପରେ ।

ଏହା ହିଁ ହେଲା "ପ୍ରତ୍ନତତ୍ତ୍ୱବିତ୍" ବଚସାନନ୍ଦଙ୍କର ପ୍ରତ୍ନତତ୍ତ୍ୱ ଗବେଷଣାର କରୁଣ ପରିଣତି ।

ମାତ୍ର ଏଥିପାଇଁ ଆଉ କିଏ କଣ କରିପାରନ୍ତା ବା କରି ପାରିବ ? ?

ପଢ଼ନ୍ତୁ

ତାମସୀ ରାଧା

ଧରା ଓ ଧାରା

ବନ୍ଧୁ ମାୟା

ସମିତ୍ରାର ହସ

ଭୌତିକ ରଜନିର

ଟ୍ରାଜେଡି

କପୋତପକ୍ଷୀ ଗୁରୁମୋର

ରଚନା କରିଛନ୍ତି

ଅଧ୍ୟାପକ ମହାପାତ୍ର ନୀଳମଣି ସାହୁ

ପ୍ରାପ୍ତିସ୍ଥାନ

ଜଗନ୍ନାଥ ରଥଙ୍କ ବହିଦୋକାନ

ବିନୋଦବିହାରୀ-କଟକ-୨

ପଢ଼ନ୍ତୁ

ତାମସୀ ରାଧା

ଧରା ଓ ଧାରା

ବସ୍ତୁ ମାୟା

ସୁମିତ୍ରାର ହସ

ଭୌତିକ ରଜନିର ଟ୍ରାଜେଡ଼ି

କପୋତପକ୍ଷୀ ଗୁରୁମୋର

ରଚନା କରିଛନ୍ତି

ଅଧ୍ୟାପକ ମହାପାତ୍ର ନୀଳମଣି ସାହୁ

ପ୍ରାପ୍ତିସ୍ଥାନ

ଜଗନ୍ନାଥ ରଥଙ୍କ ବହିଦୋକାନ

ବିନୋଦବିହାରୀ-କଟକ-୨